କଥା ଭାରତୀ

# ଓଡ଼ିଆ ଗଳ୍ପମାଳା


ସମ୍ପାଦକ

ଶ୍ରୀ ପଠାଣି ପଟ୍ଟନାୟକ





ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ନୂଆଦିଲ୍ଲୀ

# ପ୍ରସ୍ତାବନା

ଭାରତ ଏକ ବିଶାଳ ଦେଶ । ସାଂସ୍କୃତିକ ଦୃଷ୍ଟିରୁ ଏକତ୍ର ଥିଲେ ବି ଏକତାର ଯେଉଁ ସୂତ୍ରମାନ ତାକୁ ଗୋଟିଏ ଶକ୍ତିଶାଳୀ ଓ ପ୍ରଗତିଶୀଳ ରାଷ୍ଟ୍ରଭାବେ ଗଢ଼ି ପାରିବେ, ସେ ସବୁକୁ ଆହୁରି ମଜବୁତ୍ କରିବାକୁ ହେବ ।

ଆମ ଭାରତବର୍ଷ ଏକ ବହୁଭାଷୀ ଦେଶ । ପୃଥିବୀରେ ବୋଧହୁଏ ଆମ ଦେଶପରି ଏତେଗୁଡ଼ାଏ ଭାଷା କୋଉଠି ହେଲେ ଦେଖିବାକୁ ମିଳିବନି; କିନ୍ତୁ ଦୁର୍ଭାଗ୍ୟର କଥା ଏହି ଯେ ପଡ଼ୋଶୀ ରାଜ୍ୟମାନଙ୍କର ଭାଷା ପ୍ରତି ଆମ ଭିତରେ ଖୁବ୍ କମ୍ ଆଗ୍ରହ ଦେଖିବାକୁ ମିଳିଥାଏ । ସେମାନଙ୍କର ସାଂସ୍କୃତିକ ତଥା ସାହିତ୍ୟିକ ସମ୍ପଦ ବିଷୟରେ ଜ୍ଞାନ ତ ଆମର ଆହୁରି କମ୍ । ଇଂରାଜୀ, ଫରାସୀ, ଜର୍ମାନ ଆଦି ୟୁରୋପୀୟ ସମାଜ ଓ ଭାଷାମାନଙ୍କର ସାହିତ୍ୟ ବିଷୟରେ ଯେତେ ଜ୍ଞାନ ଆମର ଅଛି, ସେତିକି ନିଜ ଦେଶର ସମାଜ ଓ ସାହିତ୍ୟ ବିଷୟରେ ନାହିଁ ।

ଦେଶର ଭାବଗତ ଓ ସାଂସ୍କୃତିକ ଏକତା ଲାଗି ଆବଶ୍ୟକ ହେଉଛି ଆମର ନାଗରିକଗଣ ଦେଶର ବିଭିନ୍ନ ଭାଷାର ଶ୍ରେଷ୍ଠ ସାହିତ୍ୟ ରଚନାମାନଙ୍କ ସଙ୍ଗେ ଭଲରକମ ପରିଚିତ ହୁଅନ୍ତୁ ଏବଂ ସେହି ମାଧ୍ୟମରେ ଭିନ୍ନ ଭିନ୍ନ ରାଜ୍ୟର ଜୀବନଯାତ୍ରା, ଆଚାର-ବ୍ୟବହାର ଓ ସମ୍ପୂର୍ଣ୍ଣ ସଂସ୍କୃତି ବିଷୟରେ ଜାଣନ୍ତୁ ।

ପାଶ୍ଚାତ୍ୟ-ଜଗତରେ କେତେଗୁଡ଼ିଏ ରାଷ୍ଟ୍ର ଅଛନ୍ତି; ସମସ୍ତଙ୍କର ନିଜର ଅଲଗା ଭାଷା ରହିଛି । ତଥାପି ସେଠିକା ଲୋକେ ପରସ୍ପରର ସାହିତ୍ୟ ଓ ଚିନ୍ତାଧାରାର ଯେତେ ଗଭୀର ଓ ବ୍ୟାପକ ଜ୍ଞାନ ଅର୍ଜନ କରନ୍ତି, ସେତିକି ଆମ ନିଜ ଭାଷା ବିଷୟରେ ବି ନାହିଁ; ଏହା ଏକ ବିଚିତ୍ର ବିରୋଧାଭାସ । ୟୁରୋପରେ ଯେକୌଣସି ଭାଷାର ଯେକୌଣସି ଶ୍ରେଷ୍ଠ ପୁସ୍ତକକୁ ପ୍ରତ୍ୟେକ ଭାଷାରେ ଯଥାଶୀଘ୍ର ଅନୁବାଦ କରିଦିଆଯାଏ । ଭାରତ ଗୋଟିଏ ବହୁଭାଷୀ ଦେଶ; କିନ୍ତୁ ଆମେ ଦେଖିବାକୁ ପାଉଁ ଯେ ଆମ ଭିତରେ ପଡ଼ୋଶୀ ଭାଷା ଭିତରେ କଣ କଣ ହେଉଛି, ତାହା ବି ଜାଣିବାର କୌତୂହଳ ନାହିଁ । ଏ ଅବସ୍ଥା ବଦଳୁଛି ସତ, କିନ୍ତୁ ଅତି ଧୀରଗତିରେ ।

ଏହି ଅବସ୍ଥାକୁ ବିଚାରକରି ଭାରତ ସରକାର ପ୍ରତ୍ୟେକ ଭାରତୀୟ ଭାଷାର ସମକାଳୀନ ସାହିତ୍ୟରୁ ବଛା ବଛା ପୁସ୍ତକମାନଙ୍କୁ ଅନ୍ୟ ସବୁ ଭାଷାରେ ଅନୁବାଦ କରାଇବାର ଯୋଜନା କରିଛନ୍ତି । ଏହି ଯୋଜନା ଭିତରେ ଏପରି ପୁସ୍ତକ ବାଛିବାକୁ

ହେବ ଯାହା କି ପାଠକ-ସାଧାରଣଙ୍କ ଲାଗି ରୁଚିକର ହେବ; ଅର୍ଥାତ୍ ଗଳ୍ପ, ଉପନ୍ୟାସ, ମନୋରଞ୍ଜନକ ଭ୍ରମଣବୃତ୍ତାନ୍ତ ବା ଆତ୍ମଜୀବନୀ ଆଦି । ଏହି ଯୋଜନା ମଧ୍ୟରେ ପୁସ୍ତକ ନିର୍ବାଚନ କରିବାବେଳେ ମନେରଖିବାକୁ ହେବ ଯେ, ଯେଉଁ ପୁସ୍ତକ ନିଆଯିବ ସେଗୁଡ଼ିକ ଉତ୍କୃଷ୍ଟ ଓ ଲୋକପ୍ରିୟ ହୋଇଥିବେ, ଆଉ ତା ସଙ୍ଗେ ସେଠାକାର ସମାଜର ଚଳଚଳଣି, ତାର ଚିନ୍ତାଧାରା ଓ ଆଶା-ଆକାଙ୍‌କ୍ଷାକୁ ପ୍ରତିବିମ୍ବିତ କରୁଥିବେ ।

ଆଶା କରାଯାଏ ଯେ ଏହି ଯୋଜନା ବିଭିନ୍ନ ଭାଷାମାନଙ୍କ ଭିତରେ ପରସ୍ପର ବିଷୟରେ ଅଧିକ ଜ୍ଞାନ, ବୁଝାମଣା ଓ ଚିନ୍ତାତ୍ମକ ଏକତା ସୃଷ୍ଟି କରିବା ଦିଗରେ ବହୁ ଦୂରଯାଏ ସହାୟକ ହେବ ।

ବିଭିନ୍ନ ଭାରତୀୟ ଭାଷାମାନଙ୍କର ପ୍ରଧାନ କୃତିମାନଙ୍କୁ ବାଛି ଅନୁବାଦ କରିବା କିଛି ସହଜ କାମ ନୁହେଁ । ଆମେ ନିଜର ପରାମର୍ଶଦାତା ସମିତି ଓ ଅନୁବାଦକମାନଙ୍କ-ଠାରେ କୃତଜ୍ଞ; କାରଣ ସେମାନଙ୍କର ପଥପ୍ରଦର୍ଶନ ଓ ସହଯୋଗ ବ୍ୟତିରେକେ ଏପ୍ରକାର ଯୋଜନାଟି ସଫଳଭାବେ କାର୍ଯ୍ୟକାରୀ କରିବା ସମ୍ଭବପର ହୋଇପାରି ନ ଥାନ୍ତା ।

ବାଲକୃଷ୍ଣ କେଶ୍‌କର

# ଓଡ଼ିଆ କ୍ଷୁଦ୍ରଗଳ୍ପର କ୍ରମବିକାଶ

## କାହାଣୀଠାରୁ କ୍ଷୁଦ୍ରଗଳ୍ପ ପର୍ଯ୍ୟନ୍ତ—

ଆଧୁନିକ ସାହିତ୍ୟର ଏକ ବିଶିଷ୍ଟ ଅଙ୍ଗ ଗଳ୍ପ ସାହିତ୍ୟ; ମାତ୍ର ଆଜି କେବଳ ନୁହେଁ: ଆଦିକାଳରୁ କାହାଣୀ ବା ଆଖ୍ୟାୟିକା ସାହିତ୍ୟର ଏକ ପ୍ରଧାନ ଅଂଶ ରୂପେ ପରିଗଣିତ । ଗଳ୍ପ କହିବା ଏବଂ ଗଳ୍ପ ଶୁଣିବା ମନୁଷ୍ୟର ଏକ ଚିରନ୍ତନ ପ୍ରବୃତ୍ତି । ତେଣୁ ସାହିତ୍ୟ ସଂସାରରେ ସେଥିପାଇଁ କାହାଣୀ ହେଉଛି ସବୁଠାରୁ ପ୍ରାଚୀନ । ଆଜିର ଗଳ୍ପ ଏବଂ ପୁରାତନ ଆଖ୍ୟାୟିକା ମଧ୍ୟରେ ସମୟର ଗତି ଓ ରୁଚି ଭେଦରେ ବହୁ ପରିବର୍ତ୍ତନ ହୋଇଅଛି; ପ୍ରାଚୀନ ଆଖ୍ୟାୟିକା କୌତୁହଳୋଦ୍ଦୀପକ ଏବଂ ଆଧ୍ୟାତ୍ମବାଦରେ ପରିପୂର୍ଣ୍ଣ; ମାତ୍ର ଆଧୁନିକ ଗଳ୍ପ ହେଉଛି ସମ୍ପୂର୍ଣ୍ଣଭାବରେ ଜୀବନଧର୍ମୀ । ଦିନ ଥିଲା ଯେତେବେଳେ କାହାଣୀରେ ବହୁରୂପ ବୈଚିତ୍ର୍ୟ, କୌତୁହଳଭାବ ଏବଂ ଅତୀନ୍ଦ୍ରିୟ ଅନୁଭୂତି ପ୍ରଚୁର ସ୍ଥାନ ପାଉଥିଲା । ମାତ୍ର ଆଧୁନିକ କ୍ଷୁଦ୍ରଗଳ୍ପରେ ଜୀବନର ସମସ୍ୟା, ମନୋଜଗତରେ ରହସ୍ୟ, ବହୁବିଧ ଅନୁଭୂତି ଏତେ ପ୍ରଚୁର ପରିମାଣରେ ସ୍ଥାନ ପାଉଛି, ଯାହା ଫଳରେ ଜୀବନ ଆମମାନଙ୍କ ଗଭୀର ସତ୍ୟ ରୂପରେ ପ୍ରତୀତ ହେଉଛି । ଗଳ୍ପର ଚରିତ୍ରମାନଙ୍କର ସୁଖଦୁଃଖରେ ଆମେ ଯେତେ ପ୍ରଭାବିତ ହେଉ, ପ୍ରକୃତ ଜୀବନରେ ସେହିପରି ଅନୁପ୍ରାଣିତ ହୋଇ ନ ଆଉ, ଯେତେବେଳ ପର୍ଯ୍ୟନ୍ତ ତାହା ପ୍ରକୃତ ଅନୁଭୂତିର ପରିଧିରେ ଆସି ନଥାଏ । ଯେଉଁ ଲେଖକ ଅତି ମର୍ମସ୍ପର୍ଶୀ ଘଟଣାରେ ଅଶ୍ରୁ ସମ୍ବରଣ କରିନାହିଁ, ସେ ମଧ୍ୟ କ୍ଷୁଦ୍ରଗଳ୍ପର ବର୍ଣ୍ଣନୀୟ ପ୍ରସଙ୍ଗରେ ଲୋତକ ନ ଝରାଇ ରହିପାରେ ନାହିଁ । ଏହାହିଁ କ୍ଷୁଦ୍ରଗଳ୍ପକଳାର ବିଶିଷ୍ଟ ଦାନ । ସାହିତ୍ୟରେ କାହାଣୀ ବହୁକାଳରୁ ରାଜପଣ କରୁଥିଲେ ହେଁ ବ୍ୟକ୍ତି-ଚେତନାର ଅଭ୍ୟୁଦୟ ହୋଇନଥିବାରୁ କ୍ଷୁଦ୍ରଗଳ୍ପକୁ ଜନ୍ମଗ୍ରହଣ କରିବା ପାଇଁ ଏତେକାଳ ଅପେକ୍ଷା କରିବାକୁ ପଡ଼ିଥିଲା ।

## କ୍ଷୁଦ୍ରଗଳ୍ପର ଅଭ୍ୟୁଦୟ କାଳ—

ଓଡ଼ିଆ ସାହିତ୍ୟରେ ଊନବିଂଶ ଶତାବ୍ଦୀର ଶେଷ ଭାଗରେ କ୍ଷୁଦ୍ରଗଳ୍ପର ସୃଷ୍ଟି ହୋଇଥିବା ଜଣାଯାଏ । ଏହି ଯୁଗରେ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା ଏବଂ କେତେଗୁଡ଼ିଏ ସାମୟିକ ପତ୍ରିକାର ପ୍ରକାଶ ଯୋଗୁ କ୍ଷୁଦ୍ରଗଳ୍ପ ସୃଷ୍ଟି ପାଇଁ ସୁଯୋଗ ଉପସ୍ଥିତ ହୋଇଥିଲା । ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରେ ସ୍ଥାନୀୟ ସମାଜରେ ଏକ ନୂତନ ବ୍ୟକ୍ତିତ୍ୱବୋଧ ଜାଗ୍ରତ ହେଲା

ଏବଂ ପାଶ୍ଚାତ୍ୟ ସାହିତ୍ୟର ଅନୁଶୀଳନ ଓ ଆଲୋଚନା ଏ ଦେଶର ସାହିତ୍ୟରେ ନୂତନ ରୁଚିବୋଧ ମଧ୍ୟ ଜାଗ୍ରତ କରିଥିଲା । ଯେଉଁମାନେ କହନ୍ତି ଯେ କେବଳ ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବ ଯୋଗୁ ଏ ଦେଶରେ କ୍ଷୁଦ୍ରଗଳ୍ପ ଜନ୍ମଗ୍ରହଣ କଲା, ତାହା ପୁରାପୁରି ମାନିନେବାକୁ ଇଚ୍ଛା ହୁଏନାହିଁ । କାରଣ ଏ ଦେଶର ପ୍ରାଚୀନ ସାହିତ୍ୟରେ କାହାଣୀର ବିଶାଳ ପରଂପରା ରହିଆସିଛି । ସଂସ୍କୃତ ସାହିତ୍ୟର ପଞ୍ଚତନ୍ତ୍ର ଓ ହିତୋପଦେଶ ଗଳ୍ପ, ଗୁଣାଢ୍ୟଙ୍କ ବୃହତ୍ କଥା, କ୍ଷେମେନ୍ଦ୍ରଙ୍କ ବିରାଟ କଥାମଞ୍ଜରୀ, ସୋମଦେବଙ୍କ କଥାସରିତ ସାଗର, ଶିବଦାସଙ୍କ ବେତାଳ ପଞ୍ଚବିଂଶତି, ବତିଶ ସିଂହାସନ, ଶୁକସପ୍ତତି ପ୍ରଭୃତି ପ୍ରାଦେଶିକ ସାହିତ୍ୟରେ ସୁପରିଚିତ ଥିଲା । ଏହା ବ୍ୟତୀତ ଦଶକୁମାର ଚରିତ, ବୌଦ୍ଧଜାତକ ଗଳ୍ପ ପ୍ରଭୃତି ମଧ୍ୟ ଲୋକସମାଜରେ ପ୍ରଚଳିତ ଥିଲା । ତେଣୁ ଇଂରାଜୀ ସାହିତ୍ୟ ଓ ପାଶ୍ଚାତ୍ୟ ସାମାଜିକ ଆଦର୍ଶ ପ୍ରସାରିତ ହେବାର ବହୁ ପୂର୍ବରୁ ଅଷ୍ଟାଦଶ ଶତାବ୍ଦୀରେ ବ୍ରଜନାଥ ବଡ଼ଜେନା 'ଚତୁର ବିନୋଦ' ରଚନା କରିଥିଲେ । ଏହି କାହାଣୀଧର୍ମୀ ଗଦ୍ୟରଚନା ସ୍ୱରୂପ ଗଦ୍ୟସାହିତ୍ୟର ଇତିହାସରେ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ ହୋଇପାରେ ।

ଊନବିଂଶ ଶତାବ୍ଦୀର ଶେଷଭାଗରେ ପତ୍ରପତ୍ରିକାର ଅଭ୍ୟୁଦୟ ଯୋଗୁ ଆଧୁନିକ ଗଦ୍ୟସାହିତ୍ୟର ପ୍ରାଣପ୍ରତିଷ୍ଠା ହୋଇଥିଲା । ସେ କାଳର ସାହିତ୍ୟ ମୁଖ୍ୟତଃ କାବ୍ୟଧର୍ମୀ ହୋଇଥିଲେ ହେଁ ଓଡ଼ିଆ ସାହିତ୍ୟରେ ଗଳ୍ପ ଓ ଉପନ୍ୟାସର ତାହା ଥିଲା ଅରୁଣୋଦୟ ।

ଔପନ୍ୟାସିକ ଫକୀରମୋହନଙ୍କ ଆତ୍ମଚରିତରୁ ଜଣାଯାଏ ଯେ, ସେ 1868 ସାଲରେ 'ବୋଧଦାୟିନୀ' ପତ୍ରିକାରେ ଲଛମନିଆ ଶୀର୍ଷକ ଏକ କ୍ଷୁଦ୍ରଗଳ୍ପ ଲେଖିଥିଲେ । ଏହି ଲେଖାଟି ଫକୀରମୋହନଙ୍କ କୌଣସି ପୁସ୍ତକରେ ସଙ୍କଳିତ ହୋଇ ନ ଥିବାରୁ ତାହାର ସ୍ୱରୂପ ସମ୍ପର୍କରେ ମତାମତ ବ୍ୟକ୍ତକରିବା କଠିନ ବ୍ୟାପାର । କାରଣ ଏହି ଘଟଣାର ଦୀର୍ଘ 30 ବର୍ଷ ପରେ 1898 ଖ୍ରୀଷ୍ଟାବ୍ଦରେ ଫକୀରମୋହନଙ୍କର ପ୍ରସିଦ୍ଧ ଗଳ୍ପ 'ରେବତୀ' ସାହିତ୍ୟ ମାସିକ "ଉତ୍କଳ ସାହିତ୍ୟ" ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏହାହିଁ ଓଡ଼ିଆ ସାହିତ୍ୟର ପ୍ରଥମ ସାର୍ଥକ ମୌଳିକ କ୍ଷୁଦ୍ରଗଳ୍ପ କହିଲେ ଅତ୍ୟୁକ୍ତି ହେବନାହିଁ । ଫକୀରମୋହନଙ୍କ ପୂର୍ବରୁ 1874 ଖ୍ରୀଷ୍ଟାବ୍ଦରେ ରାଧାନାଥ ରାୟ 'ଉତ୍କଳ ଦର୍ପଣ' ପତ୍ରିକାରେ 'ଇତାଲୀୟ ଯୁବା' ନାମରେ ଏକ ଗଳ୍ପ ପ୍ରକାଶ କରିଥିଲେ । ଏହା ଏକ ବିଦେଶୀ ଗଳ୍ପର ଅବଲମ୍ବନ ଏବଂ ସମ୍ପୂର୍ଣ୍ଣ କାହାଣୀଧର୍ମୀ ଥିଲା । ସେହିପରି ଏହି ସମୟରେ ମଧୁସୂଦନ ରାଓଙ୍କର 'ଚୁମ୍ବକର ଅଦ୍ଭୁତ ପରିଣାମ' ମଧ୍ୟ ଏକ ବିଦେଶୀ କଥାବସ୍ତୁ ଅବଲମ୍ବନରେ ଆତ୍ମପ୍ରକାଶ

କରିଥିଲା । ତେବେ 1897 ଖ୍ରୀଷ୍ଟାବ୍ଦରେ ପ୍ରକାଶିତ 'ହେମମାଳା' ମଧୁସୂଦନଙ୍କର ଏକ ମୌଳିକ ଗଳ୍ପ । ତ୍ୟାଗଦୀପ୍ତ ପ୍ରଣୟ ଏହି ଗଳ୍ପର ମୁଖ୍ୟ ଆଖ୍ୟାନଭାଗ ହେଲେହେଁ, ପ୍ରକୃତରେ ଏହା ଏକ କାହାଣୀ ପରି ମନେ ହୋଇଥାଏ । ତେଣୁ ପ୍ରକୃତପକ୍ଷେ ଫକୀରମୋହନ ହିଁ ଓଡ଼ିଆ ଗଳ୍ପ ସାହିତ୍ୟର ପ୍ରାଣ-ପ୍ରତିଷ୍ଠାତା ।

ଫକୀରମୋହନ ଏବଂ ତାଙ୍କର ସମସାମୟିକ ଚନ୍ଦ୍ରଶେଖର ନନ୍ଦ ଅନେକଗୁଡ଼ିଏ କ୍ଷୁଦ୍ରଗଳ୍ପ ଓଡ଼ିଆ ସାହିତ୍ୟକୁ ଦାନ କରିଯାଇଅଛନ୍ତି । ଓଡ଼ିଆ ଗଳ୍ପ ସାହିତ୍ୟର ଏହି ଦୁଇଜଣ ଆଦିପୁରୁଷଙ୍କର ଗଳ୍ପଗୁଡ଼ିକ ଆଲୋଚନା କଲେ ଜଣାଯାଏ ଯେ, ସେମାନେ ଭାରତୀୟ ପରମ୍ପରାରୁ ହିଁ ପ୍ରେରଣା ଗ୍ରହଣ କରିଛନ୍ତି । ସେତେବେଳକୁ ପଡ଼ୋଶୀ ବଙ୍ଗ ସାହିତ୍ୟ ଏବଂ ହିନ୍ଦୀ ସାହିତ୍ୟରେ ମଧ୍ୟ ଗଳ୍ପର ଅଭ୍ୟୁଦୟ କାଳ । ତେଣୁ ପଡ଼ୋଶୀ ସାହିତ୍ୟଦ୍ୱାରା ପ୍ରଭାବିତ ହେବାର ସୁଯୋଗ ସେମାନଙ୍କର ନ ଥିଲା । ଫକୀରମୋହନ 1898 ଖ୍ରୀଷ୍ଟାବ୍ଦରୁ 1916 ଖ୍ରୀଷ୍ଟାବ୍ଦ ମଧ୍ୟରେ ତାଙ୍କର ଗଳ୍ପଗୁଡ଼ିକ ରଚନା କରି ବିଭିନ୍ନ ସାମୟିକ ପତ୍ରିକାରେ ପ୍ରକାଶ କରିଥିଲେ ଏବଂ 1917 ସାଲରେ ତାଙ୍କର ଗଳ୍ପ ସଂଗ୍ରହ "ଗଳ୍ପସ୍ୱଳ୍ପ" ମୁଦ୍ରିତ ହୋଇଥିଲା । ଅଥଚ ଚନ୍ଦ୍ରଶେଖର ନନ୍ଦଙ୍କର ଗଳ୍ପ ପୁସ୍ତକ 'ଚିତ୍ର' 1906 ଖ୍ରୀଷ୍ଟାବ୍ଦରେ କବି ରାଧାନାଥଙ୍କ ମୁଖବନ୍ଧ ସହ ପ୍ରକାଶିତ ହୋଇଥିଲା । ଅଭିମତ ପ୍ରଦାନ କରି କବି ରାଧାନାଥ ଲେଖିଥିଲେ ଯେ, ଭାରତୀୟ ଭାଷାମାନଙ୍କରେ ଏ ଶ୍ରେଣୀର ପୁସ୍ତକସଂଖ୍ୟା ଅଙ୍ଗୁଳିମେୟ । ଏପରିକି ଅପେକ୍ଷାକୃତ ଉନ୍ନତତର ବଙ୍ଗ ଭାଷାରେ ସୁଦ୍ଧା ଏପରି ପୁସ୍ତକ ଅଛି କି ନା ସନ୍ଦେହ । ଓଡ଼ିଆ ଗଳ୍ପ-ସାହିତ୍ୟର ଇତିହାସରେ ଏହା କମ୍ ଗୌରବର କଥା ନୁହେଁ । ପ୍ରଥମକାଳର ଓଡ଼ିଆ ଗାଳ୍ପିକ ଫକୀରମୋହନ ନିଜର ପ୍ରେରଣା କ୍ଷେତ୍ର ସମ୍ପର୍କରେ ଆଲୋଚନା କରି 6-9-1914 ତାରିଖରେ ଉତ୍କଳ ସାହିତ୍ୟ ସମାଜର ଦଶମ-ବାର୍ଷିକ ଅଧିବେଶନରେ ସଭାପତି ଭାଷଣରେ ଲେଖିଥିଲେ—

"ଅନେକ ଲୋକ ମନରେ କରନ୍ତି, ଇଂରାଜୀ ଶିକ୍ଷା ପ୍ରଭାବରୁ ଉପନ୍ୟାସ ନାମ ଜାଣିଲୁଁ, କିନ୍ତୁ ନିଶ୍ଚିତ କଥା ଉପନ୍ୟାସ, ନାଟକ, ଦର୍ଶନଶାସ୍ତ୍ରର ଉତ୍ପତ୍ତିସ୍ଥାନ ଭାରତବର୍ଷ ଅଟେ । ଦର୍ଶନ କିମ୍ବା ନାଟକ ବିଷୟରେ ଯଦିଚ କାହାର କିଛି ବକ୍ତବ୍ୟ ନାହିଁ; କିନ୍ତୁ ଦୃଢ଼ ରୂପେ ବୋଲାଯାଇପାରେ ବହୁ ସହସ୍ର ବର୍ଷ ପୂର୍ବେ ରଚିତ ବେଦରେ ଲିଖିତ ନଚିକେତା ଉପାଖ୍ୟାନ କିମ୍ବା ଇନ୍ଦ୍ର ବରୁଣ ସମ୍ବାଦକୁ ବୈଦିକ ଉପନ୍ୟାସ ବୋଲାଯାଇପାରେ । ଏଥିରେ ଯଦି କାହାର କିଛି ଆପତ୍ତି ଥାଏ, ତେବେ ସର୍ବସାଧାରଣରେ ଧର୍ମଭକ୍ତି ପ୍ରଚାର ନିମନ୍ତେ ବେଦବ୍ୟାସ ଅଷ୍ଟାଦଶ ପୁରାଣ ବା ଉପନ୍ୟାସ ରଚନା କରିଅଛନ୍ତି । ଏହି ପୌରାଣିକ କାବ୍ୟ ଅସ୍ୱୀକାର କରିବା କାହାର ଆୟତ୍ତ ନାହିଁ ।"

(ଉତ୍କଳ ସାହିତ୍ୟ—18ଶ ଭାଗ—6ଷ୍ଠ ସଂଖ୍ୟା ପୃ 272—273)

ବାସ୍ତବରେ ଫକୀରମୋହନ ଏବଂ ଚନ୍ଦ୍ରଶେଖରଙ୍କର ଗଳ୍ପଗୁଡ଼ିକର ବିଶ୍ଳେଷଣ କଲେ ଏହା ପ୍ରମାଣିତ ହୋଇପାରିବ ।

ଫକୀରମୋହନଙ୍କ 'ମୌନା ମୌଜା' 'ବଗଲା ବଗୁଲି', 'ଅଜାନାତି କଥା', 'ଧୂଳିଆ ବାବା' ପ୍ରଭୃତି ସମ୍ପୂର୍ଣ୍ଣ କାହାଣୀଧର୍ମୀ । ଏହି ଗଳ୍ପଗୁଡ଼ିକରେ କୌଣସି ବୈଚିତ୍ର୍ୟ ନାହିଁ । ସେହିପରି 'ବାଲେଶ୍ୱରୀ ଗହାଜାଣୀ', 'ବାଲେଶ୍ୱରୀ ପଙ୍ଗାଲୁଣି', 'କମଳାପ୍ରସାଦ ଗୋସ୍ୱପ' ଏବଂ 'କାଳିକାପ୍ରସାଦ ଗୋସ୍ୱପ' — ଏହି ଚାରିଗୋଟି ପ୍ରବନ୍ଧ ଧର୍ମୀକାନ୍ତ ଗଳ୍ପ କହିଲେ ଠିକ୍ ହେବ । ଏଥିରେ ଓଡ଼ିଶାର ଲୁପ୍ତପ୍ରାୟ ନୌବାଣିଜ୍ୟର ଗୌରବ କଥା ବିବୃତ ହୋଇଅଛି । ତେବେ 'ରେବତୀ', 'ପେଟେଣ୍ଟ ମେଡ଼ିସିନ୍', 'ଗଣ୍ଡି ପୁଅ ଅନନ୍ତା', 'ଗାରୁଡ଼ିମନ୍ତ୍ର' ପ୍ରଭୃତି ଫକୀରମୋହନଙ୍କର କେତେଗୋଟି ସାର୍ଥକ କ୍ଷୁଦ୍ରଗଳ୍ପ । ଏହି ଗଳ୍ପଗୁଡ଼ିକର କଳାଧର୍ମ ଅତ୍ୟନ୍ତ ଉଚ୍ଚକୋଟୀର ଏବଂ ସଂସ୍କାର-ପ୍ରାଣ ସମାଜ-ସଚେତନ ଫକୀରମୋହନଙ୍କର ଉନ୍ନତ ଓ ରସାଳ ଅଭିବ୍ୟକ୍ତିର ପରିଚୟ ଏଥିରୁ ମିଳିଥାଏ । ସମାଜର ନାନା ଦୁର୍ନୀତି, ଅନ୍ୟାୟ ଓ କୁସଂସ୍କାର ବିରୁଦ୍ଧରେ ଫକୀରମୋହନ ଏହି ଗଳ୍ପଗୁଡ଼ିକ ମାଧ୍ୟମରେ ପ୍ରବଳ ପ୍ରତିବାଦ କରିଥିଲେ । ଏହି ଗଳ୍ପଗୁଡ଼ିକ ତତ୍କାଳୀନ ସମାଜର ଏକ ବିଚିତ୍ର ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ ।

ସେହିପରି ଚନ୍ଦ୍ରଶେଖର ନନ୍ଦଙ୍କର ଗଳ୍ପଗୁଡ଼ିକରେ ଏ ଦେଶର ପ୍ରାଚୀନ ପରମ୍ପରା ଏବଂ ତତ୍କାଳୀନ ସମାଜର ସମାଜ-ସଚେତନତା ଓ ସଂସ୍କାରପ୍ରାଣତାର ପରିଚୟ ମିଳିଥାଏ । ସ୍ଥାନୀୟ କିମ୍ବଦନ୍ତୀକୁ ଆଶ୍ରୟ କରି ତାଙ୍କର କେତେଗୋଟି ଗଳ୍ପ ଲିଖିତ । ପୁନଶ୍ଚ ସେ ବୈଦିକ ଓ ବୌଦ୍ଧ ଗଳ୍ପକୁ ଅବଲମ୍ବନ କରି ଆଧୁନିକ ଗଳ୍ପାକାରରେ ଲେଖିଥିଲେ କେତେଗୋଟି ଗଳ୍ପ । ତେବେ ଅଧିକାଂଶ ଗଳ୍ପରେ ପାରିବାରିକ ଜୀବନଚିତ୍ର ଅତ୍ୟନ୍ତ ସ୍ୱାଭାବିକ ରୀତିରେ ଚିତ୍ରିତ ହୋଇଅଛି ।

ଏହି ଯୁଗରେ 'ଉତ୍କଳ ସାହିତ୍ୟ' ଏବଂ 'ମୁକୁର' ମାସିକ ପତ୍ରିକା ଗଳ୍ପ-ସାହିତ୍ୟର ବିକାଶ ପାଇଁ ଅଧିକ ଉତ୍ସାହ ପ୍ରଦାନ କରିଥିଲେ । ତେବେ ବିଂଶ ଶତାବ୍ଦୀର ପ୍ରଥମ ଦୁଇଟି ଦଶକ ମଧ୍ୟରେ ଯେଉଁମାନେ ଗଳ୍ପ ରଚନାରେ ଆଗ୍ରହୀ ହୋଇଥିଲେ, ସେମାନେ ହେଲେ ବାଙ୍କନିଧି ପଟ୍ଟନାୟକ, ଦିବ୍ୟସିଂହ ପାଣିଗ୍ରାହୀ, ଲକ୍ଷ୍ମୀକାନ୍ତ ମହାପାତ୍ର, ଚିନ୍ତାମଣି ମହାନ୍ତି, ଗୋଦାବରୀଶ ମିଶ୍ର, ଦୟାନିଧି ମିଶ୍ର ଏବଂ ଗୋପାଳଚନ୍ଦ୍ର ପ୍ରହରାଜ । ତେବେ ଏହି ସମୟରେ ଶ୍ରୀମତୀ ରେବା ରାୟ ମଧ୍ୟ କେତେକ ମୌଳିକ କ୍ଷୁଦ୍ରଗଳ୍ପ ରଚନା କରିଥିଲେ । 1901 ସାଲ 'ଉତ୍କଳ ସାହିତ୍ୟ'ର 4ର୍ଥ ସଂଖ୍ୟାରେ ପ୍ରକାଶିତ ତାଙ୍କର 'ଶକୁନ୍ତଳା' କ୍ଷୁଦ୍ରଗଳ୍ପ ଉଲ୍ଲେଖଯୋଗ୍ୟ । ପୁନଶ୍ଚ, କୁମାରୀ ନର୍ମଦା କର ଧାରାବାହିକ ଭାବରେ ଟଲଷ୍ଟୟଙ୍କର ଗଳ୍ପଗୁଡ଼ିକ ଅନୁବାଦ କରି ପ୍ରକାଶ କରିଥିଲେ ।

ଏହି ଅନୁବାଦଗୁଡ଼ିକ ଆକ୍ଷରିକ ନ ଥିଲା । ଅନୁବାଦକ ଉତ୍କଳୀୟ ପରିବେଶ ଓ ସ୍ଥାନୀୟ ନାମକରଣ କରି ଗଳ୍ପଗୁଡ଼ିକ ପରିବେଷଣ କରିଥିଲେ । ଟଲଷ୍ଟୟଙ୍କର ଏହି ନୀତିଧର୍ମୀ ଗଳ୍ପଗୁଡ଼ିକ ଓଡ଼ିଆ ସାହିତ୍ୟର ପ୍ରଥମ କାଳର ଗଳ୍ପ ଲେଖକମାନଙ୍କୁ ଯଥେଷ୍ଟ ପ୍ରେରଣା ଯୋଗାଇଥିବା ଆଶା କରାଯାଏ । ପରିମାଣ ଦୃଷ୍ଟିରୁ ଅଧିକ କ୍ଷୁଦ୍ରଗଳ୍ପ ରଚିତ ହୋଇ ନ ଥିଲେହେଁ କ୍ଷୁଦ୍ରଗଳ୍ପର ଆଙ୍ଗିକ, ଆଭିମୁଖ୍ୟ ଏବଂ ଶୈଳୀ ସମ୍ପର୍କରେ ଲେଖକମାନେ କ୍ରମଶଃ ବିଶେଷ ସଚେତନ ହେଉଥିଲେ । ତେଣୁ 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକାର 1903/4 ଅର୍ଥାତ୍ ଅଷ୍ଟମବର୍ଷର ପ୍ରଥମ ସଂଖ୍ୟାରେ ଗଳ୍ପଲେଖକ ଚନ୍ଦ୍ରଶେଖର ନନ୍ଦ 'ସାହିତ୍ୟରେ କ୍ଷୁଦ୍ରଗଳ୍ପ' ଶୀର୍ଷକ ଏକ ଆଲୋଚନା ପ୍ରକାଶ କରିଥିଲେ ଏବଂ କ୍ଷୁଦ୍ରଗଳ୍ପର ରଚନାଶୈଳୀ ସମ୍ପର୍କରେ ଏକ ବୈଜ୍ଞାନିକ ବିଶ୍ଳେଷଣ କରିଥିଲେ । ସେହିପରି ଏହି କାଳରେ ଉତ୍କଳସାହିତ୍ୟର ଷଷ୍ଠବର୍ଷ ପ୍ରଥମ ସଂଖ୍ୟାରେ ଗାଳ୍ପିକ ଫକୀରମୋହନ ସେନାପତି "ଓଡ଼ିଆ କାହାଣୀର ଧର୍ମ ଓ ଧାରା" ସମ୍ପର୍କରେ ଏକ ବିଶ୍ଳେଷଣାତ୍ମକ ଆଲୋଚନା ପ୍ରକାଶ କରିଥିଲେ । ଏହି ସମୟରେ ମାସିକ ସାହିତ୍ୟ ପତ୍ରିକାରେ ଗଳ୍ପ ଅପେକ୍ଷା କାହାଣୀ ଅଧିକ ପ୍ରକାଶିତ ହେଉଥିଲା । ଶ୍ରୀ ତାରିଣୀଚରଣ ରଥ, ଗୋପାଳଚନ୍ଦ୍ର ପ୍ରହରାଜ, ବାଞ୍ଛାନିଧି ପଣ୍ଡା, ହରେକୃଷ୍ଣ ଦାସ, ରାମକୃଷ୍ଣ ମିଶ୍ର, ପୀତାମ୍ବରୀ ଦେବୀ ପ୍ରଭୃତି ବହୁ ଲେଖକ ଲେଖିକା ଧାରାବାହିକ ଭାବରେ କାହାଣୀମାନ ପ୍ରକାଶ କରିଥିଲେ । ପଣ୍ଡିତ ଗୋପବନ୍ଧୁଙ୍କ ସମ୍ପାଦିତ ମାସିକ ସାହିତ୍ୟ ପତ୍ରିକାରେ କ୍ଷୁଦ୍ରଗଳ୍ପ ଆଦୌ ସ୍ଥାନ ଲାଭ କରୁ ନ ଥିଲା । କେବଳ 'ମୁକୁର' ଏବଂ 'ଉତ୍କଳ ସାହିତ୍ୟ' ଏ ଦିଗରେ ଥିଲେ ଅଗ୍ରଗଣ୍ୟ । ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ସାହୁ 1920/21 ସାଲରେ 'ସହକାର' ମାସିକ ପତ୍ରିକା ପ୍ରତିଷ୍ଠା କରି ସମ୍ପାଦନା କରିଥିଲେ । 1928 ମଧ୍ୟରେ ଏହି ପତ୍ରିକାକୁ କ୍ରମାନ୍ୱୟରେ ଅଲେଖପ୍ରସାଦ ଦାସ, ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ, ଶ୍ରୀ ଭଗବାନ ପତି ପ୍ରଭୃତି ସମ୍ପାଦନା କରିଥିବା ଜଣାଯାଏ । ଏହି ଦୀର୍ଘକାଳ ମଧ୍ୟରେ 'ସହକାର' ପୃଷ୍ଠାରେ ପ୍ରାୟତଃ କ୍ଷୁଦ୍ରଗଳ୍ପ ସ୍ଥାନଲାଭ କରି ନ ଥିଲା । ଅଥଚ ସେହି ସମୟରେ 'ଉତ୍କଳସାହିତ୍ୟ'ରେ କାଳନ୍ଦୀଚରଣ ପାଣିଗ୍ରାହୀ, ସରଳା ଦେବୀ, ସୁପ୍ରଭା କର, ପ୍ରତିଭା କର ପ୍ରଭୃତି ମୌଳିକ ତଥା ଅନୁବାଦ ଗଳ୍ପମାନ ପ୍ରକାଶ କରୁଥିଲେ ।

## ସବୁଜ ଆନ୍ଦୋଳନ ଓ କ୍ଷୁଦ୍ରଗଳ୍ପ—

ବାସ୍ତବରେ ଓଡ଼ିଆ ସାହିତ୍ୟରେ ସବୁଜ ସାହିତ୍ୟ ସମିତିର ଆନ୍ଦୋଳନ ହିଁ କ୍ଷୁଦ୍ରଗଳ୍ପର ସୃଷ୍ଟି ପାଇଁ ଏକ ଅପୂର୍ବ ସୁଯୋଗ ସୃଷ୍ଟି କଲା । ଏହି ଅନୁଷ୍ଠାନ

ତରଙ୍ଗରୁ 1933 ଖ୍ରୀଷ୍ଟାବ୍ଦରେ 'ଯୁଗବୀଣା' ନାମକ ଏକ ମାସିକ ପତ୍ରିକା ପ୍ରକାଶିତ ହୋଇଥିଲା । ଏହି ପତ୍ରିକାର ସମ୍ପାଦକ ଥିଲେ ସବୁଜ-ସାଧକ ହରିହର ମହାପାତ୍ର । ଏହି ପତ୍ରିକାରେ ହରିଶ୍ଚନ୍ଦ୍ର ବଡ଼ାଲ, ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତପ୍ରସାଦ ପଣ୍ଡା, ଭଗବତୀଚରଣ ପାଣିଗ୍ରାହୀ, ଶ୍ରୀମତୀ ସରଳା ଦେବୀ, ଗୋଲୋକଚନ୍ଦ୍ର ଦାସ, ମଧୁସୂଦନ ମିଶ୍ର, କାଳନ୍ଦୀଚରଣ ପାଣିଗ୍ରାହୀ, କମଳାକାନ୍ତ ଦାସ, ରମେଶଚନ୍ଦ୍ର ନାୟକ, ଗୁରୁପ୍ରସାଦ ଭଟ୍ଟାଚାର୍ଯ୍ୟ, ଅନ୍ନଦାଚରଣ ରାୟ, ନଗେନ୍ଦ୍ରନାରାୟଣ ସେନଗୁପ୍ତ, ଶାନ୍ତ ମୁଖାର୍ଜି, ରମାରଞ୍ଜନ ମହାନ୍ତି ପ୍ରଭୃତି ବହୁ ତରୁଣ ଲେଖକ ଲେଖିକା କ୍ଷୁଦ୍ରଗଳ୍ପ ଲେଖିବା ପାଇଁ ସାହସୀ ହୋଇଥିଲେ । ମୌଳିକ ଗଳ୍ପ ବ୍ୟତୀତ 'ଯୁଗବୀଣା'ରେ କେତେକ ବଙ୍ଗଦେଶୀ ପ୍ରସିଦ୍ଧ ଗଳ୍ପ ମଧ୍ୟ ଅନୂଦିତ ହୋଇ ପ୍ରକାଶିତ ହୋଇଥିଲା । ସବୁଜ-ଦଳର ଲେଖକଲେଖିକାଗଣ ପାଶ୍ଚାତ୍ୟ ସାହିତ୍ୟ ଏବଂ ପଡ଼ୋଶୀ ସମୃଦ୍ଧ ବଙ୍ଗ ସାହିତ୍ୟଦ୍ୱାରା ଯଥେଷ୍ଟ ପ୍ରଭାବିତ ହୋଇଥିଲେ ।

## ନବଯୁଗ ସାହିତ୍ୟ ସଂସଦ ଓ 'ଆଧୁନିକ'—

1936 ସାଲରେ କେତେଜଣ ପ୍ରଗତିପନ୍ଥୀ ତରୁଣ ଯୁବକ ସାହିତ୍ୟରେ ଏକ ନୂତନ ଆତ୍ମମୁଖ୍ୟ ସୃଷ୍ଟି କରିବା ପାଇଁ ନବଯୁଗ ସାହିତ୍ୟ ସଂସଦର ପ୍ରତିଷ୍ଠା କରିଥିଲେ ଏବଂ ଏହି ଦଳର ମୁଖପତ୍ର 'ଆଧୁନିକ' ଭଗବତୀ ପାଣିଗ୍ରାହୀଙ୍କ ସମ୍ପାଦନାରେ ପ୍ରକାଶିତ ହୋଇଥିଲା । ସୋଭିଏଟ ରୁଷର ମାର୍କସୀୟ ଆନ୍ଦୋଳନ ଏହି ଦଳର ତରୁଣ ଲେଖକମାନଙ୍କୁ ପ୍ରେରଣା ଯୋଗାଇଥିଲା । ସେତେବେଳକୁ ସବୁଜଦଳର ରୋମାଣ୍ଟିକ ଭାବଧାରା ଆଉ ଆଦୃତ ହେଉନାହିଁ । ସବୁଜଦଳର କାଳିନ୍ଦୀଚରଣ ଓ ବୈକୁଣ୍ଠନାଥ ଏହି ଦଳରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସବୁଜକାଳର ଗାଳ୍ପିକ ସଚ୍ଚିଦାନନ୍ଦ ରାଉତରାୟଙ୍କର ବହୁ ପ୍ରଗତିଧର୍ମୀ ବସ୍ତୁବାଦୀ ଗଳ୍ପ ଏହି ସମୟରେ ରଚିତ ହୋଇଥିଲା । ଆଧୁନିକ ପତ୍ରିକାର ପ୍ରଥମ ସଂଖ୍ୟାରେ ଗୋପୀନାଥ ମହାନ୍ତି ପ୍ରଥମେ 'ଓ' ଗଳ୍ପ ଲେଖିଥିବା ଜଣାଯାଏ । ଏହି ସମୟରେ ଯେଉଁ କେତେଜଣ ଗଳ୍ପ ରଚନା କରି ପ୍ରତିଷ୍ଠିତ ହୋଇଥିଲେ, ସେମାନେ ହେଲେ ରାଜକିଶୋର ରାୟ, ରାଜକିଶୋର ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ଗୋଦାବରୀଶ ମହାପାତ୍ର, ପ୍ରାଣବନ୍ଧୁ କର, କାହ୍ନୁଚରଣ ମହାନ୍ତି । ଏମାନଙ୍କ ଗଳ୍ପରେ ମନୁଷ୍ୟ ସମାଜ ପ୍ରତି ଅନୁକମ୍ପା, ଦୁଃସ୍ଥ ପ୍ରତି ସମ୍ବେଦନଶୀଳତା, ସମସ୍ୟାମାନ ଓ ସଂଗ୍ରାମଧର୍ମୀ ଜୀବନର ଆଲେଖ୍ୟ ପ୍ରଭୃତି ସାର୍ଥକ ଭାବରେ ରୂପାୟିତ ହେଲା । ବହୁ ଗଳ୍ପରେ ରୋମାଣ୍ଟିକ ଭାବଧାରା ସ୍ପଷ୍ଟ ହୋଇ ଉଠି-

ଥିଲେହେଁ ଆଙ୍ଗିକ ଓ ଶୈଳୀ ଦୃଷ୍ଟିରୁ ଏ ଯୁଗର ଗଳ୍ପଗୁଡ଼ିକ ରୁଚିବନ୍ତ ଓ ବିଶ୍ଳେଷଣାତ୍ମକ । ଗଳ୍ପ ଲେଖକଗଣ ଗାନ୍ଧୀଯୁଗର ସାମାଜିକ ଆନ୍ଦୋଳନ ଓ ରୁଷବିପ୍ଳବର ସାମ୍ୟବାଦୀ ଆନ୍ଦୋଳନଦ୍ୱାରା ଯଥେଷ୍ଟ ପ୍ରଭାବିତ ହୋଇଥିଲେ । ଦୀନ ଦରିଦ୍ର ପାଇଁ ସହାନୁଭୂତି, ଦଳିତ ଜୀବନର କଳାପୂର୍ଣ୍ଣ ଅଭିବ୍ୟକ୍ତି, ସାମାଜିକ ବୈଷମ୍ୟ ଏବଂ ଅର୍ଥନୈତିକ ଶୋଷଣ ବିରୁଦ୍ଧରେ ମଧ୍ୟ ଗଳ୍ପ ଲେଖକଗଣ ଲେଖନୀ ଚଳାଇଥିଲେ । ବିଶେଷତଃ ଇଂରାଜୀ ଶିଳ୍ପସଭ୍ୟତାର ପ୍ରସାର ସଙ୍ଗେ ସଙ୍ଗେ ଉତ୍କଳ ଗ୍ରାମୀଣ ସଭ୍ୟତା ଓ ସମାଜରେ ଯେଉଁ ଆବର୍ତ୍ତନ ସୃଷ୍ଟି ହେଉଥିଲା, ତାହା କେବଳ ରୂପଗତ ନ ଥିଲା, ସମଗ୍ର ସମାଜର ଚନ୍ତାରାଜ୍ୟରେ ମଧ୍ୟ ପ୍ରତିକ୍ରିୟା ସୃଷ୍ଟି କରିଥିଲା । ଏ ଯୁଗର ଅନେକ ଗଳ୍ପ ଲେଖକ ପଲ୍ଲୀ ସମାଜର ଏହି ଘାତନାତକୁ ଚିତ୍ର କରିବାରେ ଅଧିକ ମନୋଯୋଗ ଦେଇଛନ୍ତି ।

## ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ଗଳ୍ପ ଓ ଗାଳ୍ପିକ—

ଦ୍ୱିତୀୟ ମହାଯୁଦ୍ଧକାଳରେ ଅଥବା ମହାଯୁଦ୍ଧର ଅବ୍ୟବହିତ ପରେ ଯେଉଁ କେତେଜଣ ତରୁଣ ଲେଖକ ଗଳ୍ପ-ସାହିତ୍ୟର ଶ୍ରୀବୃଦ୍ଧି ସାଧନରେ ରତ ହୋଇଥିଲେ, ସେମାନେ ଆଜି ସୁପ୍ରତିଷ୍ଠିତ । ଏମାନେ ହେଲେ ଶ୍ରୀ ଗୋପୀନାଥ ମହାନ୍ତି, ସୁରେନ୍ଦ୍ର ମହାନ୍ତି, ମହାପାତ୍ର ନୀଳମଣି ସାହୁ, ବାମାଚରଣ ମିତ୍ର, କିଶୋରୀଚରଣ ଦାସ, ଅଚ୍ୟୁତାନନ୍ଦ ପତି, ଅଖିଳମୋହନ ପଟ୍ଟନାୟକ, ବିଭୂତିଭୂଷଣ ତ୍ରିପାଠୀ, ବ୍ରହ୍ମାନନ୍ଦ ପଣ୍ଡା, ଦୁର୍ଗାମାଧବ ମିଶ୍ର ।

ସ୍ୱାଧୀନତାପ୍ରାପ୍ତି ପରେ ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ଜୀବନରେ ବୈପ୍ଳବିକ ପରିବର୍ତ୍ତନ ଦେଖାଦେଇଛି । ପ୍ରାଚୀନ ସାମନ୍ତବାଦୀ ସମାଜ କେବଳ ଭୂଶୁଙ୍କି ପଡ଼ନାହିଁ, ଏକ ସମାଜବାଦୀ ରାଷ୍ଟ୍ରଗଠନ ପାଇଁ ଯେଉଁ ଯୋଜନାମାନ କାର୍ଯ୍ୟକାରୀ ହେଉଛି, ତାହା ଫଳରେ ଶିଳ୍ପବିପ୍ଳବ ଦେଶରେ ଦ୍ରୁତଗତିରେ ଏକ ପ୍ରବଳ ପ୍ରତିକ୍ରିୟା ସୃଷ୍ଟି କରିପାରିଛି । ସାମାଜିକ ଘଟଣାବଳୀର ଘାତ ପ୍ରତିଘାତ ଆଧୁନିକ ଗଳ୍ପ-ଲେଖକକୁ ପ୍ରଭାବିତ କରିବା ସ୍ୱାଭାବିକ । ଆଧୁନିକ ଓଡ଼ିଆ ସାହିତ୍ୟରେ ଗଳ୍ପ ସାହିତ୍ୟ ବୋଧହୁଏ ସବୁଠାରୁ ଅଧିକ ଲୋକପ୍ରିୟ । ସ୍ୱାଧୀନତା ପରେ ପ୍ରକାଶିତ ହୋଇଥିବା ସାହିତ୍ୟ ପତ୍ରିକାଗୁଡ଼ିକ ଏଥିପାଇଁ ପ୍ରବଳ ଉଦ୍ୟମ କରି ଆସିଅଛନ୍ତି । ବହୁ ଶକ୍ତିଶାଳୀ ଲେଖକଲେଖିକା ଗଳ୍ପ ରଚନାରେ ନୂତନ ପରୀକ୍ଷା-ନିରୀକ୍ଷାରେ ଆଗ୍ରହୀ ହୋଇଛନ୍ତି ଏବଂ ପତ୍ରପତ୍ରିକାରେ ଗଳ୍ପ ବିଭାଗ ଏକ ଗୁରୁତ୍ୱପୂର୍ଣ୍ଣ ଆସନ ସାବ୍ୟସ୍ତ କରିପାରିଛି ।

ଏହି କ୍ଷେତ୍ରରେ ଯେଉଁମାନେ ଉଜ୍ଜ୍ୱଳ ସିଦ୍ଧିର ଅଧିକାରୀ ହୋଇପାରିଛନ୍ତି, ସେମାନଙ୍କ ମଧ୍ୟରେ ମନୋଜ ଦାସ, ଶାନ୍ତନୁକୁମାର ଆଚାର୍ଯ୍ୟ, କୃଷ୍ଣପ୍ରସାଦ ମିଶ୍ର, ରବି ପଟ୍ଟନାୟକ, ରଣଧୀର ଦାସ, କୁମାରୀ ବୀଣାପାଣି ମହାନ୍ତି, ବସନ୍ତକୁମାରୀ ପଟ୍ଟନାୟକ, ଚନ୍ଦ୍ରଶେଖର ରଥ, . ରଜନୀକାନ୍ତ ଦାସ, ଅବନୀକୁମାର ବରାଳ, ଚୌଧୁରୀ ହେମକାନ୍ତ ମିଶ୍ର, ଫତୁରାନନ୍ଦ, ଲକ୍ଷ୍ମୀଧର ମହାନ୍ତି, ରାଜକିଶୋର ମହାନ୍ତି, କୃଷ୍ଣଚରଣ ବେହେରା, ନିମାଇଁଚରଣ ପଟ୍ଟନାୟକ, ବସନ୍ତକୁମାର ଶତପଥୀ ପ୍ରଭୃତି ବହୁ ଶକ୍ତିଶାଳୀ ପ୍ରତିଭାଙ୍କୁ ସ୍ମରଣ କରାଯାଇପାରେ ।

ଏ ଯୁଗର ଗଳ୍ପଗୁଡ଼ିକରେ ସୂକ୍ଷ୍ମମନସ୍ତାତ୍ତ୍ୱିକ ବିଶ୍ଳେଷଣ, ରାଜନୈତିକ ଜୀବନର ପୃଷ୍ଠଭୂମିରେ ଆଧୁନିକ ସମାଜସଚେତନ ମନୁଷ୍ୟର ଲୀଳାଖେଳା, ଉତ୍କଟ ଜୀବନସଂଗ୍ରାମର ହାହୁତାଶମୟ ଅଭିବ୍ୟକ୍ତି, ସାମାଜିକ ଅବିଚାରର ଗ୍ଲାନିକର ପରିବେଶ, ପ୍ରଣୟଦର୍ଶନର ନୂତନ ଅଭିବ୍ୟଞ୍ଜନା ଏବଂ ଯୌନବିକାରଗ୍ରସ୍ତ ରୋଗଗ୍ରସ୍ତ ମଣିଷର ସୂକ୍ଷ୍ମ ଅନୁଭୂତି, ସାଂପ୍ରତିକ ଶିଳ୍ପବିପ୍ଳବର ମର୍ମବାଣୀ, ଶ୍ରମିକ ଓ ସର୍ବହରାର ଶୋଷଣ ବିରୁଦ୍ଧରେ ଅଭିଯାନ, ଯୁଦ୍ଧ ପରବର୍ତ୍ତୀ ଯୁଗ ·ସମାଜର ବ୍ୟର୍ଥତା, ଜୀବନର ଆର୍ଥିକ, ମାନସିକ ଓ ନୈତିକ ଦୁଃସ୍ଥିତି ପ୍ରଭୃତି ନାନାରୂପରେ ଓ ନାନାରଙ୍ଗରେ ରୂପାୟିତ ହୋଇଥିବା ଜଣାଯାଏ । କେତେକ ଶକ୍ତିଶାଳୀ ଗାଳ୍ପିକଙ୍କର ସୂତୀକ୍ଷ୍ଣ ବ୍ୟଙ୍ଗଧର୍ମୀ ଶୈଳୀ ଅତ୍ୟନ୍ତ ଚମତ୍କାର ଓ ଉପଭୋଗ୍ୟ । ଏଗୁଡ଼ିକରେ ଶାଣିତ ବ୍ୟଙ୍ଗ ଜରିଆରେ ସାମାଜିକ ଦୋଷ-ଦୁର୍ବଳତା ପ୍ରତି କଠୋର ଭାବରେ ଆଘାତ କରାଯାଇଛି । କେତେକ ଗଳ୍ପ ଅତ୍ୟନ୍ତ ପ୍ରତୀକଧର୍ମୀ । ଏହି ଯୁଗର ଗଳ୍ପ ଲେଖକଙ୍କ ନିକଟରେ ଜୀବନ ହେଉଛି ଏକମାତ୍ର ସତ୍ୟ । ଜୀବନ ଜ୍ୱାଳାମୟ, ତଥାପି ତାହା ଅତ୍ୟନ୍ତ ଆନନ୍ଦଦାୟକ । ଅନେକ ଗଳ୍ପ ଅତ୍ୟନ୍ତ ଭାବାଶ୍ରୟୀ । ମନୁଷ୍ୟ ଚରିତ୍ରର ଚିର ରହସ୍ୟମୟ ଅନୁଭୂତି ଆଧୁନିକ ଗଳ୍ପରେ ରୂପାୟିତ ।

ଆଧୁନିକ ଗଳ୍ପ ସାହିତ୍ୟରେ ଏହିପରି ନାନାପ୍ରକାର ପ୍ରତିଧ୍ୱନି ଅତ୍ୟନ୍ତ ରସାଳ ଏବଂ ଭାବକୈନ୍ଦ୍ରିକ । ଆଧୁନିକ ଗଳ୍ପରେ ପାଠକ ମାନବ-ଜୀବନର ରସପାନ କରିବା ପାଇଁ ଅତ୍ୟନ୍ତ ବ୍ୟାକୁଳ । ସେଥିରେ ଅଳଙ୍କରଣର ସ୍ପୃହା ନାହିଁ ଅଥବା ଅଯଥା ବର୍ଣ୍ଣନାବିଳାସଦ୍ୱାରା ତାହା ଭାରାକ୍ରାନ୍ତ ନୁହେଁ । ଆଧୁନିକ ଗଳ୍ପଗୁଡ଼ିକ ସୂଚନାଧର୍ମୀ ଏବଂ ଅତ୍ୟନ୍ତ ସାବଲୀଳ । ଅତି ସାଧାରଣ ପରିବେଶ ମଧ୍ୟରେ ମଣିଷର ସୁଖ ଦୁଃଖ, ଅଭାବ ଅନୁଭୂତି ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପର ପ୍ରଧାନ ଆଭିମୁଖ୍ୟ । କାଳ କାଳ ଧରି ଯେଉଁ କଥା ଓ ଚିତ୍ର ଅକୁହା ହୋଇ ରହିଯାଇଥିଲା, ସେ ସବୁ ଆଧୁନିକ ଗଳ୍ପରେ ରସୋତ୍ତୀର୍ଣ୍ଣ ହୋଇ ରୂପାୟିତ ହେବା ଯୋଗୁ ସାହିତ୍ୟ ସଂସାର

ସାର୍ଥକ ହୋଇଅଛି । ଆଜିର କଥା-ସାହିତ୍ୟରେ ମାନବବାଦୀ ସମ୍ବେଦନଶୀଳତା ଅତି ସ୍ପଷ୍ଟ । ବ୍ୟକ୍ତିଙ୍କ ଠାରୁ ସମଷ୍ଟିର କଲ୍ୟାଣ କାମନା କରିବା ପାଇଁ ଏ ଯୁଗର ପ୍ରାଣ ଓ ମନରେ ଆନ୍ଦୋଳନ ଆରମ୍ଭ ହୋଇଅଛି । ପ୍ରକାଶଭଙ୍ଗୀ ସଙ୍କେତଧର୍ମୀ ଏବଂ ବୌଦ୍ଧିକ ହେଉଥିବାରୁ ଏ ଯୁଗର ଗଳ୍ପରସ ଉପଭୋଗ କରିବା ପାଇଁ ସାମ୍ପ୍ରତିକ ଯୁଗର ଐତିହାସିକ ପୃଷ୍ଠଭୂମି ଏବଂ ଆନ୍ତର୍ଜାତିକ ସାଂସ୍କୃତିକ ପରିବେଶ ସମ୍ପର୍କରେ ସଚେତନତା ଅତ୍ୟନ୍ତ ଆବଶ୍ୟକ । ଅଧୁନିକ ଓଡ଼ିଆ କଥା ସାହିତ୍ୟକ · ଅତି ତୀବ୍ରଭାବରେ ଯଥାର୍ଥବାଦୀ ଏବଂ ଆନ୍ତର୍ଜାତିକ ସାହିତ୍ୟର ଭାବଧାରାରେ ଯଥେଷ୍ଟ ଅନୁପ୍ରାଣିତ । ତୁଳନାତ୍ମକ ବିଚାରରେ ଆଧୁନିକ ଓଡ଼ିଆ ଗଳ୍ପ ସାହିତ୍ୟର ଶୈଳ୍ପିକ ମୂଲ୍ୟ ଯେ ଅତ୍ୟନ୍ତ ଉନ୍ନତ ଏବଂ ପ୍ରଗତିଧର୍ମୀ, ଏହା ନିର୍ବିବାଦରେ ସ୍ୱୀକାର କରାଇପାରିବ ।

ପଠାଣି ପଟ୍ଟନାୟକ

# ବିଷୟ ସୂଚୀ

# ରେବତୀ

## ଫକୀରମୋହନ ସେନାପତି

କଟକ ଜିଲାର ହରିହରପୁର ପ୍ରଗନା ମଧ୍ୟରେ ଗୋଟିଏ ମଫସଲ ଗ୍ରାମ, ନାମ ପାଟପୁର । ଗ୍ରାମ ମୁଣ୍ଡାମୁଣ୍ଡିରେ ଗୋଟିଏ ଘର । ଅଗିଲ ପିଛିଲ ଚାରିବଖରା, ଖଞ୍ଜା ପାଚଣ ଚାଳିଆରେ ଢିଙ୍କିଶାଳ, ଅଗଣା ମଧ୍ୟରେ କୂଅ, ଆଗକୁ ଦାଣ୍ଡଦୁଆର, ପଛକୁ ବାଡ଼ିଦୁଆର । ଦାଣ୍ଡଦୁଆର ମେଲାଘରେ ଦାଣ୍ଡଲୋକେ ବସାଉଠା କରନ୍ତି; ପ୍ରଜାମାନେ ଖଜଣା ଦେବାକୁ ଆସି ଏହିଠାରେ ବସନ୍ତି । ଶ୍ୟାମବନ୍ଧୁ ମହାନ୍ତି ଜମିଦାର ତରଫରୁ ଗ୍ରାମର କରଣ, ମାସକୁ ଦରମା ଦୁଇଟଙ୍କା, ଦରମା ଛୁଡ଼ା ପାଉତି ବଣୋଧନା, ବାହାଲ ହୁଣା ଇତ୍ୟାଦିରୁ ଦୁଇ ପଇସା ହାତପୈଠ ହୁଏ । ସବୁ ମିଶାଇଲେ ମାସକୁ ଚାରିଟଙ୍କାରୁ ଊଣା ହେବନାହିଁ; ସଂସାର ଏକରକମ ଚଳେ । ଏକରକମ କଅଁ ? ବୋଇଲେ ଭଲ ଚଳେ । ଏଇଟା ହେଲା ନାହିଁ, ସେଇଟା ଘରେ ନାହିଁ, ଏପରି କଥା ଘରର କାହାରି ମୁହଁରୁ ଶୁଣାଯାଏନାହିଁ । ବାଡ଼ିରେ ଶାଗମାଗ ଛୁଡ଼ା ସଜନା ଦୁଇଗଛ । ଘରେ ଲଗା ପଡ଼ିଆ, ବରଷବିଆଣୀ ଗାଈ ଦୁଇଟା ବନ୍ଧା, ଦୁଧ ଟିକିଏ, ଚହ୍ଲା ମନ୍ଦାଏ ହାଣ୍ଡିତଳେ ଲାଗିଥାଏ । ବୁଢ଼ୀ ଚକ୍ଷୁ ମିଶାଇ ଘଷି ପାଡ଼ିଦିଏ, କାଠକଣା ବାଧେ ନାହିଁ । ଜମିଦାର ସାଢ଼େ ତିନମାଣ ଜମି ଚଷିବାକୁ ଦେଇଛନ୍ତି, ଧାନ ବଳେ ନାହିଁ, କି କମେ ନାହିଁ । ଶ୍ୟାମବନ୍ଧୁଟି ବଡ଼ ସିଧାସଳଖ ଲୋକ, ପ୍ରଜାମାନେ ମାନନ୍ତି, ସୁଖ ପାଆନ୍ତି । ବାପରେ ଧନରେ କହି ଦୁଆର ଦୁଆର ବୁଲି ଖଜଣା ଅସୁଲ କରେ, କାହାରଠାରୁ ଅନ୍ୟାୟରେ ପଇସାଟିଏ ନଏନାହିଁ । ପ୍ରଜାମାନେ ଖଜଣା ଦେଇ, ପାଉତି ମାଗନ୍ତି ନାହିଁ; ସେ ଚାରିଆଙ୍ଗୁଳି ତାଳପତ୍ରରେ ଖଣ୍ଡେ ପାଉତି ଲେଖି ବଳେ ଚାଳରେ ଗୁଞ୍ଜି ଦେଇଯାଏ । ଜମିଦାର ପିଆଦା ଆସିଲେ ଗାଁକୁ ଛାଡ଼େନାହିଁ, ଆପେ ହାତ ଓଠ ଧରି ଧୂଆଁଖିଆ ଦୁଇପଇସା ଅଣ୍ଟାରେ ଗୁଞ୍ଜି ଦେଇ ବିଦାକରେ । ଶ୍ୟାମବନ୍ଧୁ ଘରେ ଖାଇବାକୁ କୁଟୁମ୍ବ ଚାରିଜଣ, ଆପେ ଦୁଇ ପରାଣୀ, ମା' ବୁଢ଼ୀ, ଦଶ ବରଷର ଗୋଟିଏ ଝିଅ । ଝିଅର ନାମ ରେବତୀ । ଶ୍ୟାମବନ୍ଧୁ ସଞ୍ଜବେଳେ ପିଣ୍ଡାରେ ବସି 'ଲୁପ୍ସିନ୍ଧୁ

ବନ୍ଦନ' ଗାଏ, ଆଜ ଆଉ ଭଜନ ଗାଏ, କେବେ କେବେ କାଠରୁଖାଟି ଉପରେ ବଇଠାଟିଏ ଥୋଇ ଭାଗବତ ପଢ଼େ. ରେବତୀ ପାଖରେ ବସି ଶୁଣୁଥାଏ । ସେ ମୁହେଁ ମୁହେଁ ଢେର୍ ଭଜନ ଶିଖିଗଲାଣି, ତା ପିଲାମୁହଁକୁ ଭଜନଗୁଡ଼ାକ ଖୁବ୍ ମାନେ । ସଞ୍ଜବେଳେ ବାପା ପାଖରେ ବସି ଭଜନ ଗାଇଲେ. ଗାଁର କୌଣସି କୌଣସି ଲୋକ ଆସି ଶୁଣନ୍ତି । ରେବତୀ ବାପା ପାଖରୁ ଗୋଟିଏ ଭଜନ ଶିଖିଥିଲା । ସେଇଟି ଗାଇଲେ ଶ୍ୟାମବନ୍ଧୁ ବଡ଼ ଖୁସି ହୁଏ । ପ୍ରତିଦିନ ଝିଅକୁ ଗାଇବାକୁ କହେ, ରେବତୀ ଗାଏ—

"'କା' ଆଗେ କରିବି ଗୁହାରି ?
ତୁମ୍ଭେ ନ ଶୁଣିଲେ ନାଥ ଶରିବ ଯିବ ସରି ।
କର ବା ନ କର ତ୍ରାଣ, ପଦେ ସମର୍ପିଛି ପ୍ରାଣ
ହୃଦେ ଅଛି ତବ ନାମ ଧରି ।
ତୁମ୍ଭ ବିନା ଏ ଜଗତ ଶୂନ୍ୟ ହେ ହରି !
ଶୀତଳ କର ଜୀବନ ପ୍ରେମାମୃତ ଦାନ କରି ।"

ଦୁଇ ବରଷ ତଳେ ସ୍କୁଲ୍ ଡେ: ଇନ୍‌ସପେକ୍ଟର ମଫସଲ ଗସ୍ତକୁ ଯିବା ସମୟରେ ପାଟପୁରରେ ରାତିଏ ରହିଯାଇଥିଲେ । ଗ୍ରାମର ମୁଖିଆ ମୁଖିଆ କେତେ ଜଣ ଲୋକ ଜୁହାପୋଷ୍ଟ କରିବାରୁ ଦାପୋଟି ବାବୁ ଓଡ଼ିଶା ବିଭାଗର ଇନ୍‌ସପେକ୍ଟରଙ୍କଠାକୁ ରିପୋର୍ଟ କରି ଗୋଟିଏ ଅପରପ୍ରାଇମେରୀ ସ୍କୁଲ ବସାଇ ଦେଇଅଛନ୍ତି । ଶିକ୍ଷକ ବେତନ ମାସକୁ ଚାରିଟଙ୍କା । ଏହି ଚାରିଟଙ୍କା ସରକାରରୁ ମିଳେ । ଏହାଛଡ଼ା ପ୍ରତି ପିଲା ମାସକୁ ଅଣାଏ ଲେଖାଏ ଦିଅନ୍ତି । ଶିକ୍ଷକଟି କଟକ ନର୍ମାଲ ସ୍କୁଲର ଅବଧାନ ବିଭାଗର ଉତ୍ତୀର୍ଣ୍ଣ ଛାତ୍ର, ନାମ ବାସୁଦେବ । ନାମଟି ଯେପରି ବାସୁଦେବ, ଲୋକଟା ମଧ୍ୟ ସେହିପରି ବାସୁଦେବ । ଟୋକାଟାର ଭିତର ବାହାର ସବୁ ସୁନ୍ଦର । ଗାଁ ମଝିରେ ଚାଲିଯିବାବେଳେ ମୁଣ୍ଡ ଟେକି କାହାକୁ ଚାହେଁନାହିଁ । ବୟସ ଅନ୍ଦାଜ କୋଡ଼ିଏ । ସୁନ୍ଦର ରୂପ, ଯେମନ୍ତ ଗୋଟିଏ ଚାଉଳରେ ଗଢ଼ା । ପିଲାଦିନେ ମିଳିମିଳା ରୋଗ ହୋଇଥିଲା । ତା ମା ମୁଣ୍ଡରେ ତଳିଲା ବୋତଲ ମୁହଁ ଚିହ୍ନ ଦେଇଥିଲା । ସେ ଚିହ୍ନ ଆଜଯାଏ ଅଛି । ହେଲେ ସେ ଚିହ୍ନ ତାକୁ ମାନେ । ବାସୁଦେବ ପିଲାକାଳରୁ ମା, ବାପ ଛେଉଣ୍ଡ, ମାମୁଘରେ ରହି ମଣିଷ ହୋଇଛି । ବାସୁଦେବ ଜାତିରେ କରଣ, ଶ୍ୟାମବନ୍ଧୁ ମଧ୍ୟ କରଣ । ତେବେ ପୂନେଇ ଗୁରୁବାରରେ ଘରେ ପିଠାପଣା ହେଲେ, ଶ୍ୟାମବନ୍ଧୁ ପାଠଶାଳାକୁ ଯାଇ କହିଆସେ, "ବାପା ବାସୁ ! ସଞ୍ଜବେଳେ ଟିକିଏ ଆମ ଘରକୁ ଯିବ । ତୁମ ମାଉସୀ ଡାକିଛନ୍ତି ।" ଏହିପରି ଯିବା-ଆସିବାରେ ସେମାନଙ୍କ ମଧ୍ୟରେ ନୋଟାଏ ମାୟା ଲାଗିଗଲାଣି । ରେବତୀ ବାସୁକୁ ଦେଖିଲେ କହେ, "ଆହା ମା'ଛେଉଣ୍ଡଟି, କଣ ଖାଏ, କିଏ ତା ଖାଇବା

ଦେଖୁଛୁ ।" ବାପୁ ପ୍ରତିଦିନ ସଞ୍ଜବେଳେ ଯାଇ ଶ୍ୟାମବନ୍ଧୁ ପାଖରେ ଘଡ଼ିଏ ଅଧେ ବସି ଆସେ । ବାପୁକୁ ଦୂରରୁ ଦେଖିଲେ, "ବାପୁଭାଇ ଆଇଲେ, ବାପୁଭାଇ ଆଇଲେ" ବୋଲି ରେବତୀ ପାଟିକରି ବାପକୁ କହେ । ରେବତୀ ସଞ୍ଜବେଳେ ବାପ ପାଖରେ ବସି ପ୍ରତିଦିନ ପଠିତ ପୁରୁଣା ଭଜନଗୁଡ଼ିକ ବାପୁକୁ ଶୁଣାଏ । ବାପୁକୁ ସେହି ଗୀତ ନୂଆ ନୂଆ ପରି ଲାଗେ । ଦିନେ ଏ କଥା ସେ କଥା ପଡ଼ୁ ପଡ଼ୁ ଶ୍ୟାମବନ୍ଧୁ ଶୁଣିଲେ, କଟକରେ ଗୋଟିଏ ଝିଅ ସ୍କୁଲ ଅଛି । ସେଠାରେ ଝିଅମାନେ ପଢ଼ନ୍ତି, ଲୁଗାସିଆଁ ଶିଖନ୍ତି । ସେହି-ଦିନଠାରୁ ରେବତୀକୁ ପଢ଼ାଇବାକୁ ଶ୍ୟାମବନ୍ଧୁର ମନ ହେଲା ଏବଂ ଆପଣା ମନର କଥା ବାପୁଦେବଙ୍କୁ କହିଲା । ବାପୁ, ଶ୍ୟାମବନ୍ଧୁଙ୍କୁ ପିତୃତୁଲ୍ୟ ମାନେ, କହିଲା, "ଆଜ୍ଞା, ମୁଁ ସେହି କଥାଟା କହିବି କହିବି ହେଉଥିଲି ।" ଦୁଇଜଣଙ୍କ ପରାମର୍ଶରେ ରେବତୀକୁ ପାଠ ପଢ଼ାଇବାର ସ୍ଥିର ହେଲା । ରେବତୀ ପାଖରେ ବସି ଶୁଣୁଥିଲା । ଦୁଇ ଡିଆଁରେ ଘର ଭିତରକୁ ଯାଇ ମା'କୁ ଆଉ ଜେଜୀକୁ, ମୁଁ ପାଠ ପଢ଼ିବି, ମୁଁ ପାଠ ପଢ଼ିବି ଖବର ଦେଲା । ମା' କହିଲେ, "ହଉ ହଉ ପଢ଼ିବୁ ।" ଜେଜୀ କହିଲେ, "ପାଠ କଣ ଲୋ ? ମାଇକିନିଆ ଝିଅଟା, ପାଠ କଣ ? ରନ୍ଧାବଢ଼ା ଶିଖ, ପିଠାପଣା ଶିଖ, ଝୋଟିଦିଆ ଶିଖ, ଦହିମୁହାଁ ଶିଖ, ପାଠ କ'ଣ ?"

ରାତିରେ ଶ୍ୟାମବନ୍ଧୁ ପିଣ୍ଡାରେ ଖଣ୍ଡେ ଆମ୍ବକାଠ ପିଢ଼ା ଉପରେ ବସି ଭାତ ଖାଉଛି । ରେବତୀ ପାଖରେ ବସି ଖାଉଛି । ବୁଢ଼ୀ ଆଗରେ ବସି···ଭାତ ମୁଠାଏ ଆଣ, ଡାଲିପାଣି ଟିକିଏ ପକେଇ ଦେଇ ଯା, ଲୁଣ ଟିକିଏ ଦେ, ଇତ୍ୟାଦି କଥା ବୋହୂ ପ୍ରତି ଆଦେଶ କରୁଛନ୍ତି । କଥାରେ କଥାରେ ବୁଢ଼ୀ କହିଲେ, "ହଁରେ ଶ୍ୟାମ ! ରେବୀ ପାଠ ପଢ଼ିବ —ପାଠ କ'ଣରେ, ଢରକା ଝିଅର ପାଠପଢ଼ା କ'ଣ ?" ଶ୍ୟାମବନ୍ଧୁ କହିଲା, "ହେଉ କହୁଛି ତ ପଢ଼ୁ । ଝଙ୍କଡ଼ ପଟ୍ଟନାୟକ ଘର ଝିଅମାନେ ଯେ ଭାଗବତ ବୋଲିପାରନ୍ତି, ବୈଦେହୀଶବିଳାସ ଛାନ୍ଦ ଗାଆନ୍ତି ।" ରେବତୀ ଭାରି ଖପା ହୋଇ ଯାଇ ଜେଜୀକୁ ଗାଳି ଦେଇ କହିଲା, "ଯାଆଲୋ ବୁଢ଼ୀ ତୁ ଗୁଣ୍ଠା ।" ତାହା ବାଦ୍ ଅଳି କରି ବାପକୁ କହିଲା, "ନାଁ । ବାପା, ମୁଁ ପାଠ ପଢ଼ିବି ।" ଶ୍ୟାମବନ୍ଧୁ କହିଲା, "ହଁ—ହଁ, ତୁ ପଢ଼ିବୁ ।" ସେଦିନ କଥା ଏତିକି ।

ତହିଁଆର ଦିନ ଉପରଓଳି ବାପୁଦେବ ସୀତାନାଥ ବାବୁଙ୍କ ପ୍ରଥମ ପାଠ ଖଣ୍ଡିଏ ନେଇ ରେବତୀକୁ ଦେବାରୁ ସେ ବଡ଼ ଖୁସି ହୋଇ ବାପା ପାଖରେ ବସି କଭାପର ମୂଳପୃଷ୍ଠା-ଠାରୁ ଶେଷପୃଷ୍ଠା ଯାଏ ଓଲଟାଇ ଓଲଟାଇ ଦେଖିଲା । ସେଥିରେ ହାତୀ, ଘୋଡ଼ା, ଗୋରୁ ଇତ୍ୟାଦିର ଛବି ଦେଖି ଭାରି ଖୁସି ହୋଇଗଲା । ରଜାମାନେ ହାତୀ, ଘୋଡ଼ା ବାନ୍ଧି ଖୁସି ହୁଅନ୍ତି, କେହି ହାତୀ ଘୋଡ଼ା ଚଢ଼ି ଖୁସି ହୁଏ, ଆମ ରେବୀ ଛବିଟା ଦେଖି

ଖୁସି । ରେଖା ଧାଇଁଯାଇ ମା'ଙ୍କୁ କଡାପର ଛବି ସବୁ ଦେଖେଇଲା, ତାହା ଦାଦ୍ କେଳାକୁ ଦେଖାଇଲା । କେଳା କଣ୍ଠିତ୍ ବିରକ୍ତ ହୋଇ କହିଲା, "ହୁଁ—ଯା—ଯା—!" ରେଖା ତାକୁ "ଦୂର୍ ଦୁର୍" ଗାଳି ଦେଇ ଫେରିଆସିଲା ।

ଆଜି ଦିନଟି ଶ୍ରୀପଞ୍ଚମୀ । ରେବତୀ ସକାଳୁ ବୁଡ଼ପାରି ଗାଧୋଇ ନୂଆ ଲୁଗା ଖଣ୍ଡିଏ ପିନ୍ଧି ଘର ବାହାର ହେଉଛି, ବାପୁଭାଇ ଆସିଲେ କଡାପ ପଢ଼ାଇଦେବ । ବୁଢ଼ୀ ଭୟରେ ବିଦ୍ୟାରମ୍ଭର ଆୟୋଜନ କିଛି ହୋଇନାହିଁ । ବେଳ ଛ' ଘଡ଼ି ସମୟରେ ବାପୁ ଯାଇ ପଢ଼େଇ ଦେଲା, ସ୍ୱରେ—ଅ, ସ୍ୱରେ—ଆ, ହ୍ରସ୍ୱ—ଇ, ଦୀର୍ଘ—ଈ, ହ୍ରସ୍ୱ—ଉ, ଦୀର୍ଘ—ଊ, ଇତ୍ୟାଦି ପଢ଼ାଗଲିଲା; ପ୍ରତିଦିନ ସଞ୍ଜବେଳେ ବାପୁ ଯାଇ ପଢ଼େଇଦିଏ । ଦୁଇ ବରଷ ମଧ୍ୟରେ ରେବତୀ ଢେର୍ ପଢ଼ିଗଲାଣି । ମଧୁରାଓଙ୍କ ଛନ୍ଦମାଳା ପଢ଼ିଯିବା-ବେଳେ ତୁଣ୍ଡରେ ବାଟୁଲି ବାଜେ ନାହିଁ ।

ଦିନେ ରାତିରେ ଶ୍ୟାମବନ୍ଧୁ ବସି ଭାତ ଖାଇବାବେଳେ ମା' ପୁଅ ଦୁଇଜଣ କଥାବାର୍ତ୍ତା ହେଲେ । ପୂର୍ବେ ବୋଧକରୁଁ କିଛି କଥା ହୋଇଥିଲା, ଆଜି ସେହି କଥାର ଉପସଂହାର ।

ଶ୍ୟାମବନ୍ଧୁ—କି ମ, ଭଲ ହେବ ନାହିଁ କି ?

ବୁଢ଼ୀ—ହୁଁ, ଭଲ ତ ହେବ, ଜାତି କଥାଟା ବୁଝୁଁଚୁ ନା ?

ଶ୍ୟାମବନ୍ଧୁ—ହୁଁ ଆଜି ଯାଏ ଆଉ କଣ ବୁଝୁଥିଲି ? ଭଲ କରଣ, ଗରିବପୁଅ ହେଲେ କଣ ହେବ, ଜାତି ଭଲ ।

ବୁଢ଼ୀ—ଧନ ଦଉଲତ ନାହିଁ ବିଗ୍ଭର,
ଜାତି କଥାଟା ଆଗେ ପଗ୍ଭର ।
ଘରେ ରହିବ ତ ?

ଶ୍ୟାମବନ୍ଧୁ—ଘରେ ନ ରହି ଆଉ କୁଆଡ଼େ ଯିବ ? ହଜାର ହେଲେ ମାମୁଁ ମାଇ ନା, ଆଉ କଣ ?

ରେବତୀ ପାଖରେ ବସି ଭାତ ଖାଉଥିଲା, ଏହି କଥାର ମର୍ମ ସେ କଣ ବୁଝିଲା ସେ ଜାଣେ; ମାତ୍ର ସେହି ଦିନଠାରୁ ତାହାର ଭାବଭଙ୍ଗୀ ଅନ୍ୟ ରକମ ଦେଖାଯାଉଛି । ତାକୁ ବାପା ଆଗରେ ବାପୁଭାଇ ପଢ଼ାଇ ଦେଲେ କପରି ଗୋଟାଏ ଲାଜ ମାଡ଼େ । ଅକାରଣ ସକାରଣ ସବୁବେଳେ ହସ ମାଡ଼େ, ମୁଣ୍ଡ ତଳକୁ ପୋତି ଦେଇ ଦୁଇ ଓଠ ଚାପି ହସ ଲୁଚାଏ । ଏଣିକି ବାପୁ ପଢ଼ାଇ ଦେଲେ, କେତେବେଳେ ଗୁନ ଗୁନ ଡାକେ, କେତେବେଳେ ଖାଲି ହୁଁ ହୁଁ କରେ, ପଢ଼ା ସରିଲେ ପାଟି ଚାପି ହସି ହସି ଘରକୁ ପଳାଇଆଏ । ପ୍ରତିଦିନ ସଞ୍ଜବେଳେ ଦାଣ୍ଡଦୁଆର କବାଟକୁ ଧରି କାହାକୁ ଗ୍ଭହିଁଥାଏ ।

ବାପୁ ଆସିଲେ ଘରକୁ ପଳାଏ, ପାଞ୍ଚ ଡାକରେ ବାହାରେ ନାହିଁ । ଏଣିକି ରେବତୀ ବାଣ୍ଡକୁ କେବେ ବାହାରିଲେ ବୁଢ଼ୀ ଖପା ହୁଏ ।

ଦେଖୁ ଦେଖୁ ପଞ୍ଚମୀକୁ ପଞ୍ଚମୀ ଦୁଇ ବରଷ ହୋଇଗଲାଣି । ବିଧାତାଙ୍କର ବିଧାନ, କାହାର ଦିନ ସମାନ ଭାବରେ ଯିବ ନାହିଁ । ଫଗୁଣ ମାସିଆ ଦିନ, କାହିଁ କିଛି ନାହିଁ, ଅଚାନକ କାହୁଁ ବାଡ଼ ଆସିଲା—ସକାଳେ ଗ୍ରାମରେ ଶୁଣାଗଲା, ଗୁମାସ୍ତା ଶ୍ୟାମବନ୍ଧୁ ମହାନ୍ତିକୁ ବାଡ଼ ଧରିଛି । ମଫସଲ ଗାଁରେ ବାଡ଼ ପଡ଼ିଲେ ଡାଟି କବାଟ ପଡ଼ିଯାଏ । ବାଡ଼ ବୁଢ଼ୀ ସତେ ପରି ଝୋକେଇଝିଏ କାଖେଇ ବାଣ୍ଡରେ ମନୁଷ୍ୟ ଘୋଟାଉଛି, ଏପରି ସମସ୍ତେ ମଣନ୍ତି । ଦୁଆରକୁ କାହାରି ଆସିବାର ନାହିଁ । ମାଇକିନିଆ ଦୁଇଟା କଣ କରିବେ । ପିଲାଟା ଡାକ ପାଡ଼ି ଘର ବାହାର ହେଉଛି । ବାସୁଦେବ ଶୁଣି ସ୍କୁଲ୍ ଛାଡ଼ି ଧାଇଁଆସିଲା । ଡର ନାହିଁ, ଭୟ ନାହିଁ, ଆପଣା ଶରୀର ପ୍ରତି ଭାବନା ନାହିଁ, ଶ୍ୟାମବନ୍ଧୁ ପାଖରେ ବସି ଗୋଡ଼ରେ ହାତ ବୁଲାଉଥାଏ, ପାଣି ଟୋପାଏ ମୁହଁରେ ଦେଉଥାଏ । ବେଳ ତିନି ପ୍ରହର ସମୟରେ ଶ୍ୟାମବନ୍ଧୁ ବାସୁ ମୁହଁକୁ ଚାହିଁ ଖନେଇ ଖନେଇ କହିଲା, "ବାଁ—ସୁ ଏଁ—ବି ଆଁ—ଗଲା ।" ବାସୁ ଭୋ ଭୋ କରି ଡକା ପାଡ଼ିଲା । ଘରେ ଚହଳ ପଡ଼ିଗଲା । ରେବତୀ ଭୂଇଁରେ ପଡ଼ି ଗଡ଼ୁଥାଏ । ଗ୍ରାମର ଲୋକେ ଶୁଣି କହିଲେ, ହୋଇଗଲା ପରି । ଦେଖୁ ଦେଖୁ ସଞ୍ଜବେଳକୁ କିଛି ନାହିଁ । କଣ କରିବେ—ବାସୁଦେବଟା କାଲିକା ପିଲା, ଆଉ ଦୁଇଟି ଭୁଆସୁଣୀ । ଗ୍ରାମର ବନ ସେଠି ଧୋବା ଜଣେ ଜାଣିବା ଶୁଣିବା ଲୋକ, ତା ଦେହକରେ ପଚାଶ କି ଷାଠିଏ ପାର କଲାଣି । କାଲି ହେଲେ ଯିବାକୁ ହେବ, ଆଜି ହେଲେ ଯିବାକୁ ହେବ, ଲୁଗାପଟା ଦି'ଖଣ୍ଡ ମଧ୍ୟ ମିଳିବାର ଭରସା ! ଗାମୁଛାଟାଏ ଅଣ୍ଟାରେ ଭିଡ଼ିଦେଇ କୁରାଢ଼ିଟାଏ କାନ୍ଧରେ ପକାଇ ହାଜର ହୋଇଗଲା । ଗ୍ରାମରେ କରଣ ସେହି ଘରକ । ଶାଶୁ, ବୋହୂ, ବାସୁଦେବ ତିନିଜଣ ଧରାଧରି କରି କର୍ମ ଚଳାଇଲେ । ସେ ସମୟର କଥାଗୁଡ଼ାକ ଲେଖିବାକୁ ଆଉ ହାତ ଚଳୁନାହିଁ । ଶ୍ମଶାନରୁ ଫେରି-ଆସିବା ବେଳକୁ କୁଆଁ ଡାକ ଉଠିଲାଣି । ଘରେ ପଶିବା ମାତ୍ରେ ରେବତୀ ମା' ପୋଖରୀ-ପାଣି ଗଲା । ଦେଖୁଁ ଦେଖୁଁ ଦିନ ଦ୍ୱିପ୍ରହର ବେଳେ ଗ୍ରାମରେ ହାଟ ହେଲା, ରେବତୀ ମା' ନାହିଁ ।

ଦିନ ଚାଲିଯାଏ, କାହାରି ଲାଗି ଦିନ ବସିରହେ ନାହିଁ । କାହାରି ପାଲଙ୍କ ଉପରେ ପାଟଛତା, କାହାରି ବେଢ଼ି ଉପରେ କୋରଡ଼ା । ଦିନ ଯାଉଛି ସମସ୍ତଙ୍କର, ଯିବ ସମସ୍ତଙ୍କର । ଦେଖୁଁ ଦେଖୁଁ ତିନିମାସ କଟିଗଲାଣି । ଶ୍ୟାମବନ୍ଧୁ ଘରେ ଦୁଇ ଗୋଟି ଗାଈ ଥିଲେ, ତହିଁଭିତରୁ ବାକି ଟଙ୍କା ସକାଶେ ଜମିଦାର ଘର ଲୋକ ଆସି ବାନ୍ଧ

ଘେନଗଲେ । ଆମ୍ଭେମାନେ ଜାଣୁ, ଜମିଦାର ଘର ଟଙ୍କାକୁ ଶ୍ୟାମବନ୍ଧୁ ସିଦ୍ଧଅଗ୍ନିଙ୍କ ପରି ଜ୍ଞାନ କରେ, ଟଙ୍କାଟିଏ ଅସୁଲ ହେଲେ, ଜମିଦାର କଚେରିରେ ପୈଠ ନ କରିବା ଯାଏ ତାହାର ନିଦ ନାହିଁ । ମାତ୍ର ତାହା ଉପରେ ଟଙ୍କା ଥାଉ ବା ନ ଥାଉ ଗାଈ ଦୁଇଟି ବଡ଼ ଦୁଧିଆଳୀ, ଏ କଥା ପୂର୍ବରୁ ଜମିଦାରଙ୍କୁ ଜଣାଥିଲା । ତାହା ଛଡ଼ା ଜମିଦାର ଚଷିବାକୁ ଯେ ଦିନମାଣ ଜମି ଦେଇଥିଲେ, ତାହା ଛଡ଼ାଇ ନେଲେଣି । ହଳଆଟା ବା ଘରେ ଆଉ କଅଁ ରହିବ ? ଦୋଳପୂର୍ଣ୍ଣିମା ଦିନ ସେ ଛାଡ଼ିଗଲା । ବଳଦ ଦୁଇଟା ସାତେ ସତରଟଙ୍କାରେ ବିକାଯାଇଥିଲା । ଦୁଇଜଣଙ୍କ କିରିୟାରେ ଖରଚ ଯାଇ ଯାହା ବଳିଥିଲା, ଘଣ୍ଟା ବଟା କରି ମାସେ ଚଳିଲା । ଆଜି ଥାଳଟା, କାଲି ପିତଳଟା ବିକାବଟା ବନ୍ଧା-ଛନ୍ଦାରେ ଆଉ ମାସେ ଗଲା । ବାପୁ ଦୁଇ ଓଳି ଦୁଆରକୁ ଆସେ; ଗୀତ ପଢ଼ିଏ ଯାଏଁ ଥାଏ, ଆଈ ନାରୁଣୀ ଶୋଇବାକୁ ଗଲେ ବସାକୁ ଯାଏ । ବାପୁ କିଛି ଟଙ୍କା ପଇସା ଦେଲେ ଆଈ ବା ନାରୁଣୀ କେହି ନିଅନ୍ତି ନାହିଁ । ବଳେଇ ବଳେଇ କିଛି ଦେଲେ ତାହା ଠଣାରେ ପଡ଼ିଥାଏ । ବାପୁ ଜାଣିପାରି ଆଉ କିଛି ଦିଏନାହିଁ । ବୁଢ଼ୀ ପାଖରୁ ଗୋଟାଏ ଦୁଇଟା ପଇସା ନେଇ ସଉଦା କିଣିଦିଏ, ସେହି ଦୁଇ ପଇସାର ସଉଦାରେ ଆଠ ଦିନ ଦିନ ଚଳିଯାଏ । ଘରର ଚାଳ ଉଡ଼ିଗଲାଣି, ଛାଉଣି ଦରକାର । ବାପୁ ଦୁଇଟଙ୍କାର ନଡ଼ା କିଣି ବାଡ଼ିରେ ଗଦେଇଛି, ଶରଧା ହେବାରୁ ଛପରବନ୍ଦି ହୋଇ ପାରିନାହିଁ । ବୁଢ଼ୀ ଏବେ ଆଉ ଦିନରାତି ବସି କାନ୍ଦେ ନାହିଁ । କେବଳ ସଞ୍ଜ ହେଲେ ବସି କାନ୍ଦେ । କାନ୍ଦି କାନ୍ଦି ତଳେ ପଡ଼ିଯାଏ । ବୁଢ଼ୀ ଆଖିକି ଏବେ ଭଲ ଦିଶୁନାହିଁ, ବାଆଁଣୀ ପରି ହୋଇଗଲାଣି । ଏବେ ସେ କାନ୍ଦିବାର ଗୁଣା କରି ରେବତୀକୁ ଗାଳି ଦେବାକୁ ଆରମ୍ଭ କରିଛି । ଏତେ ଯେ ଦୁଃଖ, ଏତେ ଯେ ଦୁର୍ଦ୍ଦଶା ସବୁର ମୂଳ କାରଣ ରେବତୀ, ଏହା ସେ ମନ ମଧ୍ୟରେ ସ୍ଥିର ସିଦ୍ଧାନ୍ତ କରିସାରିଲାଣି । ରେବତୀ ପାଠ ପଢ଼ିବାରୁ ପୁଅ ମଲା, ବୋହୂ ମଲା, ହଳିଆ ଛାଡ଼ିଗଲା, ବଳଦ ବିକାଗଲା, ଜମିଦାର ଘର ଗାଈ ବାଛି ଘେନଗଲା । ରେବତୀ କୁଲକ୍ଷଣୀ, ସେ କୁଢଙ୍ଗୀ, ସେ ଲକ୍ଷ୍ମୀ-ଛାଡ଼ । ବୁଢ଼ୀ ଆଖିକୁ ଯେ ଦିଶୁନାହିଁ, ତାହାର କାରଣ ରେବତୀର ପାଠପଢ଼ା । ବୁଢ଼ୀ ଗାଳି ଦେବାବେଳେ ରେବତୀ ଆଖିରୁ ଦୁଇଧାର ବହିଯାଉଥାଏ, ଡରେ ବୁଢ଼ୀ ପାଖରେ ସେ ଛିଡ଼ା ହୋଇ ପାରେନାହିଁ । ବାଡ଼ିଦୁଆରେ, ନୋହିଲେ ଘର କଣରେ ମୁହଁ ଘୋଡ଼ାଇ କାଠଟି ପରି ବସିଥାଏ । ବାପୁ ମଧ୍ୟ ଦୋଷୀ; କାରଣ ରେବତୀ ତ ଏତେ ଦିନଯାଏ ପଢ଼ି ନ ଥିଲା, ସେହି ଆସି ସିନା ପଢ଼ାଇଦେଲା । ମାତ୍ର ବୁଢ଼ୀ ବାପୁକୁ କିଛି କହିପାରେ ନାହିଁ । ବାପୁ ନ ହେଲେ ଘର ଦିନେ ଅଚଳ, ପୁଣି ଜମିଦାର ଘର ଲଟ ଛୁଡ଼ନାହିଁ । ଜମିଦାର ଘର ଲୋକେ ଆସି ଆଜ ଏ ହିସାବଟା କାଲି ସେ ହିସାବଟା

ମାଗେ । ବାସୁ ନ ହେଲେ ପାଞ୍ଜି ବହିରୁ ପଢ଼ି ପତର କାଢ଼ି ଦେବ କିଏ ? ବାସୁ ନ ଥିବାବେଳେ ସେ ସହଜ କଥାରେ କେବେ କେବେ ଆପଣା ମନ୍ତବ୍ୟ ପ୍ରକାଶ କରିଥାଏ । ରେବତୀ ଆଉ ଏଣିକି ସେହି ଗୃହ-ପ୍ରାଙ୍ଗଣ-ସଞ୍ଚାରିଣୀ ଲୀଳାମୟୀ ପ୍ରତିମା ନୁହେଁ, ତାହା ପାଟି ଆଉ କେହି ଶୁଣିନାହିଁ । ବାପ ମା ଗଲାଦିନୁ ତାକୁ ଦାଣ୍ଡଦୁଆରେ ଆଉ କେହି ଦେଖିନାହିଁ । କେତେ ଦିନଯାଏ ଭେଁ-ଭେଁ କରି ଡକା ପାରୁଥିଲା. ଏବେ ଆଉ ପାଟି କରି କାନ୍ଦେ ନାହିଁ; ମାତ୍ର ଦିବାରାତ୍ର ତାହାର ବଡ଼ ବଡ଼ ଆଖି ଦୁଇଟା ସାନ ସାନ ନୀଳକଇଁ ପରି ପାଣିରେ ଟଳଟଳ ହେଉଥାଏ । ତାହାର କ୍ଷୁଦ୍ର ପ୍ରାଣ—ତହିଁରୁ ଅତି କ୍ଷୁଦ୍ର ମନଟି ଏକାବେଳକେ ଭାଙ୍ଗି ଯାଇଛି । ତା ପକ୍ଷରେ ବର୍ତ୍ତମାନ ଦିନରାତି ସମାନ । ସୂର୍ଯ୍ୟରେ ଆଲୁଅ ନାହିଁ, ରାତିରେ ଅନ୍ଧାର ନାହିଁ । ସମସ୍ତ ଜଗତ ଶୂନ୍ୟ, କେବଳ ପିତାମାତାଙ୍କ ମୂର୍ତ୍ତି ହୃଦୟ ପୂର୍ଣ୍ଣ କରିଅଛି । ମା' ଏହିଠାରେ ବସିଛନ୍ତି, ବାପା ଚାଲିଯାଉଛନ୍ତି, ତାହା ଆଖିରେ କେବଳ ଏହି ଦୁଇଟା ଦିଶୁଅଛି । ବାପା ମା' ମରିଯାଇଛନ୍ତି, ଆଉ ସେମାନେ ଆସିବେ ନାହିଁ, ଏ କଥା ସେ ବିଶ୍ୱାସ କରି ପାରୁନାହିଁ । ପେଟରେ ଭୋକ ନାହିଁ, ଆଖିରେ ନିଦ ନାହିଁ, ଦିବାନିଶି ଅନୁକ୍ଷଣ ପିତାମାତା ଧ୍ୟାନ । ଜେଜୀମା' ଡରରେ ଖାଇବାକୁ ବସେ, ଭୂଇଁରୁ ଗ୍ରାସ ଉଠେ ନାହିଁ, ଦେହରେ ହାଡ଼ ଚମ ଦୁଇଖଣ୍ଡ ଧୂଡ଼ୁ ଧଡ଼ୁ ହେଉଛି । କେବଳ ବାସୁଦେବ ଘରକୁ ଆସିଲେ ଉଠି ବସେ, ବଡ଼ ବଡ଼ ଆଖି ଦୁଇଟାରେ ଜଳଜଳ କରି ବାସୁକୁ ଚାହିଁଥାଏ । ବାସୁ ଅନାଇଲେ ସାନ ନିଃଶ୍ୱାସଟାଏ ପକାଇ ମୁଣ୍ଡ ପୋତିଦିଏ । ବାସୁ ପାଖରେ ଥିବାଯାଏ ତାହାକୁ ଚାହିଁ ରହିଥାଏ । କେତେବେଳେ ତାହାର ଆଉ କିଛି ଜ୍ଞାନ ନ ଥାଏ—ଆଖିରେ ବାସୁଦେବ, ଚିନ୍ତା ବାସୁଦେବ, ସମସ୍ତ ହୃଦୟଟା ବାସୁଦେବମୟ ।

ଶ୍ୟାମବନ୍ଧୁ ମରିବାର ଆଜକୁ ହାତଗଣତିରେ ପାଞ୍ଚମାସ । ଜ୍ୟେଷ୍ଠମାସିଆ ଦିନ । ଠିକ୍ ଦିନ ଦୁଇ ପ୍ରହରବେଳେ ବାସୁ ଦୁଆରେ ଡାକିଲା । ଏତେବେଳେ ସେ କୌଣସି ଦିନ ଆସେନାହିଁ । ବୁଢ଼ୀ କୁଣ୍ଟେଇ କୁଣ୍ଟେଇ ଯାଇ ଦୁଆର ଫିଟାଇଦେଲା । ବାସୁ କହିଲା—"ଜେଜୀମା ! (ବାସୁ ବୁଢ଼ୀକୁ ଜେଜୀମା ବୋଲି ବରାବର ଡାକେ) ଡିପୋଟି ଇନସ୍‌ପେକ୍‌ଟର ହରିପୁର ଥାନାରେ ବସି ପାଠଶାଳା ପିଲାମାନଙ୍କୁ ପାଠ ପଚାରିବେ । ସବୁ ସ୍କୁଲର ପିଲାମାନେ ଯିବେ, ମୋ ପାଖକୁ ଚିଠି ଆସିଛି, ମୁଁ ପିଲାମାନଙ୍କୁ ନେଇ କାଲି ସକାଳେ ଯିବି, ପାଞ୍ଚଦିନ ଲାଗିବ ।" ରେବତୀ କବାଟ କଣରେ ଛିଡ଼ା ହୋଇ ଶୁଣୁଥିଲା, ଲଟ୍ କରି ବସି ପଡ଼ିଲା, ଭାଗ୍ୟେ କବାଟ ଧରିଥିଲା, ନୋହିଲେ ପଡ଼ି ଯାଇଥାନ୍ତା । ବାସୁ ପାଞ୍ଚଦିନ ସକାଶେ ଚାଉଳ, ଲୁଣ, ତେଲ, ବାଇଗଣ କିଣି ଆଣି ଅଗଣାରେ ଥୋଇ ଦେଇ ବୁଢ଼ୀକୁ ଜୁହାରଟାଏ ହୋଇ ଶନିବାର ମୁହଁସଞ୍ଜବେଳେ

ବାହାରିଲା । ବୁଢ଼ୀ କହିଲା, "ବାପା, ଖରାରେ ବୁଲିବୁ ନାହିଁ, ଦେହପାକୁ ଚାହିଁବୁ, ବେଳରେ ଦ'ଟା ଗୁଣ୍ଡରେ ଦେବୁ ।" ଏହା କହି ନିଶ୍ୱାସଟାଏ ପକାଇଲା । ରେବତୀ ଏକଧ୍ୟାନରେ ବାପୁକୁ ଚାହିଁ ରହିଛି । ବାପୁର ମଧ୍ୟ ଆଜି ଆଗକା ଚାହାଣି ନୁହେଁ । ଆଗେ ବାପୁର ଯେମନ୍ତ ଖୁବ୍ ଇଚ୍ଛା—ରେବତୀକୁ ଭଲ କରି ଦେଖିବ; କିନ୍ତୁ ଅନାଇ ପାରେ ନାହିଁ । ଆଜି ଚାରିଚକ୍ଷୁର ମିଳନ, ଆଖି ଫେରାଇବାକୁ କାହାରି ଆଗ୍ରହ ନାହିଁ । ବାପୁ ଚାଲିଗଲାଣି, ଆଉ ଦିନ ନାହିଁ, ଘର ବାହାର ଅନ୍ଧାର ପୂରିଗଲାଣି । ରେବତୀ ଯେପରି ଚାହିଁଥିଲା, ସେହିପରି ଚାହିଁଅଛି । ବୁଢ଼ୀ ଡାକିବାରୁ ତାହାର ଚେତନା ହେଲା । ଘର ବାହାର ସମସ୍ତ ଅନ୍ଧକାରମୟ ।

ରେବତୀ ବସି ଦିନ ଗଣୁଛି, ଆଜି ଛ' ଦିନ । ବାପା ମା' ଗଲାଦିନୁ ଦାଣ୍ଡ-ଦୁଆର ଦେଖି ନ ଥିଲା । ଆଜି ସକାଳୁ ଦାଣ୍ଡଦୁଆରେ ଦୁଇଥର ମୁହଁ ମାରି ଗଲାଣି । ବେଳ ଅନ୍ଦାଜ ଛ ଘଡ଼ି, ହରିହରପୁରରୁ ସ୍କୁଲ୍ ପିଲାମାନେ ଫେରି ଆସିବା ମାତ୍ରେ ଲୋକେ ବୋଲାବୋଲି ହେଲେ—ହରିହରପୁରରୁ ଫେରି ଆସିବା ସମୟରେ ଗୋପାଳପୁରର ବରଗଛ ମୂଳରେ ପଣ୍ଡିତଙ୍କୁ ବାଡ଼ି ଧରିଲା । ଚାରିଥର ପୋଖରୀପାଣି ହେଲା, ଅଧରାତି ବେଳେ ଚାଲିଗଲେ । ଗ୍ରାମ ଲୋକମାନେ ହାୟ ହାୟ କଲେ । ପୁଅ ଝିଅ ମା' ମାଇକିନିଆମାନେ ପାଟି କରି କାନ୍ଦି ପକାଇଲେ । କେହି କହିଲା—ଆହା କି ରୂପରେ ! କେହି କହିଲା—କି ଧୀରରେ ! କେହି କହିଲା—ଦାଣ୍ଡରେ ଚାଲି ଯାଉଥିବ ଯେ, ମାଛିକି ମରି କହିବ ନାହିଁ !

ରେବତୀ ଶୁଣିଲା, ବୁଢ଼ୀ ଶୁଣିଲା । ବୁଢ଼ୀ କାନ୍ଦି କାନ୍ଦି ତାହା କଣ୍ଠ ରୁଦ୍ଧ ହୋଇଗଲା, ଆଉ କାନ୍ଦି ପାରିଲା ନାହିଁ, ଶେଷରେ ଉଠି କହିଲା—"ଆହା ବାପ, ବିଦେଶକୁ ଆସି ଆପଣା ବୁଦ୍ଧିରେ ପ୍ରାଣ ହରାଇଲୁ ରେ ।" ଅର୍ଥାତ୍, ସେ ଦୁର୍ବୁଦ୍ଧି କରି ରେବତୀକୁ ପାଠ ପଢ଼ାଇବାରୁ ମରିଗଲା; ନୋହିଲେ କେବେ ମରି ନ ଥାନ୍ତା । ଶୁଣିଲାବେଳୁ ରେବତୀ ଘରେ ଯାଇ ପଡ଼ିଛି—ସୋର୍ ଶବ୍ଦ ନାହିଁ । ସେଦିନଟା ଗଲା, ତହିଁ ଆରଦିନ ସକାଳେ ବୁଢ଼ୀ ରେବତୀକୁ ପାଖରେ ନ ଦେଖି ପାଟି କରି ଡାକିଲା; "ଲୋ ରେବତୀ, ରେବି ଲୋ, ନିଆଁ ଲୋ, ଚାଲ୍ !" ବୁଢ଼ୀ ବାୟାଣୀ ପରି ହୋଇଗଲାଣି । କାନ୍ଦ-ବୋବାଳି ନାହିଁ, କେବଳ ରାଗରେ ଦିନରାତି ରେବତୀକୁ ଗାଳି । ପଡ଼ିଶା ଲୋକେ, ଦାଣ୍ଡ ଗଲା ଲୋକେ, ଯେତେବେଳେ ଇଚ୍ଛା ସେତେବେଳେ ଶୁଣୁଛନ୍ତି, "ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଚାଲ୍ !" ବୁଢ଼ୀ ଆଖିକୁ ଦିଶୁନାହିଁ, ଅଣ୍ଡାଳି ଅଣ୍ଡାଳି ଯାଇ ରେବତୀକୁ ପାଇଲା, ଡାକିଲା । ଜବାବ ନ ପାଇ ତା ଦେହରେ ହାତ ବୁଲାଇ ଦେଖିଲା, ଖର ଜର, ଦେହରୁ ନିଆଁ ବାହାରୁଛି, ଜ୍ଞାନ

ନାହିଁ । ବୁଢ଼ୀ ଢେର୍ ବେଳଯାଏ ବସି କଣ ପାଞ୍ଚିଲା । କଣ କରିବ, କାହାକୁ ଡାକିବ, ମନ ମଧ୍ୟରେ ଜଗତ ସଂସାର ଖୋଜିଲା, ପାଖରେ କାହାକୁ ଦେଖିଲା ନାହିଁ । କିଛି ସ୍ଥିର କରି ନ ପାରି ଖପା ହୋଇ କହିଲା, "ଯାହା ଆପଣା କଥା, ତହିଁର ଇଲାଜ କିଆ ?" ଅର୍ଥାତ୍, ତୁ ପାଠ ପଢ଼ିବାକୁ ଜର ହେଲୁ, ମୁଁ କଣ କରିବି ?

ଦିନେ ଗଲା, ଦୁଇଦିନ ଗଲା, ତିନିଦିନ ଗଲା, ଚାରିଦିନ ଗଲା, ପାଞ୍ଚଦିନ ମଧ୍ୟ ଗଲା । ରେବତୀ ମାଟିରେ ଲାଗିଯାଇଅଛି, ଆଖି ଫିଟାଉ ନାହିଁ, ଡାକିଲେ ଉତ୍ତର ନାହିଁ, ହଁ-ହୁଁ ହେବାକୁ ମଧ୍ୟ ନାହିଁ । ଆଜି ଛ ଦିନ, ରେବତୀ ସକାଳୁ ଦୁଇ ଚାରିଥର ପାଟି କଲାଣି । ବୁଢ଼ୀ ପାଟି ଶୁଣି ପାଖକୁ ଗଲା, ଦେହରେ ହାତ ବୁଲାଇ ଦେଖିଲା, ଗୋଡ଼ହାତ ଶୀତଳ, ଡାକିଲେ ହୁଁ ହୁଁ ଜବାବ ଦେଉ । କଟମଟ କରି ମୁହଁକୁ ଚାହୁଁଛି, କିଛି ନ ପଚାରିଲେ ମଧ୍ୟ କେତେ କଥା କହିପକାଉଛି । କୌଣସି କବିରାଜ ଦେଖିଲେ, "ତୃଷ୍ଣା ଦାହଃ ପ୍ରଲାପଶ୍ଚ—"ଇତ୍ୟାଦି ଶ୍ଳୋକ ପଢ଼ି କହନ୍ତେ, "ସନ୍ନିପାତର ଲକ୍ଷଣ ।" ମାତ୍ର ବୁଢ଼ୀ କିଛି ଖୁସି ହେଲା । ଦେହରେ ତାତି ନାହିଁ, କଥା କହୁ ନ ଥିଲା, ପାଟି ଫିଟାଇଲାଣି, ପାଣି ପିଇବାକୁ ମାଗିଲାଣି, ଛ' ଦିନ ହେଲା ଜିଭରେ ପାଣି ଟୋପାଏ ବାଜି ନାହିଁ, ଚାରିଟା ପଥି ପେଟରେ ପଡ଼ିଲେ ଝିଅଟା ଉଠି ବସିବ । "ତୁ ଶୋଇଥା, ମୁଁ ଚାରିଟା ପଥି ରାନ୍ଧି ଆଣେ," ଏହା କହି ବୁଢ଼ୀ ବାହାରକୁ ବାହାରିଗଲା । ପଥି ରାନ୍ଧିବ କଣ ? ଘରେ ପାଛିଆ, କୁଣ୍ଡେଇ, ହାଣ୍ଡି, ଅଟିକା ସବୁ ଖୋଜିଲା, ମୁଠାଏ ଚାଉଳ ନାହିଁ । ନିଃଶ୍ୱାସଟାଏ ପକାଇ ଘଡ଼ିଏ ବସିଲା । ବାପୁ ପାଞ୍ଚ ଦିନକୁ ଚାଉଳ ଡାଲି କିଣି ଦେଇ ଯାଇଥିଲା, ସେଥିରେ ଦଶଦିନ ଚଳିଗଲା । ବୁଢ଼ୀର ଦୃଷ୍ଟିଶକ୍ତି ଥିଲେ ବୁଝିପାରନ୍ତା । ବସି ବିଚାର କଲେ ବୁଦ୍ଧି ଦିଶେ । ଘରେ କଂସା ବାସନ କିଛି ନାହିଁ, ହାତରେ ଗୋଟାଏ କଣା ଥାଳି ପଡ଼ିଲା, ସେଇଟା ଧରି ହରିସା ଦୋକାନକୁ ବାହାରିଲା । ହରିସା ଘର ଗ୍ରାମ ମଝିରେ, ତାହାର ଯଥାମତ ଦୋକାନ ନାହିଁ, ଚାଉଳ, ଡାଲି, ଲୁଣ, ତେଲ ରଖିଥାଏ, କୌଣସି ଦିନ ବିଦେଶୀ ଲୋକ ପହଞ୍ଚିଗଲେ କିଣନ୍ତି । କେବେହେଲେ ଗ୍ରାମ ଲୋକଙ୍କର କିଛି ଦରକାର ହେଲେ କିଣନ୍ତି । ବୁଢ଼ୀ ଥାଳିଟି ଧରି ହରିସା ଦୁଆରେ ପହଞ୍ଚିଲା । ହରିସା ବୁଢ଼ୀ ହାତରେ ଥାଳିଟି ଦେଖି ଅର୍ଥଟା ବେଶ୍ ବୁଝିଗଲା । ବୁଢ଼ୀ ଆପଣାର ଅଭିପ୍ରାୟ ଜଣାଇବାରୁ ହରି ଥାଳିଟା ହାତରେ ଧରି ଚାରିପାଖ ଦେଖି କହିଲା, "ନାହିଁ ନାହିଁ, ମୋ ଘରେ ଚାଉଳ ନାହିଁ ଆଉ ଏହି କଣା ଥାଳିଟା ରଖି କିଏ ଚାଉଳ ଦେବ ?" ହରି ଘରେ ଯେ ଚାଉଳ ନ ଥିଲା ତାହା ନୁହେଁ, ଦେବାକୁ ମଧ୍ୟ ଇଚ୍ଛା, ତେବେ ଶସ୍ତାରେ ନେବାର କଥା । ଚାଉଳ ନ ଥିବାର ଶୁଣି ବୁଢ଼ୀ ମୁଣ୍ଡରେ ତ ବଜ୍ର ପଡ଼ିଲା—'କଅଣ କରିବି, ଝିଅଟା ଜରରୁ ଉଠିଛି, ତା

ମୁହଁରେ କଣ ଦେବ ? ଘଡ଼ିଏ ବସିଗଲା, ବେଳ ବୁଡ଼ି ଆସିଲାଣି, ହରିକୁ ଦୁଇଥର ଅନାଇଲା । ଯାଏଁ ଝିଅଟା କଣ କରୁଛି ଦେଖେଁ ।' ଥାଳଟି ଧରି ଉଠିଛି, ହରି କହିଲା, "ଦିଅ ଦିଅ ଥାଳଟା ଦିଅ । ଦେଖେ, ଘରେ କଣ ଅଛି ।" ହରି ଥାଳଟା ରଖି ଚାରିମାଣ ଚାଉଳ, ଅଧମାଣେ ଡାଲି, କିଛି ଲୁଣ ଦେଲା । ବୁଢ଼ୀ ଚାରି ଛ ଜାଗା ବସି ଉଠି ଘରେ ଆସି ପହଞ୍ଚିଲା । ଏ ପର୍ଯ୍ୟନ୍ତ ବୁଢ଼ୀ ଦାନ୍ତରେ ଦାନ୍ତକାଠି ବାଜିନାହିଁ । ଦେହ ମନ କଥା କଣ କହିବୁ ? ଘରେ ପହଞ୍ଚି ରେବତୀକୁ ଡାକିଲା । ତାହାର ବିଶ୍ୱାସ ରେବତୀ ଭଲ ହୋଇଗଲାଣି, ପାଣି କାଢ଼ି ଦେବ, ସେ ଭାତ ରାନ୍ଧିବ । ରେବତୀ ଜବାବ ନ ଦେବାରୁ ସେ ଭାରି ଖପା ହୋଇଯାଇ ଡାକିଲା, "ଲୋ ରେବତୀ, ଲୋ ରେବି, ଲୋ ନିଆଁ, ଲୋ ଚୁଲି !" ଜବାବ ନାହିଁ ।

ଏଣେ ରେବତୀର ସନ୍ନିପାତ କ୍ରମଶଃ ବଢ଼ୁଛି, ଭୟାନକ ଯନ୍ତ୍ରଣା, ଦେହ କ୍ରମଶଃ ଶୀତଳ ହେଉଛି, ଜିଭ ଶୁଖିଗଲାଣି, ଭୟଙ୍କର ପିପାସା, ଜିଭଟା ଯେମନ୍ତ ଭିତରକୁ ଚାଲିଯାଉଛି । ଅନ୍ୟ ଜାଗାକୁ ଯିବାକୁ ଇଚ୍ଛା, ଘରଯାକ ଗଡ଼ି ଗଡ଼ି ବାହାରକୁ ଆସିଲା, ସୁଖ ଲାଗିଲା ନାହିଁ । ବାଡ଼ିଦୁଆରକୁ ଯାଇ ପିଣ୍ଡାରେ ବସିଲା । ଦିନ ଶେଷ ହୋଇ ଆସିଲାଣି, ଖୁବ୍ ପବନ ବହୁଛି, ବାଡ଼କୁ ଆଉଜି ବସିଲା । ବାଡ଼ିଯାକ ଅନାଇଲା । ବାପା ଗଲା ବରଷ ଏଠି କଦଳୀ ଲଗାଇଥିଲେ, ଭଣ୍ଡା ବାହାରିଲାଣି, ଦୁଇ ବରଷ ତଳେ ମା' ଗୋଟିଏ ପିଜୁଳି ଗଛ ବାଡ଼ରେ ରୋଇଥିଲେ, ରେବତୀ ଧାଇଁ ଧାଇଁ କୂଅରୁ ଢାଳେ ପାଣି ସେ ଗଛରେ ଦେଇଥିଲା । ସେ ଗଛଟା କେଡ଼େଟାଏ ହେଲାଣି, ଫୁଲ ଧରିଲାଣି । ସେ ଗଛ ଦେଖି ମା' ମନରେ ପଡ଼ିଲା । ବୁଦ୍ଧି ସ୍ଥିର ନାହିଁ, ମନ ଚଞ୍ଚଳ, ଲଗାଲଗି କିଛି କଥା ମନରେ ପଡ଼ୁନାହିଁ; ମାତ୍ର ମାତାର ଆନନ୍ଦମୟୀ ମୂର୍ତ୍ତି ଆଉ ମନକୁ ଛାଡ଼ୁନାହିଁ । ସଞ୍ଜ ଗଡ଼ିଗଲାଣି, ଗଛମୂଳରୁ ଡାଳ ଉଢ଼ାଳରୁ ଅନ୍ଧାରଗୁଡ଼ାକ ବାହାରି ବାଡ଼ି ପୂରିଗଲାଣି, ଆଉ କିଛି ଦିଶୁନାହିଁ । ଆକାଶକୁ ଚାହିଁଲା, ପହିଲକିଆ ତାରାଟିରୁ ଧକଧକ ହୋଇ କିରଣ ବାହାରୁଛି । ଏକଧ୍ୟାନରେ ରେବତୀ ସେ ତାରାକୁ ଚାହିଁଅଛି, ଆଖିରେ ଆଉ ପଲକ ପଡ଼ୁନାହିଁ । ତାରାର ଆକାର କ୍ରମଶଃ ବଢ଼ି ଯାଉଛି, ଚନ୍ଦ୍ରପରି ଆକାର ହୋଇଗଲାଣି, ଆଲୁଅର ବୃଦ୍ଧି, କ୍ରମଶଃ ଉଜ୍ଜ୍ୱଳ । ଆହା, ଏ କି ମୂର୍ତ୍ତି ତାରା ମଧ୍ୟରେ ? ଶାନ୍ତିଦାୟିନୀ ପ୍ରେମମୟୀ ଆନନ୍ଦମୟୀ ମାତାଙ୍କର ଅଭୟା ମୂର୍ତ୍ତି ବସି ସ୍ନେହରେ କୋଳକୁ ନେବା ସକାଶେ ଡାକୁଛନ୍ତି । ମା' ଦୁଇ ଗୋଟି କିରଣ-ହସ୍ତ ବଢ଼ାଇଦେଲେ । ସେହି କିରଣ ଦିଓଟି ଆସି ଦୁଇ ଚକ୍ଷୁ ସ୍ପର୍ଶ କରି ହୃଦୟରେ ପ୍ରବେଶ କଲା । ସେହି ଅନ୍ଧକାର ମଧ୍ୟରେ ଆଉ କୌଣସି ଶବ୍ଦ ନାହିଁ । କେବଳ ନିଃଶ୍ୱାସ ଶବ୍ଦ, ସେ ଶବ୍ଦ କ୍ରମଶଃ ପ୍ରବଳ, ଖୁବ୍ ଦୀର୍ଘ ନିଃଶ୍ୱାସ, ଶେଷରେ ମା' ମା' ଦୁଇଥର ଅସ୍ପଷ୍ଟ

ଶବ୍ଦ ଶୁଭିଲା । ବାଡ଼ି ନିସ୍ତବ୍ଧ, ନୀରବ ।

ଏଣେ ବୁଢ଼ୀ ଘୁଷୁରି ଘୁଷୁରି ଯାଇ ରେବତୀ ଶୋଇବା ଜାଗା ଦେଖିଲା, କେହି ନାହିଁ । ଘରଯାକ, ବାହାର ଅଗଣା, ଢେଙ୍କି ଶାଳ, ଢେଙ୍କି ଲାଞ୍ଜ, କାହିଁ ନାହିଁ । ମନେ କଲା, ଜର ଭଲ ହୋଇଗଲାଣି, ବାଡ଼ିରେ ବୁଲୁଥିବ । ସେହି ଡାକ—"ଲୋ ରେବତୀ, ଲୋ ରେବି, ଲୋ ନଆଁ, ଲୋ ଚୁଲି !" ବାଡ଼ିଦୁଆରକୁ ଗଲା, ଅନ୍ଧାରି ଅନ୍ଧାରି ପିଣ୍ଡାକୁ ଉଠିଲା । ପିଣ୍ଡାଟା ଭୂମିଠାରୁ ଦୁଇହାତ ଉଚା, ହାତେ ଚଉଡ଼ା ।

"ମଲା, ତୁ ଏଇଠି ବସିଛୁ ?" ଦେହରେ ହାତ ଦେଇ ବୁଢ଼ୀ ପ୍ରଥମେ ଚମକି ପଡ଼ିଲା, ଆଉ ଥରେ ଭଲକରି ଗୋଡ଼ଠାରୁ ମୁଣ୍ଡଯାଏ ହାତ ବୁଲାଇଲା, ନାକରେ ହାତଦେଇ ଗୋଟାଏ ଉତ୍କଟ ଶବ୍ଦ କଲା, ସଙ୍ଗେ ସଙ୍ଗେ ପିଣ୍ଡାତଳେ ଦୁଲ୍ ଦାଲ୍ ଶବ୍ଦ ।

ଶ୍ୟାମବନ୍ଧୁ ମହାନ୍ତି ଘରର କୌଣସି ପ୍ରାଣୀକୁ ଜଗତରେ ଆଉ କେହି ଦେଖି ନାହାନ୍ତି । ପଡ଼ୋଶିମାନେ ରାତ୍ରି ପହରକ ସମୟରେ ଶେଷ ଶବ୍ଦ ଶୁଣିଥିଲେ—

"ଲୋ ରେବତୀ, ଲୋ ରେବି, ଲୋ ନଆଁ, ଲୋ ଚୁଲି !"

# ନୀଳ ମାଷ୍ଟ୍ରାଣୀ

## ଗୋଦାବରୀଶ ମହାପାତ୍ର

କଥାଟି ସିନା ତିନୋଟି ଗାଁର; କିନ୍ତୁ ଖବରଟା ଦଶ ପଚିଶି ଖଣ୍ଡ ଗାଁରେ ଜଣାଶୁଣା । ଏ ଗାଁର କୁଆ ରାତି ପାହିଲେ ସେ ଗାଁ ଆକାଶରେ ଉଡ଼େ, ଆଉ ଗାଁରେ ଚାଳରେ ବସେ, କିଛି ବାଛ-ବିଚାର ନ ଥାଇ ସବୁଠାରୁ ଆହାର ସଂଗ୍ରହ କରି ଆସେ, ସବୁ ଗାଁରେ ଏକାପରି ଡାକେ । ଏ ଗାଁର ଗାଈଗୋଠ ସେ ଗାଁର ପଡ଼ିଆକୁ ଚରିବାକୁ ଯାନ୍ତି । ଏ ଗାଁର ବୁଲାକୁକୁର ଖାଦ୍ୟ ଅନ୍ୱେଷଣ କରି ଅନ୍ୟ ଦୁଇ ଚାରି ଗାଁରେ ବୁଲି ଆସନ୍ତି; କିନ୍ତୁ ଏହି କୁଆ, କୁକୁର ଓ ଗାଈଗୋରୁଙ୍କୁ ସେ କଥା କେହି କିଛି କହନ୍ତି ନାହିଁ; ମାତ୍ର ଏ ଗାଁର ଲୋକ ଆର ଗାଁକୁ ଗଲେ, ସେ ଗାଁ ପାରହୋଇ ତୃତୀୟ ଗାଁ ଦାଣ୍ଡରେ ଚାଲିଲେ କିମ୍ବା ସେ ଗାଁର ଲୋକ ଏ ଗାଁକୁ ଆସିଲେ, ଅଥବା ତିନି ଗାଁର କେହି ଲୋକ ଏକାଠି ଭେଟ ହେଲେ; କାହା ମୁହଁରୁ କେତେ କଥା ବାହାରେ । କିଏ କହେ ପାଠର ଦୋଷ, କିଏ କହେ ସମାଜର ଦୋଷ, କିଏ ବା କହେ ପାଠର ଦୋଷ ନୁହେଁ, କି ସମାଜର ଦୋଷ ନୁହେଁ ଦୋଷଟା ହେଉଛି ନୀଳ ମାଷ୍ଟ୍ରାଣୀର । ନିମାପଡ଼ାର ପାଖ ପାଖି ତିନୋଟି ଗାଁ ଦାଣ୍ଡରେ ଏହିପରି କେତେ କଥା ଚାଲେ ।

ଏ ନୀଳ ମାଷ୍ଟ୍ରାଣୀ କିଏ ?

ସମୟଟା ଖରାଦିନ ରାତି । ଆକାଶ ଧୂମାୟମାନ । ନକ୍ଷତ୍ର ଓ ଚନ୍ଦ୍ର ଆଲୋକରେ ଜଗତଟା ଛାଇଛାଇଆ ଦେଖାଯାଉଛି । ରାତି ପ୍ରାୟ ପହରକୁ ଚାଲିଯାଇଛି । ଏହି ତିନୋଟି ଗାଁ ଭିତରୁ ଗୋଟାଏ ଗାଁର ସ୍କୁଲ କୁଡ଼ିଆ ଭିତରେ ଦୁଇ ଚାରି ଚିକୁଳା ମଇଳା ଲୁଗା ଉପରେ ମୁହଁ ପୋତି ପଡ଼ିରହି ବାଇଶି ବର୍ଷ ବୟସର ଗୋଟିଏ ଯୁବତୀ କେତେ କଥା ଭାବୁଛି । କିଏ ଦେଖିଲେ ହୁଏତ ଭାବିପାରେ, ଯୁବତୀ ଦିନସାରା ପରିଶ୍ରମ କରି ଆସି କ୍ଳାନ୍ତ ହୋଇ ପଡ଼ିଯାଇଛି, ତାର ଚେତା ନାହିଁ । କେବଳ ଶାରୀରିକ ଶ୍ରମ ଫଳରେ ଏ କଡ଼ ସେ କଡ଼ ଲେଉଟାଉଛି; କିନ୍ତୁ ପ୍ରକୃତରେ ତାହା ନୁହେଁ । ତାର ଯେ କ୍ଳାନ୍ତି ତାହା ଶାରୀରିକ କ୍ଳାନ୍ତି ନୁହେଁ, ତାହା ହେଉଛି ମାନସିକ କ୍ଳାନ୍ତି । ଗତ ତିନିବର୍ଷ ଭିତରେ

ସେ ଏପରି ଭାବରେ ମାନସିକ କ୍ଳାନ୍ତି ଭୋଗକରିଆସିଛି ଯେ, ତାର ଅନ୍ତରାତ୍ମା ସେଥିରେ ଦହିଯାଉଛି । ସେ ଆଖି ବୁଜି ପଡ଼ିଛି ସତ, ଆଖିକି ତାର ନିଦ ନାହିଁ । ଆଖି ବୁଜି ମଧ୍ୟ ସେ ସବୁ ଦେଖିପାରୁଛି । ତାର ମୁଦା ଆଖି ଭିତରେ ଗୋଟାଏ ବିରାଟ ସଂସାର ଦେଖାଯାଉଛି; କିନ୍ତୁ ସେ ସଂସାର ସମ୍ପୂର୍ଣ୍ଣ ଧ୍ୱସ୍ତବିଧ୍ୱସ୍ତ । ସେହି ସଂସାରରେ ରାସ୍ତାଘାଟ ନାହିଁ, କୂଳ ଥଳ ନାହିଁ, ମୁଣ୍ଡ ଗୁଞ୍ଜିବାକୁ ବି ସ୍ଥାନ ନାହିଁ । ସେ ଦେଖୁଛି ଦଶ ବାର ବର୍ଷ ତଳର ସବୁ ଦୃଶ୍ୟ । ମାନସ-ଚକ୍ଷୁରେ ତାହା କେଡ଼େ ସୁନ୍ଦର । ଦେଖୁଛି ସେ ଗୋଟିଏ ବ୍ରାହ୍ମଣ ପରିବାରର ଜରଜରା କୁଟୀର । ସେହି କୁଟୀର ଭିତରେ ଦୁଇଟି ସନ୍ତାନ ଓ ତାଙ୍କର ପିତୃଦେବ । ମା' ଦୁଇବର୍ଷ ତଳୁ ଚାଲିଯାଇଛି । ମା' ଚାଲିଯିବାର ଦୁଃଖ ତାଙ୍କୁ ଯେତେ ବାଧୁ ନାହିଁ, ବାଧୁଛି ବାପାଙ୍କୁ । ରାତି ନ ପାହୁ ଉଠି ବାପା ଗାଁ-ମୁଣ୍ଡ ପୋଖରୀ କୂଳରେ ଥିବା ଠାକୁର ମନ୍ଦିର ହତା ଭିତରୁ ଆମ୍ବତୋଟାଏ ସଜଫୁଲ ତୋଳି ଆଣି ଚାଲିଯାଉଛନ୍ତି ବାହାରକୁ, ଆଉ ସେହି ପିଲା ଦୁଇଟି ଦାଣ୍ଡପିଣ୍ଡାରେ ବସି ତାଙ୍କୁ ଅପେକ୍ଷା କରି ରହିଛନ୍ତି । ବାପା ଫେରିଆସୁଛନ୍ତି ବେଳ ଦିହରକୁ, ଘରେ ପୁଣି ଆନନ୍ଦର କୋଳାହଳ ପଡ଼ିଯାଉଛି । ବାପା ସେମାନଙ୍କୁ କ୍ଷଣେ ବୁକୁତଳେ ଜାକିଧରି ସେମାନେ ନ ଜାଣିଲା ପରି ଆଖିରୁ ଲୁହ ପୋଛି, ଘର ଓଳେଇ ଚୂଲି ଲିପି ଗୋରୁଙ୍କ ସାରି ଧଣିଙ୍କ ଘରେ ପୂଜାରେ ବସିପଡ଼ୁଛନ୍ତି । ଧଣିଙ୍କ ଘରେ ପୂଜା କରିବାକୁ ବସି ସେ ଠାକୁରଙ୍କୁ କେତେ ଯେ କ'ଣ କହୁଛନ୍ତି, ପିଲାମାନେ କିଛି ବୁଝି ପାରୁ ନାହାନ୍ତି ।

ସ୍ତ୍ରବନ୍ତୀ ପୁଣି କଡ଼ ଲେଉଟାଉଛି । ଆଖି ଫିଟେଇ ଦେଖୁଛି ସେ ଘରେ କେହି ନାହାନ୍ତି । ତା ପରେ ପୁଣି ଆଖି ବୁଜୁଛି । ପୁଣି ସେ ଦେଖୁଛି ସେଇ ଅତୀତର ଚିତ୍ର । ସେହି ଯେଉଁ ମାତୃହୀନ ଦୁଇଟି ସନ୍ତାନ ଭିତରେ ସାନଟି ହେଉଛି ଭାଇ, ଭଉଣୀ ଆଠ ଦଶ ବର୍ଷର । ଭାଇ ଭଉଣୀ ଦୁହେଁ ଗାଁ ଚାଟଶାଳୀକୁ ଯାଇ ପାଠ ପଢ଼ୁଛନ୍ତି । ଧୂଳିଧୂସର ହୋଇ ବନ୍ଧି ସିଲଟ ହାତରେ ଧରି ଘରକୁ ଫେରିଲାବେଳେ ମାତୃଶୂନ୍ୟ ସେହି କୁଟୀରରେ ପିତାଙ୍କ ସ୍ନେହ ଆଦର ପାଇ ହସଖେଳରେ ସମୟ କଟାଉଛନ୍ତି ।

ସ୍ତ୍ରବନ୍ତୀ ପୁଣି କଡ଼ ଲେଉଟାଇ, ସେହିପରି ମାନସ-ଚକ୍ଷୁରେ ଦେଖିଲା,— ଟିକିଅର ବୟସ ହେଲା, ବାପା ବର ଖୋଜି ଆଣିଲେ, ଦୁଆରମୁହଁରେ ବେଦିରେ ବସି ସମଗ୍ର ଶରୀରକୁ ନୂଆ ଲୁଗାରେ ଘୋଡ଼ାଇ ହୋଇ ସେ ପୁରୋହିତ ମନ୍ତ୍ରଗାନ ଭିତରେ କାହାର ପାଣିଗ୍ରହଣ କଲା । ଏ କଥା ଦେଖି ଅର୍ଦ୍ଧ-ସୁଷୁପ୍ତ ଅବସ୍ଥାରେ ତାର ସେହି ଦେହଟା ଥରିଉଠିଲା । ତାର ଲୋମକୂପ କମ୍ପି ଉଠିଲା । ସେ ଉଠି ବସିପଡ଼ିବାକୁ ଚେଷ୍ଟା କରି ପୁଣି ସେହି ମଇଳା ଲୁଗା ଭିତରେ ମୁଣ୍ଡ ଗୁଞ୍ଜି ପଡ଼ିରହିଲା । ଏହାପରେ ଦେଖିଲା

ସବୁ ଶେଷ । ବିବାହର ଛ'ମାସ ପରେ ଏହି ମାତୃଶୂନ୍ୟ କୁଟୀର ଭିତରେ ମାତୃସ୍ନେହା କଣୋଶ୍ୱର ନବଭରଣା ଅଙ୍ଗସୌଷ୍ଠବ ସକାଳେ ଝଡ଼ି ପଡ଼ିଥିବା ଗଙ୍ଗଶିଉଳି ଫୁଲ ପରି ପଡ଼ିରହିଲା । ତାକୁ କିଏ ଗୋଟାଇ ନେଇ ଦେବତାଙ୍କ ମସ୍ତକରେ ଦେବ ? ସମାଜରେ ସେ ବିଧାନ ନାହିଁ ।

ଏ ଦୃଶ୍ୟ ଦେଖି ଦେଖି ଯୁବତୀର ଦୁଇ ଆଖିରୁ ଦୁଇଟୋପା ନିର୍ମଳ ଲୁହ ଝରିପଡ଼ି ସେଇ ମଇଳା ଲୁଗା ଭିତରେ କୁଆଡ଼େ ମିଶିଗଲା । ସେତିକିବେଳେ ତା ମୁହଁରୁ ଅଜାଣତରେ ପଦେ ବାହାରି ପଡ଼ିଲା—'ବୋଉ ଲୋ !'

ବୋଉ ସେଠାରେ ନ ଥିଲା । ସେ ତ ଚାଲିଯାଇଥିଲା ବହୁ ଦିନ ତଳୁ, ବାପା ବି ଚାଲିଯାଇଥିଲେ । ସେ ଦେଖିଲା, ସେହି କୁଡ଼ିଆ ଭିତରେ ସେହି ନବାଭରଣା ଝିଅଟିକୁ ବାପା ତାର ପାଠ ପଢ଼ାଇବାରେ ଲାଗିଛନ୍ତି । ସେ ସିଲେଇ ଶିଖିଲା, ସେ ବହି ପଢ଼ି ଜାଣିଲା, ସେ ଲେଖିପାରିଲା, ସେ ହିସାବପତ୍ର ରଖିପାରିଲା । ଏହିପରି ସମୟରେ ନାରୀ-ଆନ୍ଦୋଳନର ଏକ ଜୁଆର ସେ ଅଞ୍ଚଳରେ ଖେଳିଗଲା । ସେହି ଜୁଆରରେ ତାର ବାପା ଭାସିଯାଇ ପାଖ ଗାଁ ପ୍ରାଇମେରୀ ସ୍କୁଲରେ ଝିଅକୁ ଲଗାଇଦେଲେ । ତେଣିକି ତାର ନାଁ ହେଲା 'ନୀଳ ମାଷ୍ଟରାଣୀ' ।

ଯୁବତୀ ମଇଳା ଲୁଗା ଭିତରୁ ମୁହଁ ଟେକି ଦେଖିଲା, ନୀଳ ମାଷ୍ଟରାଣୀ ମଧ୍ୟ ତାକୁ ଆଉ ଦେଖାଯାଉନାହିଁ । ବାପା ଚାଲିଯାଇଛନ୍ତି, ଯେଉଁଠାକୁ ଗଲେ ଆଉ କେହି ଫେରନ୍ତି ନାହିଁ, ସେଠାକୁ । ଭାଇ ଚାଲିଯାଇଛି ପାଖରୁ ଦୂରକୁ ।

ନୀଳ ମାଷ୍ଟରାଣୀ ଗଲା କୁଆଡ଼େ ? ତିନି ଖଣ୍ଡି ଗାଁ ଭିତରୁ ମଝି ଗାଁରେ ନୀଳ ମାଷ୍ଟରାଣୀ 'ମାଷ୍ଟରାଣୀ' ହୋଇ ରହିଲା । ତାକୁ ବୁଢ଼ାମାନେ ନିନ୍ଦା କଲେ, ଯୁବକମାନେ ପ୍ରଶଂସା କଲେ, ଛାତ୍ର ଓ ଛାତ୍ରୀମାନେ ମାଆ ପରି ଦେଖିଲେ । ନୀଳ ମାଷ୍ଟରାଣୀ ଏ ଗାଁରେ ପାଠ ପଢ଼େଇ ସେ ଗାଁରେ ତାର ସେହି ପିତୃମାତୃସ୍ନେହ କୁଡ଼ିଆ ଭିତରକୁ ଫେରିଯାଇ ସ୍ନେହର ଭାଇକୁ ମଣିଷ କରିବାରେ ଲାଗିଲା ।

ଯୁବତୀ ଛଟପଟ ହୋଇ ମୁହଁ ମାଡ଼ି ପଡ଼ି ଅତି ବିଚିତ୍ର ଦୃଶ୍ୟ ଦେଖିଲା— ଯେଉଁ ଗାଁରେ ନୀଳ ମାଷ୍ଟରାଣୀ ପିଲାଙ୍କୁ ପାଠ ପଢ଼ାଉଛି, ସେହି ଗାଁରେ କେତେ ଯୁବକଙ୍କ ଉଦ୍ୟମରେ ଗୋଟିଏ ଯାତ୍ରାଦଳ ବାହାରିଲେ । 'ରାମଲୀଳା', 'କୃଷ୍ଣଲୀଳା' ଓ 'ଭାରତଲୀଳା' —ଏହିପରି କେତେ ଲୀଳା ଶିଖିଲେ । ସେହି ଲୀଳା ଭିତରେ ନୀଳ ମାଷ୍ଟରାଣୀର ଜୀବନ-ଲୀଳା ଆରମ୍ଭ ହେଲା । 'ଭାରତଲୀଳା'ରେ ଯେ ଅର୍ଜୁନ ହେଲା, ସେ ହେଉଛି ଦୁଇଟି ଗାଁର ସେବାବ୍ରତ ମଦନ ସେଠୀ, ଯାହାର କି ଭୃଗୁପୁର ଗାଁରେ ଘର । ମଦନ 'ଲାଖବିନ୍ଧା ଲୀଳା'ରେ ଅର୍ଜୁନ ହୋଇ ଯେତେବେଳେ ଦ୍ରୌପଦୀ ସ୍ୱୟମ୍ବରରେ ମାଛଆଖିକୁ ଶର

ବାନ୍ଧିଲା, ସେହି ଶର ଯାଇ ହୃଦୟତଳେ ତଳେ ତଳେ ଅତି ଗୋପନରେ ନାଲ ମାଷ୍ଟରାଣୀ ଆଖିରେ ବାଜିଲା । ମାନସ-ଚକ୍ଷୁରେ ଏ ଦୃଶ୍ୟ ଦେଖି ସେହି ଯୁବତୀ ସେଦିନ ମୁହଁ ପୋତି ବଡ଼ ଛଟପଟ ହେଲା । ଦେଖିଲା ମଦନା ସେଠାରୁ ଶର ନାଲ ମାଷ୍ଟରାଣୀକୁ ଅନ୍ଧ କରି ଦେଲା । ନାଲ ମାଷ୍ଟରାଣୀ ଆଖି ଆଉ ଅନ୍ଧ ହୋଇ ଦ୍ରୌପଦୀବେଶରେ ତା ସଙ୍ଗେ ସଙ୍ଗେ ଚାଲିଗଲା । ତା'ର ଶିକ୍ଷକତା ଗଲା, ତାର ଭ୍ରାତୃସ୍ନେହ ଗଲା, ତାର ସମାଜବନ୍ଧନ ଗଲା । ସେ ଲୋକାପବାଦକୁ ଡରିଲା ନାହିଁ । ସମାଜର ବନ୍ଧନକୁ ମାନିଲା ନାହିଁ, ଗାଁବାଲାଙ୍କ କଥା ଶୁଣିଲା ନାହିଁ । ନିଜର ପିତୃ-ପିତାମହଙ୍କ କୀର୍ତ୍ତିର ଛୁଡ଼ି ସମାଜର ସକଳ ମମତା ହରାଇ ଚାଲିଗଲା ମଦନା ସାଙ୍ଗରେ ।

ଓହୋ, କି ଦାରୁଣ ଦୃଶ୍ୟ । ମାସ ଦୁଇଟା ନାଲ ମାଷ୍ଟରାଣୀ ମଦନା ଘରେ ବୋହୂ ହୋଇ ରହିଲା । ତା ପରେ ଆସିଲା ଭୀଷଣ ପରିସ୍ଥିତି । ନାଟ ଆଖଡ଼ା ଭାଙ୍ଗିଗଲା । ଅର୍ଜୁନଙ୍କ ଲାଖବନ୍ଧା ସରିଗଲା । ନାଲ ମାଷ୍ଟରାଣୀର ଦ୍ରୌପଦୀବେଶ ଲୁଚିଗଲା । ମଦନା ଖାଇଲା ମଦ । ନାଲ ମାଷ୍ଟରାଣୀ ମନା କଲା । ତା ପରେ ଝଗଡ଼ା, ତା ପରେ ଅଭାବ, ତା ପରେ ଲୁଗାବୁଜୁଳା କାନ୍ଧରେ ପକାଇ ନାଲ ମାଷ୍ଟରାଣୀ ଚାଲିଲା ଧୋବଣୀବେଶରେ ପୋଖରୀ ତୁଠକୁ । ଲଜ୍ଜା ଅପମାନ ତା ମୁଣ୍ଡ ଉପରେ ଏତେ ଭାର ଦେଲେ ଯେ, ପିଠିରେ ମଇଲା ଲୁଗାର ଭାର ନ ଥାଇ ମଧ୍ୟ ସେ ସବୁବେଳେ ମୁଣ୍ଡ ପୋତି ରହିଲା । ଯୁବତୀ ଏତିକବେଳେ ମଇଲା ଲୁଗା ଭିତରୁ ମୁହଁ ଟେକି କାତର ଭାବରେ କାହାର ଆଶ୍ରୟ ନେବ ବିଚାରି ଉଠିବସି ଦେଖେ ତ ସେ ହେଉଛି ସେହି ଅତୀତର 'ନାଲ ମାଷ୍ଟରାଣୀ' । ସେ ହେଉଛି ଆଉ ଗାଁର ମାତୃସ୍ଥାନ ଦୁଇଟି ଶିଶୁ ଭିତରୁ ଗୋଟିଏ, ଯେ କି ଖୁବ୍ ଦୂରକୁ ଚାଲିଯାଇଛି ।

ସେହି ପୂର୍ବର ନାଲ ମାଷ୍ଟରାଣୀ ଓ ଏବର ନାଲ ଧୋବଣୀ ମଇଲା ଲୁଗା ଭିତରେ ପଡ଼ିରହି କଣ ଭାବୁ ଭାବୁ ବେଳ ବୁଡ଼ି ରାତି ହେଲା । ରାତି ଦୁଇ ପହରକୁ ଗଡ଼ିଲା ପରେ ପଡ଼ିଶାଘରେ ପାଟିତୁଣ୍ଡ ଶୁଭିଲା । ନାଲ ଧୋବଣୀ ପାଗଳୀ ପରି ଦୁଆର ଫିଟାଇ ପଡ଼ିଶାଘରେ ପଶି କହିପକାଇଲା—'ଯାହା ଆଣିଚ ଦିଅ ମତେ ରଖିବାକୁ । ମୋ ଭାଇର ପରା ଭୋଜଘର ? ମୁଁ ସେଠି ଥିଲେ ପରା ତୁମକୁ ଦେଇଆନ୍ତି ଭୋଜି, ତୁମକୁ ଦେଇଆନ୍ତି ଅଇଁଠା ଭାତ ତରକାରି । ମୋତେ ତୁମେ ଦେବନାହିଁ ?' ପଡ଼ିଶା ଘରର ବୋହୂଏ ମୁଣ୍ଡ ପୋତି ରହି ଭାବିଲେ—ନାଲ ମାଷ୍ଟରାଣୀ ଆହୁରି ଧୋବଣୀ ହୋଇନାହିଁ ?

ସେ ଚାଲିଗଲା । ଭାଇର ଭୋଜିଘର କଥା ଭାବି ଭାବି ନାଲ ମାଷ୍ଟରାଣୀ ତା ଆଉ ଘର ତୁଠକୁ ଗଲାନାହିଁ । ଭାଉଜର ବଉଳପାଟ ପଡ଼ିଶା ଘରର ବୋହୂ କାଚି କରି

ଦେବାକୁ ଆଣିଥିଲା । ନୀଳ ମାଷ୍ଟ୍ରାଣୀ କାକୁତି ମିନତି ହୋଇ କହିଲା—'ମୁଁ କାଚି ଦେବି ଲୋ, ମୁଁ କାଚି ଦେବି । ମୋ ଭାଉଜର ବଉଲପାଟ ମୋତେ ଦିଅ, ମୁଁ ଧୋଇ ଆଣିବି ।' ସେୟା ହେଲା । ନୀଳ ମାଷ୍ଟ୍ରାଣୀ ବଉଲପାଟକୁ ଧୋଇ ଆଣି ଆଉ ପଢ଼ଣା ଘରକୁ ଫେରାଇଲା ନାହିଁ । ତାଗିଦା ଆସିଲା ଆର ଗାଁରୁ । ବଉଲପାଟ ଫେରାଇଲେ ତେଣେ ସେ ଘରେ ଶୁଭକାର୍ଯ୍ୟ ବଢ଼ିବ; କିନ୍ତୁ ଫେରାଇବ କିଏ ? ତାହା ଯେ ନୀଳ ମାଷ୍ଟ୍ରାଣୀ ହାତରେ । ଶୁଣାଗଲା, ନୀଳ ମାଷ୍ଟ୍ରାଣୀ କହୁଛି— ଭାଇ ନ ଆସିଲେ ଫେରାଇବ ନାହିଁ ।

ଭାଇ ଆସିବ ? ଭାଇ ଆସିବ ଧୋବାଘରକୁ ନାନୀ ବୋଲି ସମ୍ବୋଧନ କରିବାକୁ ? କଥାଟା ଅସମ୍ଭବ ହୋଇ ଉଠିଲା । ତିନିଖଣ୍ଡ ଗାଁରେ—ଯେଉଁ ଗାଁରେ ନୀଳ ମାଷ୍ଟ୍ରାଣୀ ଜନ୍ମ ହୋଇଥିଲା, ଯେଉଁ ଗାଁରେ ସେ ମାଷ୍ଟ୍ରାଣୀ ହୋଇଥିଲା ଓ ଶେଷରେ ଆଉ ଯେଉଁ ଗାଁରେ ଧୋବଣୀ ହୋଇ ସେ ଦୁଇ ଗାଁର ମଇଳା ଲୁଗା ସଫା କଲା, ସବୁଆଡ଼େ ଚହଳ ପଡ଼ିଗଲା । ତେଣେ ଭାଇ ଘରେ ବସି ଭାବିଲା— ଯେ ଥିଲା ନାନୀ ତା ପାଖକୁ ଯିବ କି ନାହିଁ । ରାତି ହେଲା ପହରେ । ଯିବ କି ନାହିଁ, ଯିବ କି ନାହିଁ, ଭାବି ଭାବି ଭାଇ କେତେବେଳେ ଯେ ଆସି ଭଉଣୀ ପାଖେ ପହଞ୍ଚିଯାଇଛି ସେ ସମୟଜ୍ଞାନ ତାର ନାହିଁ । ଡାକିଲା—ନାନୀ ! ସେତିକିବେଳେ ତଉଡ଼ା ହୋଇଥିବା ବଉଲପାଟ ଖଣ୍ଡି ହାତରେ ଧରି ଆଲୁଳାୟିତକେଶା, ବିବ୍ରତବଦନା, ଅଶ୍ରୁମୁଖୀ 'ନୀଳ ମାଷ୍ଟ୍ରାଣୀ' ଭାଇକୁ ଅନ୍ଧାରରେ ଜାକିପକାଇ କହିଲା—'ମୁଁ ଚାଲିଆସିଲି ବୋଲି ତୁ ଚାଲିଆସିଲୁ ? ଲୋକେ ବୋଲିବେ କ'ଣ ? ତୁ ମଧ୍ୟ କୁଳରେ କଳଙ୍କ ଲଗାଇବୁ ? ଫେରି ଯାଆ, ଫେରି ଯାଆ !'

ଭାଇ ଫେରିଯାଇ ଆନନ୍ଦ-ମୁଖରିତ ତାର ସେହି କୁଡ଼ିଆ ଭିତରେ ଆଲୁଅରେ ଦେଖିଲା—କାହାର ଲୁହ ତା ହାତରେ ଲାଗିଛି, କାହା ସ୍ନେହର ସ୍ପର୍ଶ ତାକୁ ବିଚଳିତ କରିପକାଇଛି, କାହାର ଅନୁତାପ ବାଣୀ ତା ପ୍ରାଣକୁ ମନ୍ଥି ପକାଉଛି ।

ବଉଲପାଟ ଭାଇ ହାତରେ ଦେଖି ସମସ୍ତେ ହେଲେ ଅବାକ୍ ।

# ମାଂସର ବିଳାପ

## କାଳନ୍ଦୀଚରଣ ପାଣିଗ୍ରାହୀ

ଜିଲ୍ ଏବଂ ଟୋଗ୍ ଆବାଲ୍ୟ ପରମସାଥୀ । କ୍ଷଣେ ଏକ ଅପରକୁ ଛାଡ଼ି ରହିବାକୁ ସହଜରେ ରାଜି ହୁଅନ୍ତି ନାହିଁ । ଜିଲ୍ ଥରେ ଅସୁସ୍ଥ ହେଲା; ଟୋଗ୍ ତାକୁ ଅହର୍ନିଶ ଜଗି ବସିଥାଏ, ସକଳ ତାଡ଼ନା ତାହା ନିକଟରେ ବ୍ୟର୍ଥ । ଅବଶେଷରେ ସେହିଠାରେ ତାର ପାନାହାର ଯୋଗାଇବା ଲାଗି ହୁକୁମ ହେଲା । ଟୋଗ୍‌ର ପାଦ ଥରେ ଜଖମ ହେଲା । ଜିଲ୍ ଭଲ କରି ଜାଣେ; ଟୋଗ୍‌ର ବଳ ଅପରିସୀମ; କିନ୍ତୁ ବୁଝିପାରିଲା ନାହିଁ କାହିଁକି ତାକୁ ଏତେଦିନ ଏକ ସ୍ଥାନରେ ବନ୍ଦୀ ହୋଇ ରହିବାକୁ ହୋଇଛି । ତାର ପାଦ ମୁଖରେ ସ୍ପର୍ଶ କରି ତାର ବ୍ୟଥା କେଉଁଠାରେ ଜାଣିବା ପାଇଁ ସଚେଷ୍ଟ ହେଲା ।

ଟୋଗ୍ ଗୋଟିଏ ଇଂଲଣ୍ଡ୍‌ର ହାଉଣ୍ଡ୍ ଏବଂ ଜିଲ୍ ଗୋଟିଏ ଗଡ଼ଜାତ ଜଙ୍ଗଲର କୃଷ୍ଣସାର । ଟୋଗ୍ ଆସିଚି ବିଖ୍ୟାତ ଲଣ୍ଡନ ନଗରୀରୁ, ଜିଲର ଜନ୍ମସ୍ଥାନ ଓଡ଼ିଶାର ନିଭୃତ ଅରଣ୍ୟାଣୀ; ଟୋଗ୍ ସମ୍ପୂର୍ଣ୍ଣ ମାଂସାଶୀ, ଜିଲ୍ ନିରାଟ ଶାକାହାରୀ; କିନ୍ତୁ ଅତି ଶ୍ରେଷ୍ଠ ବନ୍ଧୁ ଦୁହିଁଙ୍କ ମଧ୍ୟରେ ସଦ୍ଭାବ ଜନ୍ମି ଯାଇଥିଲା ।

ଟୋଗ୍‌ର ଅସୁସ୍ଥତା ନିବାରଣ ପାଇଁ ଜିଲ୍ ତାହାର ସର୍ବାଙ୍ଗ ଲେହନ କରି ଶୁଶ୍ରୂଷାରେ ଲାଗିଲା । ଅବଶେଷରେ ଟୋଗ୍ ଟିକିଏ ସୁସ୍ଥ ହୋଇ ପ୍ରଥମେ ଆସ୍ତେ ଆସ୍ତେ ଚାଲିବାକୁ ଆରମ୍ଭ କଲା । ତା ପରେ ଯେତେବେଳେ ବସନ୍ତ ପୁଣି ଲେଉଟିଲା; ଫୁଲର ଗନ୍ଧ ଛୁଟିଲା, ଦୁଇ ବନ୍ଧୁ ଦକ୍ଷିଣା ମୁଖରେ ଇତସ୍ତତଃ ଧାଇଁ କ୍ରୀଡ଼ା-କୌତୁକରେ ମଗ୍ନ ହେଲେ—ଯେପରି କି ଏହି ଆନନ୍ଦର ସ୍ରୋତ ଯେଉଁ ଦିଗରୁ ଭାସିଆସୁଛି, ସେହି ରହସ୍ୟମୟ ଦେଶଟାକୁ ଦୁହେଁ ମିଳି ଏକ ମୁହୂର୍ତ୍ତରେ ଆବିଷ୍କାର କରିନେବେ । ଦୁହିଁଙ୍କ ଦୌଡ଼ିବାର ଭଙ୍ଗୀରେ ବିଶେଷ ପାର୍ଥକ୍ୟ ଓ ସୌନ୍ଦର୍ଯ୍ୟକଳା ନିହିତ ଅଛି । ଟୋଗ୍ ଯେତେବେଳେ ଦୌଡ଼େ, ସେତେବେଳେ ଗୋଟିଏ ଲମ୍ବମାନ କ୍ଷୀଣସୂତ୍ର ଭୂମିରେ ମିଶିଗଲା ପରି ମନେହୁଏ । ଯେତେବେଳେ ତାର ଚକ୍ଷୁ, କର୍ଣ୍ଣ, ପାଦ,

ମୁଖ ଇତ୍ୟାଦି ଚିହ୍ନିବାର ଉପାୟ ନାହିଁ ; କିନ୍ତୁ ଜିଲର ଦୌଡ଼ିରେ ଭଙ୍ଗିମା ଭିନ୍ନ ଧରଣର । ସେ ଯେପରି ପ୍ୟାରିସ ଡାନ୍ସ୍ । ଗୋଡ଼ ଯେପରି ତାର ତଳେ ଲାଗୁନାହିଁ—କେବଳ ଶୂନ୍ୟେ ଶୂନ୍ୟେ ନାଚି ନାଚି ଯାଉଛି ।

ଦିଓଟି ପଶୁ ଜମିଦାର ବାବୁଙ୍କର ବଡ଼ ପ୍ରିୟ ବସ୍ତୁ ଥିଲେ । ଡୋଗ୍ର ତ ବଳିଷ୍ଠ ରତ୍ନ ପ୍ରାୟ ବୋଲି ତାର ଇଂରାଜୀ ନାମ ରଖାଯାଇଥିଲା, ଜିଲକୁ ତାର ଅତ୍ୟନ୍ତ ପ୍ରିୟ ଦେଖି ତାକୁ ମଧ୍ୟ ସେହି ଭାଷାରେ ଅନ୍ୟ ଗୋଟିଏ ନାମରେ ଅଭିହିତ କରାଯାଇଥିଲା । କର୍ମକ୍ଳାନ୍ତ ଦିବସ ପରେ ଜମିଦାର ବାବୁ ଯେତେବେଳେ କଚେରି ସମ୍ମୁଖସ୍ଥ ପ୍ରକାଣ୍ଡ ପଡ଼ିଆରେ ସାୟଂଭ୍ରମଣ ଉଦ୍ଦେଶ୍ୟରେ ବାହାରନ୍ତି, ସେତେବେଳେ ଏ ଦିଓଟି ପଶୁ ତାଙ୍କର ସହଚର ହୋଇ ଚାଲିବାରେ ଏବଂ ତାଙ୍କ ସମ୍ମୁଖରେ କ୍ରୀଡ଼ା-କୌତୁକ କରିବାରେ ତାଙ୍କ ଶ୍ରାନ୍ତ ଅନ୍ତରରେ ଯେ ଆନନ୍ଦ ସଞ୍ଚାର କରନ୍ତି, ତାହାର ମୂଲ୍ୟ ସାମାନ୍ୟ ନୁହେଁ । ତାହା ନ ହେଲେ ଶିକାରସ୍ଥଳରେ ଡୋଗ୍ରର କିଛି ଆବଶ୍ୟକତା ଅଛି; ଜିଲ ତ ସମ୍ପୂର୍ଣ୍ଣ ଅନାବଶ୍ୟକ; ତଥାପି ଜମିଦାର ବାବୁଙ୍କର କର୍ମପ୍ରବାହ ମଧ୍ୟରେ ଜିଲର ଟିକିଏ ସ୍ଥାନ ଅଛି । ସେହି ଆନନ୍ଦଟିକର କାରଣ ସେ ।

ଜମିଦାର ବାବୁ ରାସ୍ତାରେ ଯେତେବେଳେ ବାହାରନ୍ତି, ଜିଲ ତାଙ୍କ ହାତ ଚାଟି ଚାଟି ଗୋଡ଼ରେ ଘଷି ହୋଇ ଚାଲେ । ଡୋଗ୍ର କେତେବେଳେ ପଛରେ ରହିଗଲେ ଛୁଟି ଆସି ତାଙ୍କ ସମ୍ମୁଖରେ ନମସ୍କାର ଛଳରେ କରଯୋଡ଼ି ହୋଇ ବସିପଡ଼ି ଲାଙ୍ଗୁଳ ହଲାଏ । କେତେବେଳେ ତାଙ୍କ ଦୁଇ ପାଦ ମଧ୍ୟରେ ପ୍ରବେଶ କରି ଗତି ଶିଥିଳ କରିଦିଏ । ଅନ୍ୟ କୌଣସି କୁକୁର ଯେବେ ଆସି ଜିଲ ଉପରେ ଲୋଲୁପ ଦୃଷ୍ଟି ପକାଏ, ଜିଲ ସନ୍ତ୍ରସ୍ତ କାତର ହୋଇ ବାବୁଙ୍କ ଦୁଇପାଦ ମଧ୍ୟରେ ଠେଲି ଠେଲି ପ୍ରବେଶ କରେ । ଡୋଗ୍ର ଜାଣିପାରି ସଙ୍ଗେ ସଙ୍ଗେ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଦେଖାଦେବା ମାତ୍ରକେ ତାର ସ୍ୱଜାତିମାନେ ପୃଷ୍ଠପ୍ରଦର୍ଶନ କରି ବିନୀତ ଭାବରେ ଅପସାରିତ ହୁଅନ୍ତି । କାରଣ ଡୋଗ୍ରର ବଳବୀର୍ଯ୍ୟ ତାର ପଡ଼ୋଶୀମାନଙ୍କ ଅଜ୍ଞାତ ନ ଥିଲା । ଆଉ ମଧ୍ୟ ଡୋଗ୍ରର ପଦମର୍ଯ୍ୟାଦା ଆନ ସାଧାରଣ କୁକୁରଙ୍କଠାରୁ ଯଥେଷ୍ଟ ପରିମାଣରେ ଅଧିକ । କେହି ପୃଷ୍ଠଭଙ୍ଗ ଦେଲେ, ତାର ଅନୁସରଣ କରି ନିଜର ହୀନତା ସେ ପ୍ରଦର୍ଶନ କରୁ ନଥିଲା ।

ଜମିଦାର ବାବୁଙ୍କର ଶିକ୍ଷା ଭଦ୍ରପୁରଠାରେ ହିଁ ସମାପ୍ତ ହୋଇଅଛି । ବେଶ୍ ଆଧୁନିକ ଧରଣର ଲୋକ, ମିଷ୍ଟାଳାପ, ଶିଷ୍ଟାଚାର ଇତ୍ୟାଦି ଗୁଣର ଅଭାବ ନ ଥିଲା । ଦେଶୀ ଲୋକଙ୍କ ପାଖରେ କୁଣ୍ଡା ଚାଦରପକା ଖାଣ୍ଟି ଦେଶୀ ଓ ବିଲାତିଙ୍କ ପାଖରେ ପୂରା ସାହେବ । ଅବସର ସମୟରେ ବଡ଼ ବଡ଼ ସାହେବ ସୁବା ଶିକାର ଉଦ୍ଦେଶ୍ୟରେ ଜମିଦାର-ଭବନରେ ଆତିଥ୍ୟ ଗ୍ରହଣ କରିଥାନ୍ତି । ସେମାନଙ୍କ ଉଦ୍ଦେଶ୍ୟରେ ମଧ୍ୟ ବେଶ୍

ଆୟୋଜନରେ ଅତିଥିଶାଳା ନିର୍ମାଣ କରାଯାଇଅଛି । କେବଳ ଜଲି ଓ ଟୋଗ୍ରି ତାଙ୍କର ପୋଷା ନ ଥିଲେ । ଏ ବାଦ୍ କେତେ ଜାତିର ପକ୍ଷୀ, ମର୍କଟ, ଭଲ୍ଲୁକ, ମତ୍ସ୍ୟ ଇତ୍ୟାଦି କେତେ ଜୀବ ଜମିଦାର ବାବୁଙ୍କ ଅନ୍ନରେ ପ୍ରତିପୋଷିତ ହେଉଥିଲେ । କହିବାକୁ ଗଲେ ଜମିଦାର-ଭବନରେ ଗୋଟିଏ ଛୋଟ ଧରଣ ଚିଡ଼ିଆଖାନା ଥିଲା ।

କିନ୍ତୁ ଟୋଗ୍ରି ଓ ଜଲି ତାଙ୍କର ପାର୍ଶ୍ୱଚର । ବିଶେଷତଃ ତାଙ୍କର ଅତି ସ୍ନେହର ଏକମାତ୍ର କନ୍ୟାଟି ଜଲି ଓ ଟୋଗ୍ରିର ଅନ୍ୟତମ ସଙ୍ଗୀ ଥିଲି । ତାର ଅଧିକାଂଶ ସମୟ ସେ ଏ ଦୁହିଙ୍କୁ ନେଇଥାଏ । ବଗିଚାରେ ଧାଈର ତତ୍ତ୍ୱାବଧାନରେ ସେ ଯେତେବେଳେ କଅଁଳ ଘାସ ଚୁଣୁଥାଏ, ଜଲି ଜାଣିପାରି ତା ମୁହଁ ପାଖରେ ନିଜ ମୁହଁଟି ନେଇ ରଖେ । ଟୋଗ୍ରି ଦୌଡ଼ି ଆସି ତାର ଏହି ଛୋଟ ଖାମିଦାଣୀ ପାଖରେ କେତେ ଖେଳ କୌତୁକର ଅଭିନୟ କରେ । ଖାମିଦାଣୀ, ତୁ ଖାଇବୁ, ତୁ ଖାଇବୁ, କହି ତା ମୁହଁରେ ଘାସ ଗୁଞ୍ଜି ଦିଅନ୍ତି । ସେ ଅମାନ୍ୟ ନ କରି ମୁଖରେ ତାହା ଧରି ସ୍ୱୀୟ ବାଧ୍ୟତା ଜ୍ଞାପନ କରେ । ବାରନ୍ଦା ଇଜି ଚେୟାରରେ ବସି ଏସବୁ ନିରୀକ୍ଷଣ କରି ବାବୁଙ୍କ ଚିତ୍ତ ଉତ୍ଫୁଲ୍ଲ ହୋଇଉଠେ ।

ଜମିଦାରବାବୁ ସାହେବମାନଙ୍କ ସହିତ ଯେତେ ମିଳାମିଶା କରନ୍ତୁ, ଦେଶୀ ଲୋକମାନଙ୍କ ପ୍ରତି ଯେ ତାଙ୍କର ଅବଜ୍ଞା ଅଥବା ଘୃଣା ଥିଲି, ଏହା ବୋଲିଯାଇ ନ ପାରେ । ଦେଶର କୌଣସି ପଦସ୍ଥ ବ୍ୟକ୍ତି ତାଙ୍କର ଦ୍ୱାରସ୍ଥ ହେଲେ, ତାଙ୍କର ସମ୍ମାନ ଅଭ୍ୟର୍ଥନାରେ କୌଣସି ତ୍ରୁଟି ହେଉ ନ ଥିଲି । ପ୍ରଜାମାନଙ୍କ ମଧ୍ୟରେ ମଧ୍ୟ ଶିକ୍ଷିତ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ପ୍ରତି ଯଥାଯୋଗ୍ୟ ସମ୍ମାନ ଦେଖାଯାଉଥିଲି; ତଥାପି ଲୋକମତ ତାଙ୍କ ଗତିବିଧିର ଅନୁକୂଳରେ ନ ଥିଲି । ବୁଢ଼ା ବୁଢ଼ୀ ଲୋକେ ତାଙ୍କୁ ଭ୍ରଷ୍ଟ, ବିଧର୍ମୀ-ଗ୍ରସ୍ତ କହୁଥିଲେ । ଆଉ କେହି କେହି ବହୁବ୍ୟୟୀ, ପ୍ରଜାପୀଡ଼କ କହୁଥିଲେ, ଦେଶ-ଚକ୍ଷୁରେ ତାଙ୍କର ପ୍ରଧାନ ଦୋଷ, ସେ ବିଦେଶୀୟମାନଙ୍କ ସହିତ ମିଶିଲେ ଏବଂ ସେହିମାନଙ୍କ ଆଚାର ଗ୍ରହଣ କଲେ । ଯଥାର୍ଥରେ ତାଙ୍କର ଆହାର ପରିଚ୍ଛଦରେ ବିଜାତୀୟ ଭାବ ଅନେକ ପରିମାଣରେ ଲକ୍ଷିତ ହେଉଥିଲି । ସେ ସବୁରେ ଯେତିକ ସଂଯମ ଆବଶ୍ୟକ, ସେ ତାର ସମ୍ପୂର୍ଣ୍ଣ ଅବହେଳା କରୁଥିଲେ ।

ଏଥର ଶୀତ ଛୁଟିରେ ପୋଲିସ ବିଭାଗର ଡି. ଆଇ. ଜି. ସାହେବ ଶିକାର ଉଦ୍ଦେଶ୍ୟରେ ଜମିଦାର ଭବନରେ ଆତିଥ୍ୟ ଗ୍ରହଣ କରିବେ ବୋଲି ଲେଖି ପଠାଇଛନ୍ତି । ତାଙ୍କ ସହିତ ତାଙ୍କର ସ୍ତ୍ରୀ, ପୁତ୍ର ଓ କନ୍ୟା ଆସିବେ । ଡି. ଆଇ. ଜି. ସାହେବଙ୍କ ସହିତ ଜମିଦାରବାବୁଙ୍କର ବନ୍ଧୁତା ବହୁଦିନର ! ଏଥର ପୁଣି ସଙ୍ଗରେ ସ୍ତ୍ରୀ, କନ୍ୟା ଆସୁଛନ୍ତି । ଦୁଇଦିନ ଆଗରୁ ଅତିଥିଶାଳା ପରିଷ୍କୃତ ହୋଇ ସଜାସଜ

ଲାଗିଛି ଏବଂ ଯେଉଁ ସ୍ଥାନରେ ହରିଣ ଓ ପକ୍ଷୀ ପ୍ରଭୃତି ଶିକାର କରିବାର କଥା ସେ ସ୍ଥଳରେ ତମ୍ବୁ ପ୍ରଭୃତିର ଆୟୋଜନ ଚାଲିଛି । ଆବଶ୍ୟକ ଜିନିଷ କିଣିବାଲାଗି କଟକକୁ ଲୋକ ପଠାଯାଉଅଛି । ଚାକର, ବେଠିଆ ଓ ଅମଲା ପ୍ରଭୃତି ବ୍ୟତିବ୍ୟସ୍ତ ହୋଇ ଲାଗି ପଡ଼ିଛନ୍ତି । ସବୁଥର ପରି ଏଥର କାହାରିକି ମରିବାକୁ ଡର ନାହିଁ । ସବୁଥର ପରି ଏଥର ମଧ୍ୟ ଜମିଦାରବାବୁଙ୍କ ପଶ୍ଚାତ୍ତରେ ଗାଳି ବର୍ଷଣ କରୁଛନ୍ତି ।

ସାହେବଙ୍କ ଆସିବା ସମୟକୁ ତାଙ୍କୁ ବାଟରୁ ସମ୍ବୋଧ ଆଣିବାଲାଗି ଜମିଦାର ବାବୁ ଖଣ୍ଡେ ଦୂର ମଟରରେ ଗଲେ । ନିର୍ଦ୍ଦିଷ୍ଟ ସମୟରେ ସାହେବ ପହଞ୍ଚିଗଲେ । ତାଙ୍କର ସ୍ତ୍ରୀ କନ୍ୟାମାନଙ୍କ ସହିତ ଯୋଗ ଦେଇ ଜମିଦାରବାବୁଙ୍କ ମନପ୍ରାଣ ଆପ୍ଲୁତ ହୋଇ ଉଠିଲା । ଜମିଦାର-ଭବନରେ ମହା ଚାଞ୍ଚଲ୍ୟ, କାହାରି ଦଣ୍ଡେ ସ୍ଥିର ହୋଇ ରହିବାର ସମୟ ନାହିଁ । ସମସ୍ତେ ଦୌଡ଼ାଧପଡ଼ କରୁଛନ୍ତି । ଅତିଥିମାନଙ୍କ ସହିତ ଠିକ୍ କରାଗଲା, ଆଜ ଅତିଥିଶାଳାରେ ରହି ପରଦିନ ପ୍ରାତଃଭୋଜନ ପରେ ଶିକାରସ୍ଥଳୀକୁ ଯାତ୍ରା କରିବାକୁ ହେବ ।

ଶିକାରସ୍ଥଳୀ ଜମିଦାର-ଭବନରୁ ବାର ଚୌଦ ମାଇଲ ରାସ୍ତା, ନିପଟ ଜଙ୍ଗଲ ମଧ୍ୟରେ, ଘର ଗାଁ ପାଖରେ ନାହିଁ । ଚାକର, ଖାନସାମା, ବେଠିଆ ପ୍ରଭୃତି ଆଗରୁ ସବୁ ଜିନିଷପତ୍ର ନେଇ ଚାଲିଲେ । ପଛରେ ସାହେବ ପରିବାର, ଜମିଦାର-ବାବୁ, ସାହେବଙ୍କର ଦୁଇଟା ଶିକାରୀ କୁକୁର ଏବଂ ଜମିଦାରବାବୁଙ୍କର ଡୋରା ଓ ଜଲି ମଟର ଆରୋହଣ କରି ଚାଲିଲେ । ଜଲିର ଯିବା ଅନାବଶ୍ୟକ ହେଲେ ହେଁ ଡୋରା ତାକୁ ଛାଡ଼ି କୌଣସି ସ୍ଥାନରେ ରହିବ ନାହିଁ । ଯେଉଁ ଦେଶକୁ ନିଆଯାଉ, ସୁଯୋଗ ପାଇଲେ ଆସି ତା ନିକଟରେ ହାଜର ହେବ । ସୁତରାଂ, ଜଲିକୁ ମଧ୍ୟ ସଙ୍ଗରେ ନେବାକୁ ହେଲା । ସେଥିପାଇଁ ଅବଶ୍ୟ ଜ୍ୟେଷ୍ଠ ଖାମିନ୍ଦାଣୀଙ୍କର ଅନୁମତି ନିଆଯାଇଅଛି । ତାଙ୍କର ହୁକୁମ ହୋଇଛି, ଦୁଇ ଦିନରୁ ଅଧିକ କାଳ ଡୋରା ଓ ଜଲିକୁ ଯେପରି ଅଟକା ନ ଯାଏ ।

କିନ୍ତୁ 'ମେରି କ୍ରିଷ୍ଟମସ୍'ର ଆନନ୍ଦ ଉତ୍ସାହରେ ଶିକାରସ୍ଥଳୀରେ ରହିବାର ଆଜ ପାଞ୍ଚ ଦିନ ହୋଇଗଲା । ସେହି ଜଙ୍ଗଲ ଜାଗାଟାରେ ସାହେବ ମନୋମତ ସବୁ ଜିନିଷ ଏପରି ଭାବରେ ଯୋଗାଯାଉଛି ଯେ, ତାଙ୍କର ଅସୁବିଧା ହେବା ଦୂରେ ଥାଉ, ସହରର କୋଳାହଳ କ୍ଳାନ୍ତ ଜୀବନରେ ଏହି ନିର୍ଜନ ବନବାସଦ୍ୱାରା ସେମାନଙ୍କର ଖୁବ ଆନନ୍ଦ ଜନ୍ମିଛି । ସୁତରାଂ, ଦୁଇଦିନ ପାଇଁ ଆସି ଆଜ ପାଞ୍ଚଦିନ ହୋଇଗଲା, ସାହେବଙ୍କର ଫେରିବା ପାଇଁ କୌଣସି ଉଦ୍‌ବେଗ ନାହିଁ । ଆଜ କିନ୍ତୁ ସବୁ ଜିନିଷ-ପତ୍ର ନିଃଶେଷ ହୋଇ ଆସିଅଛି । କାଲି ପ୍ରାତଃରୁ ଫେରିବା କଥା ।

ମଧ୍ୟାହ୍ନଭୋଜନ କରି ସାହେବଙ୍କ ସହ ଜମିଦାରବାବୁ ଶିକାର ଉଦ୍ଦେଶ୍ୟରେ ବାହାରିଲେ । ଗତ ଚାରିଦିନ ସାହେବଙ୍କର ସ୍ତ୍ରୀ, କନ୍ୟାମାନେ ଖେଳ କୌତୁକ, ନୃତ୍ୟ ଗୀତ ଆଦିରେ ଉପଭୋଗ କରିଯାଇଛନ୍ତି । ଆଜି ଆଉ ସେମାନେ ଶିକାରର ସହଯାତ୍ରୀ ହୋଇପାରିଲେ ନାହିଁ । ନିରୀହ ଚାକର ବେଠିଆଗୁଡ଼ିକ ଗୋଟିଏ ହରିଡ଼ ପିଲ୍ଲ ନ ମାରି ମଧ୍ୟ କେବଳ ଟିକିଏ ଶିକାରରେ ସାହାଯ୍ୟ କରିବାରେ ଧକେଇ ପଡ଼ିଛନ୍ତି; ତଥାପି ସେମାନଙ୍କ ମଧ୍ୟରୁ ଦୁଇ ତିନି ଜଣଙ୍କୁ ଯିବାକୁ ହେଲା । ପକ୍ଷୀ ମାରିବାରେ ଥରେ ଦୁଇ-ଥର ଲକ୍ଷ୍ୟଭ୍ରଷ୍ଟ ହେବାରୁ ଆଉ ମାରିବା ଅସମ୍ଭବ ହୋଇପଡ଼ିଲା । ପକ୍ଷୀମାନଙ୍କୁ ପୁନଶ୍ଚ ଆସି ବସିବାକୁ ଅବସର ଦେବା ଉଦ୍ଦେଶ୍ୟରେ ଏବଂ ସେ ସମୟଟା ହରିଣ ପ୍ରଭୃତି ଅନୁସନ୍ଧାନ କରିବା ଲାଗି ଶିକାରୀଦ୍ୱୟ ନିକଟବର୍ତ୍ତୀ ଜଙ୍ଗଲ ମଧ୍ୟକୁ ବାହାରିଲେ । ନାନା ଦିଗରେ ଭ୍ରମି କୌଣସିଠାରେ କିଛି ସନ୍ଧାନ କରିପାରିଲେ ନାହିଁ । ଚାକର ତିନିଟା ହରିଣ ଦେଖିବାକୁ ଜଙ୍ଗଲକୁ ପଠାଗଲେ । କେଉଁଠାରେ ବସି ପିକା ଟାଣିଲେ କି ଗୁଣ୍ଡି ପତ୍ର ମକଚ ଖୁସିଗପ କଲେ, ତାହା ଦେଖିବାର ତ ଉପାୟ ନାହିଁ । ଶିକାରୀ ଦୁଇଜଣ ନିଃଶବ୍ଦ ପଦକ୍ଷେପରେ ଏ ଜଙ୍ଗଲ, ସେ ଜଙ୍ଗଲ ଖୋଜିବାକୁ ଲାଗିଲେ । ତମ୍ବୁ ନିକଟରୁ ତିନି ଚାରି ମାଇଲ ଦୂରରେ ଯାଇପଡ଼ିଛନ୍ତି ବୋଲି କାହାରି ଭ୍ରୂକ୍ଷେପ ନାହିଁ ।

ସେତେବେଳକୁ ବେଳ ରତ ରତ ହୋଇ ଆସୁଛି । ନିକଟବର୍ତ୍ତୀ ପାହାଡ଼ ଉହାଡ଼ରେ ସୂର୍ଯ୍ୟ ଲୁଚିଯାଇଛି, କିନ୍ତୁ ତାର ରକ୍ତିମ ଆଭା ପଶ୍ଚିମାକାଶରେ ଖେଳେଇ ପଡ଼ୁଛି । ଶିକାରୀଦ୍ୱୟ ଜୀବ ଦେହର ଲାଲରକ୍ତ ଦେଖିବାର ଅଭିଳାଷୀ, ଏ ଦିଗରେ ନଜର ନାହିଁ । ତେଣେ କିନ୍ତୁ ପୂର୍ବଦିଗ ମେଘାଚ୍ଛନ୍ନ କରି ଅନ୍ଧାର ଘୋଟି ଆସିଲାଣି । ପୃଥିବୀ ଉପରେ ଏମାନଙ୍କର ଦୃଷ୍ଟି, ଆକାଶ ସହିତ ସମ୍ପର୍କ କଣ ? ଚାକର ତିନିଜଣ ଏ ଦୁର୍ଯ୍ୟୋଗ ଦେଖି ହସଖୁସିରୁ ବିରତ ହୋଇ ଶିକାରୀଙ୍କ ଅନ୍ୱେଷଣରେ ବାହାରିଲେ । ଗମ୍ଭୀର ଜଙ୍ଗଲରେ ଦିବସରେ ମଧ୍ୟ ସେମାନଙ୍କୁ ଖୋଜି ପାଇବା ଅସମ୍ଭବ । ଅନ୍ଧାରରେ ଶିକାରୀଦ୍ୱୟ ଏକାବେଳେ ଦୁଷ୍ପ୍ରାପ୍ୟ ହୋଇ ଉଠିଲେ ।

ଝଞ୍ଜା ବୃଷ୍ଟିର ଶୀତ ପବନ ଯେତେବେଳେ ଦେହରେ ଲାଗିଲା, ଶିକାରୀଦ୍ୱୟ ଫେରି ଚାହିଁଲେ ଅକସ୍ମାତ୍ ବୃଷ୍ଟିର ଆୟୋଜନ । ତମ୍ବୁ ନିକଟରୁ ତିନି ଚାରିମାଇଲ ଦୂରବର୍ତ୍ତୀ ହୋଇପଡ଼ିଛନ୍ତି । ସୁତରାଂ, ବର୍ଷା ପୂର୍ବରୁ ତମ୍ବୁ ଧରିବା ଅସମ୍ଭବ । ଅଗତ୍ୟା ବନ୍ଧୁକ-ସ୍କନ୍ଧ ହୋଇ ଦୁଇ ବନ୍ଧୁ ମିଲିଟାରୀ ଡବଲ ମାର୍ଚ୍ଚ ଆରମ୍ଭ କରିଦେଲେ । ଗୁଳି ସମ୍ମୁଖରେ ମୃଗର ତ୍ରସ୍ତକାତର ପଳାୟନ ଏବଂ ଶିକାରୀର ଆହ୍ଲାଦଧ୍ୱନି ଓ ଅନୁଧାବନ ଏ ସମୟରେ ସେମାନଙ୍କର ଅନୁଭୂତ ହେଲାନାହିଁ; କିନ୍ତୁ ଠିକ୍ ସେହିପରି

ହୁ ହୁ ଆନନ୍ଦଧ୍ୱନି କରି ମେଘ ସେମାନଙ୍କୁ ଆକ୍ରମଣ କଲା । କୌଣସି ଉପାୟରେ କଟକରେ ଆଶ୍ରୟ ନାହିଁ । ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ, ଘୂର୍ଣ୍ଣିବାୟୁ ସନ୍ନିକଟ ଅରଣ୍ୟାନୀ ମଧ୍ୟରେ ମହାକ୍ରନ୍ଦନରୋଳ ଲଗାଇ ଦେଲା । ଅତି କଷ୍ଟରେ ସନ୍ତର୍ପଣରେ ତୃଣଜଣ ବାଟ ଖୋଜି ଚାଲିଲେ । ପରିଚ୍ଛଦ ସବୁ ଓଦା ହୋଇ ବୃକ୍ଷମଣ୍ଡଳ ସାର ହୋଇଗଲା । ଦୀର୍ଘ-ନିଶ୍ୱାସ ଛାଡ଼ି ତମ୍ବୁରେ ପହଞ୍ଚିଲାବେଳକୁ ରାତି ଆଠଟା ।

ନୈଶ-ଭୋଜନର କୌଣସି ବନ୍ଦୋବସ୍ତ ନାହିଁ, ତାହାହିଁ ବର୍ତ୍ତମାନ ବିଶେଷ ଭାବନାର ବିଷୟ ହୋଇପଡ଼ିଲା । ଶିକାର ତ କିଛି ହେଲାନାହିଁ । ଆହୁରି ମଧ୍ୟ ପରଦିନ ପ୍ରାତଃରୁ ଏ ସ୍ଥାନ ଛାଡ଼ିବାର କଥା ଥିବାରୁ ଏବଂ ଶିକାର ପାଇବା ବିଷୟରେ କୌଣସି ସନ୍ଦେହ ନ ଥିବାରୁ ପୂର୍ବରୁ ନୈଶ-ଭୋଜନ ପାଇଁ କୌଣସି ଆୟୋଜନ କରାଯାଇ ନ ଥିଲା । ବର୍ତ୍ତମାନ ଆଉ ଉପାୟ ନାହିଁ ! ଜମିଦାରଙ୍କ ଘରଠାରୁ ଏଠାକୁ ବାର ଚୌଦ ମାଇଲ ଦୂର । ଏ ବର୍ଷାରେ ପୁଣି ସେ ସ୍ଥାନକୁ ଯାଇ ରାତି ଭିତରେ ଖାଦ୍ୟ ଦ୍ରବ୍ୟ ଆଣିବା କି ସମ୍ଭବ ! ମଟରରାସ୍ତା ତ ବର୍ଷାଜଳରେ ଅଗମ୍ୟ ହୋଇ ପଡ଼ିଥିବ । ନିକଟବର୍ତ୍ତୀ ସେପରି କୌଣସି ଜନ ସ୍ଥାନ ନାହିଁ, ଯେଉଁଠାରେ ସାହେବ ଓ ଜମିଦାରବାବୁଙ୍କ ଆହାରୋପଯୋଗୀ କିଛି ହେଲେ ମିଳିବ, ମାଂସ ନ ହେଲେ ଯେ ଅନାହାର । ଆଜି ପୁଣି ଏତେ ବିପଦ ସହ୍ୟ କରାଯାଇଛି । ସମସ୍ତଙ୍କର ଭାବନା ପଡ଼ିଗଲା । ଜମିଦାର-ବାବୁଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କଲେ ହେଁ ସାହେବଙ୍କର ମଧ୍ୟ ଭାବନା ପଡ଼ିଲା ! କାରଣ ଶିକାର କରିବାକୁ ଯିବାବେଳେ ଜମିଦାରବାବୁ ଲୋକ ପଠାଇ ମାଂସର ଆୟୋଜନ କରିବାକୁ ଯାଉଥିଲେ । ସାହେବ କିନ୍ତୁ ଶିକାର ନିଶ୍ଚୟ ମିଳିବ କହି ତାଙ୍କୁ ସେ ସବୁ ଆୟୋଜନରୁ ନିବୃତ୍ତ କରାଇଥିଲେ । କରାଯାଏ କଣ ? ଜମିଦାରବାବୁ ଅଯଥା ବେଠିଆ ଚାକରଗୁଡ଼ାଙ୍କ ଉପରେ କ୍ରୁଦ୍ଧ ହେଲେ ।

ଏସବୁ ଦେଖି ସାହେବ ଟିକିଏ ମୁରୁକିହସା ଦେଇ କହିଲେ,

'Well, let me devise some means of the dinner'

( ଅଚ୍ଛା, ରାତ୍ରି-ଭୋଜନର ଗୋଟାଏ ବ୍ୟବସ୍ଥା କରାଯାଉ । )

ଜମିଦାରବାବୁ ସେହି ହାସ୍ୟର ଉତ୍ତର ହାସ୍ୟରେ ପ୍ରଦାନ କରି କହିଲେ, 'Well' ?

ସାହେବ କହିଲେ, "Won't you mind spare your heart ? It will make a sumptuous feast and you can have a lot of them from the Jungles. Don't you like the idea ?" (ଆପଣଙ୍କର ହରିଣଟିକୁ ଦେବାକୁ କିଛି ଆପତ୍ତି ଅଛି କି ? ଏହା ବେଶ୍ ସୁନ୍ଦର ଆହାର ହେବ ଏବଂ ଜଙ୍ଗଲରୁ ଆପଣ ସେଥିରୁ ଅନେକ ପାଇପାରିବେ । କିପରି ? କଥାଟା ଭଲ

ଲାଗୁ ନାହିଁ ? )

ଜମିଦାରବାବୁ କଣ ଭାବୁଥିଲେ । ସାହେବଙ୍କ ବାକ୍ୟ ଶେଷ ହେବାର ଦେଖି ହଠାତ୍ ଚମକି ପଡ଼ି ଉତ୍ତର କଲେ, "Oh yes, it's a fine idea". ( ଠିକ୍ କହୁଛନ୍ତି) । ଜମିଦାରବାବୁ ସମ୍ଭ୍ରାନ୍ତ ବନ୍ଧୁ ଓ ଅତିଥିଙ୍କ କଥାରେ ଅମତ ହୋଇ-ପାରିଲେ ନାହିଁ; କିନ୍ତୁ ଜଲି କଥା ଶୁଣି ତାଙ୍କ ହୃଦୟଟା କାହିଁକି ଧପ୍‌କିନା ପଡ଼ିଗଲା । ଜଲି ପ୍ରତି ତାଙ୍କର ଟିକିଏ ବିଶେଷ ମମତା ଜନ୍ମିବାର କାରଣ ଅଛି । ଦିନେ ଅନ୍ୟ ଏକ ବିଦେଶୀୟ ବନ୍ଧୁଙ୍କ ସମକ୍ଷରେ ନିଜ ଶିକାର କୌଶଳର ତାରିଫ୍ ଦେଖାଇବାକୁ ଯାଇ ସେ ଜଲିକୁ ପାଇଥିଲେ । ସେତେବେଳେ ତାର ମା' ତାକୁ ସ୍ତନ୍ୟ ପାନ କରାଉଥିଲା । ଜମିଦାରବାବୁଙ୍କ ଗୁଳି ବସି ମାଆଟି ଢଳି ପଡ଼ିଲା; କିନ୍ତୁ ନିର୍ବୋଧ ଶିଶୁ ନିର୍ଭୟରେ ଠିଆ ହୋଇ ରହିଲା । ଜମିଦାରବାବୁଙ୍କ ଲୋକ ଯେତେବେଳେ ତାକୁ ଧରିବାକୁ ଗଲେ; ମା' ନିକଟରେ ଅଛି ବୋଲି ସେ ନିଃଶଙ୍କ ଭାବରେ ଦଣ୍ଡାୟମାନ ରହିଲା । ବିଦେଶୀୟ ବନ୍ଧୁଙ୍କଠାରୁ ଏହି ଶିକାର କୌଶଳରେ ଯଥେଷ୍ଟ ବାହାବା ପାଇଲେ ହେଁ ଏହି କ୍ଷୁଦ୍ର ଶିଶୁର ନିର୍ବୋଧ ଆଖି ଦିଓଟିକି ଚାହିଁ ତାର ମାତୃହନ୍ତା ଜମିଦାରବାବୁଙ୍କର ତା ପ୍ରତି ସେହିଦିନୁ ଗୋଟାଏ ନିପଟ ବାତ୍ସଲ୍ୟ ଓ ଶ୍ରଦ୍ଧା ଜନ୍ମି ଯାଇଥିଲା ।

ଜଲିକୁ ହତ୍ୟାକରି ଦିନେ ତାର ମାଂସ ଭକ୍ଷଣ କରିବାକୁ ହେବ, ଏକଥା ସେ କେବେ କଳ୍ପନା କରି ପାରି ନ ଥିଲେ । ବର୍ତ୍ତମାନ ସେହି ପରାମର୍ଶ ଶୁଣି ଜମିଦାର-ବାବୁଙ୍କ ଶିକାରୀ ଅନ୍ତର ମଧ୍ୟ କପରି ଟିକିଏ ଦବିଗଲା । ତାହା ବୋଲି ଏତେ ବଡ଼ ସମ୍ଭ୍ରାନ୍ତ ଅତିଥିଙ୍କୁ କଣ ନାହିଁ କରି ଦିଆଯାଇପାରେ ? ଜମିଦାର ବାବୁଙ୍କର ସମ୍ମତି ପାଇ ସାହେବ ମହାନନ୍ଦରେ ନିଜେ କାଟିବାକୁ ଉଦ୍ୟତ ହେଲେ । ନିଜ ହାତରେ କିଛି ହେଲେ ଶିକାର ନ କଲେ ସେଦିନ ତାଙ୍କ ମନଟା ଭଲ ରହେନାହିଁ । ଯୁଦ୍ଧରେ ବହୁତ ଲୋକଙ୍କର ପ୍ରାଣ କ୍ଷୟ କରିଥିଲେ ବୋଲି ତାଙ୍କର ବଡ଼ ସୁଖ୍ୟାତି ଅଛି । ଶୁଣାଯାଏ କୌଣସି ଦିନ ଶିକାର ନ ମିଳିଲେ ସେହି ଉଦ୍ଦେଶ୍ୟରେ ପାଳିତ କୁକ୍କୁଟ ପ୍ରଭୃତି ଗୋଟାଏ କିଛି ଜୀବ ବଧ କଲେ ତାଙ୍କ ମସ୍ତିଷ୍କ ଥଣ୍ଡା ରହେ । ଏହି ଅଭ୍ୟାସକୁ ତାରିଫ କରି ତାଙ୍କ ସ୍ତ୍ରୀ କୁଆଡ଼େ ବହୁବାର କହୁଥାନ୍ତି ଯେ ଦିନେ କିଛି ଶିକାର କରିବାକୁ ନ ପାଇ ସାହେବ ନିଜର ବେକ କାଟିବାକୁ ଉଦ୍ୟତ ହେଉଥିଲେ !

ଜଲି ଓ ହୋରି ଏକ ଅପରର କୋଳରେ ମୁହଁ ଗୁଞ୍ଜି ଦେଇ ମହା-ଆରାମରେ ନିଦ୍ରା ଯାଉଛନ୍ତି । ସେ ସମୟରେ ଅପରିଚିତ କୌଣସି ଲୋକ ହୋରି ନିକଟକୁ ଯିବାକୁ ସାହସ କରିବା ବଡ଼ ଦୁରୂହ । ବିଶେଷତଃ ହୋରି ଓ ଜଲି ଏକ ସଙ୍ଗରେ ଥିବାବେଳେ ଜମିଦାରବାବୁଙ୍କ ମାଧିଆ ଚାକର ବ୍ୟତୀତ ଅନ୍ୟ କାହାର

ସେମାନଙ୍କ ପାଖ ପଶିବାକୁ ଉପାୟ ନାହିଁ । ଜମିଦାରବାବୁଙ୍କ ଇଙ୍ଗିତରେ ଜଲ୍ଲକୁ ଆଣିବାଲାଗି ମାଧିଆକୁ ଯିବାକୁ ହେଲା । ତାର ପଦଶବ୍ଦ ଶୁଣି ଡୋଗ୍ରା ଚେଁଇ ଉଠି ଭୁକିଲା । ମାଧିଆ ଚୁପ୍ କହିବାରୁ ସ୍ୱର ବାରପାର ସେ ସ୍ଥିର ହୋଇ ରହିଲା; କିନ୍ତୁ ମାଧିଆ ଯେତେବେଳେ ଜଲ୍ଲକୁ ଉଠାଇ ତାକୁ ସଙ୍ଗରେ ଆଣିବାକୁ ଗଲା, ସେତେବେଳେ ଡୋଗ୍ରା ତା ସହିତ ଆସିବାଲାଗି ଅସ୍ଥିର ହୋଇଉଠିଲା । ଅଗତ୍ୟା ମାଧିଆକୁ ଜଲ୍ଲ ସଙ୍ଗେ ସଙ୍ଗେ ଡୋଗ୍ରାର ଶିକୁଳି ଧରି ଆଣିବାକୁ ହେଲା । ଡୋଗ୍ରାର ବୁଦ୍ଧି ଅସମ୍ଭବ ରୂପେ ପ୍ରଖର ହେଲେ ହେଁ ଏ ସମୟରେ ଜଲ୍ଲକୁ ତା ନିକଟରୁ ଧରି ନେବାର କାରଣ ସେ ପ୍ରଥମେ ବୁଝିପାରିଲା ନାହିଁ । ମାଧିଆ ନିଜେ ଡୋଗ୍ରାକୁ ଧରି ଜଲ୍ଲକୁ ଖାନସମାମାନଙ୍କୁ ଦେଲା । ଡୋଗ୍ରାର ବଡ଼ ସନ୍ଦେହ ହେଲା, ତଥାପି ସେ ଚୁପ ହୋଇଥାଏ । ସାହେବ ସ୍ୱୀୟ ଆତତାୟୀ ପ୍ରକୃତିର ତର୍ପଣ କରିବା ଲାଗି ଉଦ୍ୟତ ହେଲେ । ଛୁରୀର ଫଳକ ଆଲୋକପାତରେ ଚକ୍‌ଚକ୍ ହୋଇଉଠିଲା ।

ଖାନ୍‌ସମା ଦୁଇଜଣ ଜଲ୍ଲର ଗୋଡ଼ ବାନ୍ଧି ତାକୁ ସ୍ଥିର କରି ଠିଆ କରାଇଲେ, ଯେପରି ଛୁରୀ ଚାଲିବା ସମୟରେ ସେ କୌଣସି ରକମ ହଲଚଲ ହୋଇ ସାହେବଙ୍କର ଅସୁବିଧା ନ ଘଟାଏ ! ଜଲ୍ଲର ଭାବନା କଣ ? ସେ ତାର ଜୀବନର ପ୍ରଭୁ ଜମିଦାରବାବୁ ଏବଂ ସକଳ ଦୁଃଖ ବିପଦରେ ଆବାଲ୍ୟ ପରମବନ୍ଧୁ ଡୋଗ୍ରାକୁ ଦେଖି ନିର୍ଭୀକ ଭାବରେ ଠିଆ ହୋଇଥାଏ ଏବଂ ପାଦଦୁଇଟି ବନ୍ଧା ହେବାରୁ ଥରେ ତାର ଦୁଃଖ ସୁଖର ସାଥୀ ଡୋଗ୍ରା ଏବଂ ତାର ଆଶୈଶବ ବିଶ୍ୱାସୀ ପ୍ରଭୁଙ୍କ ପ୍ରତି ଦୃଷ୍ଟି ପକାଉଥାଏ । ଜମିଦାରବାବୁ ବନ୍ଧୁଙ୍କ ପତ୍ନୀ ଓ କନ୍ୟାଙ୍କ ନିକଟରେ ଖୁସି ଗଳ୍ପରେ ନିମଗ୍ନ ଥାନ୍ତି; ତଥାପି ତାଙ୍କ ଭିତରୁ କିଏ କହି ଦେଉଥାଏ, ଜଲ୍ଲ ପ୍ରତି ଟିକିଏ ଦୃଷ୍ଟି ପକାଇବାକୁ । ସେ ଚାହିଁ ନ ଚାହିଁଲା ହୋଇ ହସ ଖୁସିରେ ନିମଗ୍ନ ଥାନ୍ତି । ତାକୁ ଚାହିଁଲେ ସେ ମନୁଷ୍ୟ ଭାଷାରେ ଯେପରି କିଛି ପ୍ରକାଶ କରି ଦେବାକୁ ଯିବ ଏବଂ ସେଥିରେ ସେ ଦୋଷୀ ସାବ୍ୟସ୍ତ ହେବେ; ଆଉ ତାଙ୍କ ସୁନାମରେ ବାଧା ଘଟିବ । ସାହେବଙ୍କ ହାତରେ ଛୁରୀ ଦେଖି ଡୋଗ୍ରାର ସନ୍ଦେହ କ୍ରମେ ଦୃଢ଼ୀଭୂତ ହେବାକୁ ବସିଲାଣି । ସାହେବ ଛୁରୀ ପରିଷ୍କାର କରି ଯେତେବେଳେ ଆସନରୁ ଉଠିଲେ, ଜମିଦାରବାବୁଙ୍କ ଦୃଷ୍ଟି ହଠାତ୍ କାହିଁକି ଜଲ୍ଲ ଉପରେ ପଡ଼ିଲା ଏବଂ ତାଙ୍କର ମନେ-ହେଲା, ଜଲ୍ଲ ଅନେକକ୍ଷଣ ହେଲା ତାଙ୍କୁ ଏହିପରି କାତର ଦୃଷ୍ଟିରେ ଚାହିଁ ଜୀବନ ଭିକ୍ଷା କରୁଛି । ଜମିଦାରବାବୁ କଣ ଗୋଟାଏ ବାହାନାରେ ଆସନ ଛାଡ଼ି ତମ୍ବୁ ମଧ୍ୟକୁ ଚାଲିଗଲେ, ଡୋଗ୍ରା କିନ୍ତୁ ଜଲ୍ଲର ମିନତି ଶୁଣିଲା । ଆବାଲ୍ୟ ଆଶ୍ରୟଦାତା ପ୍ରଭୁଙ୍କ-ଠାରୁ ହତାଶ ଦୃଷ୍ଟି ଫେରାଇ ଜଲ୍ଲ ଯେତେବେଳେ ତାର ପ୍ରିୟ ସହଚର ଡୋଗ୍ରାକୁ

ଗୁହିଁଲା, ତୋର ପ୍ରାଣରେ ତାହା ବାଜିଲା । ସାହେବଙ୍କ ହାତରେ ନୃଶଂସ ଛୁରିକା ଦେଖି ତୋର ଆଉ ବୁଝିବାକୁ ବାକି ରହିଲା ନାହିଁ । ଏହି ସ୍ଥଳରେ ସେ କେତେ ଛେଳି, ହରିଣ କଟାଯାଇଥିବାର ନିଜେ ଦେଖିଛୁ ! ତାର ପ୍ରାଣ-ପ୍ରିୟ ଜଲିର ଦଶା ତାହା ହିଁ ହେବ, ଏଥିରେ ଆଉ ତାର ସନ୍ଦେହ ନାହିଁ ।

ସାହେବ ଯେତେବେଳେ ଛୁରି ଧରି ଓହ୍ଲାଇ ଆସିଲେ, ତତ୍‌କ୍ଷଣାତ୍ ତୋର ଗୋଟାଏ ଝିଙ୍କାରେ ମାଧିଆ ହାତରୁ ମୁକ୍ତ ପାଇ ସଙ୍ଗେ ସଙ୍ଗେ ଜଲିକୁ ଧରିଥିବା ଜଣେ ଖାନ୍‌ସମାକୁ ଆଘାତ କଲା । ସାହେବ, ବୃକର, ଖାନ୍‌ସମା ପ୍ରଭୃତି ଇତସ୍ତତଃ ହୋଇ ଦ୍ରୁତଗତିରେ ତମ୍ବୁ ମଧ୍ୟରେ ପ୍ରବେଶ କଲେ । ଜମିଦାରବାବୁ ତମ୍ବୁ ମଧ୍ୟରେ ଅନ୍ୟମନସ୍କ ଥିଲେ । ସାହେବଙ୍କର ଏ ଦୁର୍ଦ୍ଦଶା ଦେଖି ସଙ୍ଗେ ସଙ୍ଗେ ତାଙ୍କୁ କ୍ଷମା ମାଗିଲେ ଏବଂ ମାଧିଆ ଉପରେ କ୍ରୋଧରେ ଜଳିଉଠିଲେ । ତଥାପି ଅନ୍ତରର କି ଗୋଟାଏ ଅବ୍ୟକ୍ତ ବ୍ୟଥା ତାଙ୍କ କଥାରୁ ସୁସ୍ପଷ୍ଟ ପ୍ରକାଶ ପାଉଥିଲା ।

ମାଧିଆ ଅତି କଷ୍ଟରେ ନିଜେ ତୋର ଦ୍ୱାରା ଆଘାତ-ପ୍ରାପ୍ତ ହୋଇ ଗୋଟାଏ ଗଛରେ ନେଇ ତାକୁ ଉତ୍ତମ ରୂପେ ବାନ୍ଧିଦେଲା । ସାହେବ ହସି ହସି ଛୁରୀ ହାତରେ ପୁନଶ୍ଚ ତମ୍ବୁ ମଧ୍ୟରୁ ବାହାରିଲେ । କୌତୁକ କରିବା ଛଳରେ ଆବଦ୍ଧ ତୋରକୁ ଛୁରୀ ଦେଖାଇ ଜଲି ଅଭିମୁଖରେ ଚାଲିଲେ । ଜମିଦାରବାବୁ ଦେଖିଲେ, ଜଲି ପୂର୍ବପରି ସେହି କାତରଦୃଷ୍ଟିରେ ତାଙ୍କ ପ୍ରତି ଚାହିଁ ସାହାଯ୍ୟ ଭିକ୍ଷା କରୁଛି । ସେ ହଠାତ୍ ଉଠିପଡ଼ି ସାହେବ ବନ୍ଧୁଙ୍କୁ କଣ କହିବାକୁ ଯାଉଥିଲେ, "ଇସ୍, ମୁଁ କଣ ପାଗଳ" କହି ପୁଣି ଆସନ ଗ୍ରହଣ କଲେ । ସେ ସ୍ଥାନରୁ ଉଠ ଦୂରକୁ ଯିବାକୁ ତାଙ୍କର ଇଚ୍ଛା ହେଉଥିଲେ ହେଁ ସାହେବ କିଛି ମନେକରିପାରନ୍ତି, ଏହି ଆଶଙ୍କାରେ ସେ ଚେଷ୍ଟାରୁ କ୍ଷାନ୍ତ ହେଲେ । ସାହେବ ଜଲି ନିକଟକୁ ଆସିବାର ଦେଖି ଜମିଦାରବାବୁ ରୁମାଲ କାଢ଼ି ମୁହଁ ଘୋଡ଼ାଇଲେ । ତୋରର ଭୀତ ବ୍ୟାକୁଳ କ୍ରନ୍ଦନ ତାଙ୍କ କର୍ଣ୍ଣରେ ପ୍ରବେଶ କରୁଥାଏ । ତାହାର ମଧ୍ୟରେ ଶୁଣିପାରିଲେ ଗୋଟିଏ ରୁଦ୍ଧ କଣ୍ଠର ବିଳାପ । ସେ କେବଳ କର୍ଣ୍ଣରେ ନୁହେଁ, ମର୍ମସ୍ଥଳୀରେ ପ୍ରବେଶ କଲା । ସେ ସ୍ୱର ଜଲିର । ରୁମାଲ କାଢ଼ି ଚାହିଁ ଦେଖିଲେ, ଶେଷ ।

ଖାନା ଟେବୁଲରେ ବସି ବସି ଜଲିର ମାଂସ ଭକ୍ଷଣ କଲାବେଳେ ଜମିଦାର ବାବୁଙ୍କ ଅନ୍ତରାତ୍ମା ନାହିଁ ନାହିଁ କରି ଉଠିଲା । ସେ ପ୍ରାଣପଣେ ଚେଷ୍ଟାକରି ବନ୍ଧୁମାନଙ୍କ ସଙ୍ଗରେ ଯୋଗ ଦେଲେ । ବଡ଼ କଷ୍ଟରେ ଯତ୍‌ସାମାନ୍ୟ ଆହାର କଲେ । ଭିତରେ କି ଗୋଟାଏ ଅବ୍ୟକ୍ତ ବ୍ୟଥାରେ ପ୍ରାଣ ଆକୁଳ ହୋଇ ଉଠିଲା । ରକ୍ଷା ଏତିକି, ଅତିଥିମାନଙ୍କ ମଧ୍ୟରୁ କେହି ତାହା ଲକ୍ଷ୍ୟ କରି ପାରି ନ ଥିଲେ । ଶୋଇବାକୁ ଯିବାବେଳେ ମାଧିଆ

ଆସି ଖବର ଦେଲା, କୁକୁରକୁ ମାଂସ ଆଉ ଯେତେ ଖାଦ୍ୟ ଦିଆଗଲା, ଟମ୍ ତାହା ସ୍ପର୍ଶ କରିନାହିଁ ।

ଜମିଦାରବାବୁ ଅନ୍ୟମନସ୍କ ହୋଇ ଶୟନ କକ୍ଷକୁ ଗଲେ । ନିଦ୍ରା ଆସୁ ନ ଥାଏ । ବିଛଣାରେ ପଡ଼ି କେତେ କଅଣ ଭାବୁଥାନ୍ତି । ଏ ଜଙ୍ଗଲ ସେ ଜଙ୍ଗଲ ବୁଲୁଛନ୍ତି, ହଠାତ୍ ମେଘର ଆକ୍ରମଣ ଓ ଚତୁର୍ଦ୍ଦିଗ ଅନ୍ଧକାରାଚ୍ଛନ୍ନ—ପୁଣି ସେହି ମଧ୍ୟାହ୍ନ ସମୟ, ଗୁଳି ଖାଇ ମାଆଟି ତାର ଭୂତଳଶାୟୀ ହେଲା, ଆଉ ନିର୍ବୋଧ ଶିଶୁ ଅବାକ୍ ହୋଇ ଅନାଇ ରହିଲା, ଟିକିଏ ହଲଚଲ ନାହିଁ, ସ୍ୱେଚ୍ଛାରେ ଆତ୍ମସମର୍ପଣ କଲା । ପୁଣି ସେହି ଘନ ଅନ୍ଧକାର—ଦୁଇବନ୍ଧୁ ସ୍କନ୍ଧରେ ସଙ୍ଗୀନ୍ ରଖି ତମ୍ବୁ ଅଭିମୁଖରେ—ହୁଙ୍କା ଧରି ସାହେବଙ୍କର ନୃଶଂସ ହାସ୍ୟ, ଆଉ ସେ ହରିଣ ଶିଶୁଟିର କରୁଣ ଦୃଷ୍ଟିରେ ଜୀବନ-ଭିକ୍ଷା ଏବଂ ମନୁଷ୍ୟ ଭାଷାରେ ବାକ୍ୟ ଉଚ୍ଚାରଣ—"ମୁଁ ପରି ମୋ ମା'କୁ ଛାଡ଼ି ତମକୁ ଆଶ୍ରୟ କରି ଧରିଥିଲି ?" ଜମିଦାରବାବୁ ଚମକି ଉଠି ଭାବିଲେ, ଏ ସ୍ୱପ୍ନ । ପୁଣି ନିଦ ଆସିଲା, ପୁଣି ସେହି କାକୁତିଭରା ଗୁହାରି, ପୁଣି ସେହି ମର୍ମବିଦାରକ ବିଳାପ । ଥରକୁ ଥର ନିଦ ଭାଙ୍ଗିଯାଏ; କିନ୍ତୁ ସେହି ଏକ ସ୍ୱପ୍ନ !

ପ୍ରଭାତରୁ ଉଠି ଫେରିଯିବାର ବନ୍ଦୋବସ୍ତ କରାଗଲା । ମଟରରେ ବନ୍ଧୁ ଓ ବନ୍ଧୁ-ପରିବାରଙ୍କ ସହିତ ଜମିଦାରବାବୁ ଆଗ ଚାଲିଗଲେ । ହସ ଖୁସିରେ ମନଟାକୁ ଭୁଲାଇବାର ଯେତେ ଚେଷ୍ଟା କଲେ ମଧ୍ୟ ଜମିଦାରବାବୁଙ୍କ ଅନ୍ତରରେ ହରିଣଶିଶୁର ସେହି ରୁଦ୍ଧ କ୍ରନ୍ଦନର ବିରାମ ନାହିଁ । ବନ୍ଧୁ-ପରିବାର ସେହି ଦିନ ବିଦାୟ ଘେନି ଚାଲିଗଲେ ।

ମାଧିଆ କୋରାକୁ ଟାଣି ଟାଣି ବହୁ କଷ୍ଟରେ ଧଇଁସଇଁ ହୋଇ ଆସି ପହଞ୍ଚିଲା ଏବଂ ବାବୁଙ୍କୁ କହିଲା, କୋରା ସେ ସ୍ଥାନରୁ ଆସିବାକୁ ଏକାବେଳେ ନାରାଜ । ଜମିଦାରବାବୁ ସେତେବେଳେ ଏକାକୀ ବସି ମନେ ମନେ କଣ ଭାବୁଥିଲେ । ମାଧିଆ ଆଉ କିଛି ନ କହି ଚପ୍ ହୋଇ ଚାଲିଗଲା । ସେତେବେଳକୁ ଜମିଦାର ବାବୁଙ୍କର ପ୍ରବଳ ଆତ୍ମଗ୍ଲାନି ଉପସ୍ଥିତ । ବଡ଼ ସଂଯମରେ ସେ ନିଜକୁ ସ୍ଥିର କରି ରଖିଛନ୍ତି । ନ ହେଲେ ଲୋକମାନେ ତାଙ୍କୁ ପାଗଳ ବୋଲି ଭାବି ପାରନ୍ତେଣି ! ଏହି ଜ୍ଞାନଶୂନ୍ୟ କୁକୁରଟାର ପାଦତଳେ ପଡ଼ି କ୍ଷମାଭିକ୍ଷା କରିବାଲାଗି ତାଙ୍କ ପ୍ରାଣ ଭିତରୁ ଯେପରି କିଏ ବାଧ୍ୟ କରୁଛି । କାରଣ ସେ ନିଜକୁ ତା'ଠାରୁ ବହୁ ନିମ୍ନରେ ଦେଖୁଛନ୍ତି । 'କାହିଁ ମାଂସାଶୀ କୁକୁରଟାଠାରୁ କଣ ମୋ ଅନ୍ତର ଏତେଦୂର ନୃଶଂସ ! ଛିଃ, ଛିଃ, ସଂସାରଟାରେ କଣ କେବଳ ସବଳ ଦୁର୍ବଳକୁ ଅଧୀନ ରଖି ଆତ୍ମସାତ୍ କରି, ଉଦରସାତ୍ କରି ଜୀବନ ଧାରଣ କରିବାକୁ ଜାତ ହୋଇଛି ? ଜଣେ ବଞ୍ଚିବ ବୋଲି ଆଉ ଜଣକର ମୃତ୍ୟୁ ଏକାନ୍ତ ଆବଶ୍ୟକ ! ମନୁଷ୍ୟ ଯେ

ବିଶ୍ୱଗ୍ରାସ କରିବାକୁ ବସିଛି, ଏହାର ଯୁକ୍ତି କଣ ନା, ସେ ସବୁ ଜୀବଠାରୁ ବୁଦ୍ଧିମାନ୍ ଓ ବିବେକବାନ୍ ।' ସତ୍ୟ ସତ୍ୟ, ଜମିଦାରବାବୁଙ୍କର ଭୀଷଣ ବିରାଗ ଓ ବିକାର ଜାତ ହେଲା । ଯେଉଁ ଜିହ୍ୱା ଜଲିର ମାଂସ ସ୍ୱାଦ ପରୀକ୍ଷା କରିଥିଲା, ତାହା ଜାପରି ଅବଶ ହୋଇ ଆସିଲା; ଜଲିର କଲିଜା ଯେଉଁ ଗଳା ମଧ୍ୟରେ ଯାଇଥିଲା, ତାହା ସଙ୍କୁଚିତ ହୋଇ ଜାପରି ରୁଦ୍ଧ ହୋଇ ଆସିଲା । ଜମିଦାରବାବୁ ମନେ କଲେ, ସେ ଗଳା ଯଦି ଚିରଦିନ ପାଇଁ ରୁଦ୍ଧ ହୁଏ ଏବଂ ସେ ଜିହ୍ୱା ଯଦି ଅବଶ ହୋଇ ଛିନ୍ନ ହୋଇପଡ଼େ, ତେବେ ତାଙ୍କର ମର୍ମନ୍ତୁଦ ଯାତନାର ଟିକିଏ ଅବା ଉପଶମ ହୋଇ ପାରନ୍ତା ।

ଏହି ସମୟରେ ପଛରୁ କିଏ ଡାକିଲା, "ଜଲି କାହିଁ ?" ଜମିଦାର ବାବୁ ଫେରିଚାହିଁ ଦେଖିଲେ, ତାଙ୍କର ସେହି ଚାରିବର୍ଷର ଶିଶୁକନ୍ୟାଟି । ସେ ଉତ୍ତର ଦେଇ ନ ପାରି ତତ୍‌କ୍ଷଣାତ୍ ଉଠିଯାଇ କନ୍ୟାକୁ ନିଜର ଉତ୍ତପ୍ତ ବକ୍ଷରେ ଚାପିଧରି କହିଲେ, "ଅଛି ମା ଅଛି ।" ସେ କଥାରେ କର୍ଣ୍ଣପାତ ନ କରି ମୁହଁ ଫୁଲାଇ, ଆଖି ଛଳଛଳ କରି କହିଲା, "ମିଛ କଥା, ମାଧିଆ କହିଲା, ସେ ସାହେବ ତାକୁ ମାରିଛି, ମୁଁ ସେ ସାହେବକୁ ମାରିବି !" କନ୍ୟାର ରାଗ ଓ ଅଭିମାନ ଦେଖି ଜମିଦାର ବାବୁଙ୍କ ଚକ୍ଷୁରୁ ଲୋତକ ବର୍ଷିବାକୁ ଲାଗିଲା । ସେ ତାହା କନ୍ୟା ନିକଟରୁ ଲୁଚାଇବାକୁ ଯାଇ ଧାଈ ହାତରେ କନ୍ୟାକୁ ଦେଇ ଚାଲିଗଲେ ଏବଂ ହୃଦୟର ଆବେଗ ଅସହ୍ୟ ହେବାରୁ ବିଛଣାରେ ପଡ଼ି ଶିଶୁପରି ଭେ ଭେ କାନ୍ଦିବାକୁ ଲାଗିଲେ; କିନ୍ତୁ କନ୍ୟାର ସେହି ପ୍ରଶ୍ନ "ଜଲି କାହିଁ" ତାଙ୍କର ବାରମ୍ବାର ମନେପଡ଼ିଲା । ସେ ନିଜକୁ ସେହି ପ୍ରଶ୍ନ କରି ସ୍ୱୀୟ ଅଙ୍ଗ-ପ୍ରତ୍ୟଙ୍ଗକୁ ଚାହିଁଲେ । ହରିଣଶାବକର ପ୍ରତ୍ୟେକ ଖଣ୍ଡ ଭୁକ୍ତ ମାଂସର କ୍ରନ୍ଦନ ତାଙ୍କର ପ୍ରତ୍ୟେକ ଲୋମକୂପରୁ ଫୁଟି ବାହାରିବାର ସେ ଶୁଣିଲେ । ତାଙ୍କର ପ୍ରତ୍ୟେକ ଶିରାରେ ଏ କ୍ରନ୍ଦନ ବିଜୁଳି ଗତିରେ ଚମକିବାକୁ ଲାଗିଲା । ଜମିଦାର ବାବୁ ରୁଗ୍ଣ ହୋଇ ପଡ଼ିଲେ—ଦୁଇ ସପ୍ତାହ ଜ୍ୱର ଓ ଅନାହାର ! ସମସ୍ତେ ଭାବିଲେ, ଜମିଦାର ବାବୁ ଏ ଘାଟି ପାର ପାଇବେ ନାହିଁ; କିନ୍ତୁ ସେ ସୁସ୍ଥ ହେଲେ, ଅଥଚ ନୂଆ ଲୋକ ହୋଇ । ସାହେବଙ୍କ ଉପଯୋଗୀ ଅତିଥିଶାଳା ଦରିଦ୍ରମାନଙ୍କ ପାଇଁ ପାନ୍ଥ-ନିବାସରେ ପରିଣତ ହେଲା । ଜମିଦାର ଉଆସରେ ଆମିଷ ପ୍ରବେଶ ନିଷିଦ୍ଧ ହେଲା ଏବଂ ଜମିଦାରୀ ମଧ୍ୟରେ କେହି ମୃଗ ଶିକାର କିମ୍ବା ବଧ କରି ପାରିବେ ନାହିଁ ବୋଲି ହୁକୁମ୍ ଜାରି ହୋଇଗଲା ।

ଜୋର୍ କୌଣସିମତେ ଆହାର କଲାନାହିଁ । ଦିନମାନ ନିରାହାରରେ ପଡ଼ିରହିଲା ଏବଂ ଜମିଦାରବାବୁଙ୍କ ପ୍ରଥମ ଅସୁସ୍ଥତା ଦିନ କୌଣସିମତେ ମୁକ୍ତ ପାଇ ଖସି ଚାଲିଗଲା । ମାଧିଆ ଖୋଜି ଖୋଜି ତାକୁ ସେହି ତମ୍ବୁ ପଡ଼ିଥିବା ଜାଗାରେ ଜଲିର ବଧଭୂମିକୁ ଆଘ୍ରାଣ କରୁଥିବାର ଦେଖିଲା । ଏହିଠାରେ ସେ ତାର ପ୍ରିୟ ସଖାକୁ ହରାଇଛି—

କୌଣସିମତେ ଯେବେ ସନ୍ଧାନ ପାଏ, ସେଥିଲାଗି କରୁଣ ବିଳାପ କରି ସେ ତାକୁ ଖୋଜି ବୁଲୁଛି । ମାଧିଆ ତାକୁ ଧରି ଆଣିଲା । ଯେତେ ଯତ୍ନ କରାଗଲା, ସମସ୍ତ ବିଫଳ ହେଲା । ପୁଣି ଦିନେ କପରି ସେ ଅଦୃଶ୍ୟ ହୋଇଗଲା । ଆଉ ଯେତେ ଯାହିଁ ଖୋଜିଲେ ମିଳିଲା ନାହିଁ । କେହି କେହି କହନ୍ତି, ସେ ସେହି ତମ୍ବୁ ପଡ଼ିଥିବା ଜାଗାରେ ଯାଇଛି । କାଠୁରିଆମାନେ କହନ୍ତି, ନିବିଡ଼ ଜଙ୍ଗଲ ମଧ୍ୟରେ କାଠ କାଟିଲାବେଳେ ସେମାନେ ବହୁବାର ବୃଦ୍ଧ ପଶୁକଣ୍ଠର ଗୋଟିଏ କରୁଣ ଆର୍ତ୍ତ ବିଳାପ ଶୁଣିପାରନ୍ତି; ସେ କାନ୍ଦୁ ଜନ୍ତୁର ନା ଜୋବ୍ରାର ?

# ଅନ୍ଧାରୁଆ

## ସଚ୍ଚିଦାନନ୍ଦ ରାଉତରାୟ

ବେକରେ ହାଡ଼ ବାନ୍ଧିଲା । ଦାନ୍ତରେ ଧରଣ ଦେଲା । ଜିଭ ଥାଉ ଥାଉ ଖନା ହୋଇ ପହଲି ପଧାନ ବାରଦୁଆର ଶୁଣ୍ଢି ପିଣ୍ଡା ବୁଲି ଖପର ପକେଇଲା ।

କଳା-ମିଚମିଚ ଅନ୍ଧାର ମଝିରେ ତାର ଶଣ୍ଢା ଶଣ୍ଢା କାଳିଆ ବାହା ଦଣ୍ଟାକୁ ଉପରକୁ ଟେକି ଗାଁମୁଣ୍ଡ ଦୋକାନ ପାଖରେ ବସି ପହଲି ଗଅଁ ଗଅଁ ହୋଇ ସମସ୍ତିଙ୍କି ମନକଥା କହିବାକୁ ଚେଷ୍ଟା କରେ, ନାନା ଅବଲ୍ କାଢ଼ି ଗହକମାନଙ୍କ ଅଣ୍ଟାରୁ ପଇସାଏ ଅଧଲାଏ ଖସାଇବ ବୋଲି ବାହାରେ । କିଏ ଦିଏ, କିଏ ବା ମୁହଁ ମୋଡ଼ି ଚାଲିଯାଏ । ଅଧିକାଂଶ ତା ଆଡ଼କୁ ଦାନ୍ତ ଦ'ଧାଡ଼ିକ ଦେଖାଇ ଖିଁ ଖିଁ ହୋଇ ହସନ୍ତି । ଖତେଇ ହୁଅନ୍ତି । ପହଲି ମାଟିରେ ଗଡ଼େ । ବାଲ ମୁକୁଳା କରି ହାତ ଠାରି କେତେ ଜଣ କହେ । ସମସ୍ତେ କହନ୍ତି, 'ପହଜ କରୁଛି ।'

ତାର କାଳିଆ ଦେହ, କୋତରା ଲୁଗା, ଆବୁଡ଼ା ଖାବୁଡ଼ା ଓସାରିଆ ଛାତିଟା କଳା ରାତି ସଙ୍ଗରେ ମିଶିଯାଇ ଜମା ବାରିହୁଏ ନାହିଁ ।

ଅଝଟ ପିଲାଏ ମା'ଠୁ କ୍ଷୀର ନ ଖାଇଲେ ମା'ମାନେ ଭୟ ଦେଖାଇ କହନ୍ତି, ହେଇ ହେଇ ଅନ୍ଧାରୁଆ ଆଇଲାଣି । ଗାଁମୁଣ୍ଡେ ବସି ଜିଭ ହାଲୁ ହାଲୁ କରୁଚି ।

ପହଲି ପୁରସ୍ତମ ଯିବ । ବାଟରେ ସଞ୍ଜ ହୋଇଗଲେ ପାଖ ଗାଁରେ ରାତିକ ପାଇଁ ଆଟକିଯାଏ । ଦଅଁ ବୁଡ଼ିଯିବା ଆଗରୁ କଣ ଦଣ୍ଟା ପାଟିରେ ପକାଇ ଦେଇ କାହା ପିଣ୍ଡାରେ କୁଣ୍ଟା ଗୋଟିଏ ପାରି ଗୁଡ଼ିକାଡ଼ି ନମ୍ବେଇ ପଡ଼ିଯାଏ । ସେ ଯେଉଁ ଗାଁକୁ ଯାଏ—ସେ ଗାଁରେ ଅନ୍ଧାରୁଆ ଆଇଚି ବୋଲି ଘରିଆଡ଼େ ହୁରି ହକର ପଡ଼ିଯାଏ । ତା ପଛରେ ଟୋକାଏ ତାଳିମାରି ଗୋଡ଼ାନ୍ତି, ବୁଲା କୁକୁରଗୁଡ଼ାକ ଘେଉ ଘେଉ ହୋଇ ତାକୁ ଖେଙ୍କାରି ପଶନ୍ତି, ପୁଣି ଘୁଁ ଘୁଁ କରି ତା ଗୋଡ଼ସନ୍ଧିରେ ପଶି ପରଚ୍ଛେ ତାକୁ ଶୁଂଘିଯାନ୍ତି । ଅନ୍ଧାରୁଆ ଦିନଯାକ ବାଟ ଚାଲେ –ସଞ୍ଜବୁଡ଼େ ଭୋକ ମାରେ ।

ଅନ୍ଧାର ରାତି । ପେଟରେ ହେଲା ମାଇକିନିଆ ପରି କଳାମେଘର ଭଳି ପେଟଟା

ଓହ୍ଲାଇ ପଡ଼ିଛି । ତାର ଭିତରେ ଚାଲନ୍ତା ଅନ୍ଧାର ଘର ବାଡ଼ି ଖଣ୍ଡିକ ଧରି ଅନ୍ଧାରୁଆ ଘୁରିଲେ·· ।

ବେଳେ ବେଳେ ଅନ୍ଧାରୁଆ ସ୍ୱପ୍ନ ଦେଖେ···।

ପାଚିଲା ଧାନ ଖେତରେ ନହଡ଼ା ମାରୁଛି । ଭେଣ୍ଡିଆ ଭେଣ୍ଡିଆ ଧାନ ଗଛର ଅସୁମାରି ସାରୁ ସିଆରି ଭିତରେ ଡମ୍ପସାପ, କଙ୍କଡ଼ା ବଗୁ ଆଉ ତେଲୁଣୀ ପୋକଙ୍କ ମେଳା ବସିଛି । ଚାରିଆଡ଼େ ଆଉଁଷିଣିଆ ଗନ୍ଧ ପାଇ ମାଛିଆ ଚାଲଗୁଡ଼ାକ ଚେକ ଚେକ ହୋଇ ଉପରେ ଉଡ଼ୁଛନ୍ତି ।

ସେଇ ମେଘ ଅନ୍ଧାର ରାତିରେ ବିଲ ମଝିରେ ଗୋଟାଏ ଖଡ଼ ଛାଆଣି କରି ଅଠା ଖଣ୍ଡେ ଜାଲ ପହଲି ବିଲ ଜଗିଛି ।

ଧାନଗଛ ମୂଳରେ କୁଟା ହେଇଛି କୁଡ଼କୁ କୁଡ଼ ଖତ । ଖତ ତ ନୁହଁ, ହାଡ଼ । ପହଲିର ହାଡ଼—ତା ସ୍ତ୍ରୀ ଗେଲବୋଉର ହାଡ଼··· ।

ପହଲିର ମନେ ପଡ଼େ କାଲିମଙ୍ଗ ଜାଡ଼ଦିନେ କମିତି ବଡ଼ିଅନ୍ଧାରୁ କେଉଟ ଘରର ଚୂଡ଼ା ପାହାର ନ ଶୁଭୁଣୁ ଗେଲବୋଉ ଥୁରୁ ଥୁରୁ ହୋଇ ଟାଙ୍ଗି, ଟୋକରି, ତୋଟା, ପାଟ ବୁଲି ଗାଣ୍ଡୁଆକୁ ଗାଣ୍ଡୁଆ ଗୋବର ବୋହି ଆଣି ବାଡ଼ିପଟ ଖତଗଦାରେ ଜମା କରେ···। ଆଉ ପହଲି ନିଜ ଦେହର ନହୁ ପାଣି କରି ସେଇ ଖତକୁ କୁଟି ଓଦର ଓଦର କରି ନେଇ ବିଲରେ ଜମା କରି ଦେଇ ଆସେ ।

ଖାଲି ସେତିକି ନୁହେଁ, ପଥର ପରି ଟାଣ ବିଲ ମାଟିରେ ନଙ୍ଗଳ କଣ୍ଢି ଧରି ହଳ କଲାବେଳେ ଯେ କି କଷ୍ଟ, ତା ମନେ ପଡ଼ିଲା ବେଳେ ପହଲିର ହାଡ଼ ଭିତର କଣ ହେଇଯାଏ । ତାଙ୍କୁ ଉପରେ ନିଆଁ ପିଣ୍ଡୁଳା ପରି ସୂର୍ଯ୍ୟ, ତଳେ ତତଲା ମାଟି, ଗୋଡ଼ ଫଟା ଫିଟି ଯାଇ ପରସ୍ତକୁ ପରସ୍ତ ଚମ ଛାଡ଼ିଯାଇଛି ।

ପହଲିର ଏତେ ହାଡ଼ଭଙ୍ଗା ରକ୍ତମିଶା ମିହନତକୁ ସାର୍ଥକ କରି ଯେଉଁଦିନ ପାଚିଲା କ୍ଷେତର ଅସୁମାରି ଧାନଗଛ ଗହଳରେ ମାଘପବନର ଲୁଚକାଳି ଖେଳ ଲାଗିଲା, ସେଦିନ ପହଲି ଜୀବନରେ ଏକ ମହୋତ୍ସବ । ସେ ସବୁ ଭୁଲି ଅନାଇଁ ରହିଲା ସେଇ ଦରପାଚିଲା କିଆରି ଆଡ଼କୁ ।

ତା ପରେ ଦିନେ—

ପହଲି ଖଟିଲା ।

କଟିମିଟି ଅନ୍ଧାର । ମଗୁଶିର ମାସ ହିମାଳ ପବନ କଲିଜା ଭିତର ଥରାଇ ଦେଇ-ଯାଉଛି । ପହଲି ଖଡ଼ ଉପରେ ଧୋଁସ ଖଣ୍ଡେ ଘୋଡ଼ି ହେଇ ପେଟେଇ ପଡ଼ି ଶୋଇ ବନ୍ଧୁଆରୁ ତୃଣପଣ ଟିକିଏ ଆଣି ନେଡ଼ାରେ ଦଳୁଛି । ବିଲ ଭିତରେ ବୁଲୁବୁ ବୁଲୁବୁ ପାଣି

ଶୁଣାଗଲା । ପାଣି କାଦୁଅରେ ଧାନଗଛଗୁଡ଼ାକ ଚକଟି ଦେଇ ଗୋଟାଏ କଏ ଘୁରିଆଡ଼େ ମକ୍ଷି ଦେଇଯାଉଛ ଶିମିଳ ଅବା । ପହଲ ଭାବିଲା ବାର୍‌ହା କ ଭାଲୁ ହେବ ପର୍ବ ।

ସେ ରାଗରେ ଖଣ୍ଡେ ମୂଳବାଉଁଶ ଧରି ଉଠିଲା ।

ଧାନଗଛର କାଳିଆ ଗୁଇ ଚରି ପାଣିଶିଆରଗୁଡ଼ାକ ଚକ୍‌ଚକ୍ ଦିଶୁଛ । ବହଳିଆ ମେଘ ଅନ୍ଧାର ଭିତରେ ପହଲ ଆଖିରେ ପଡ଼ିଗଲା ଗୋଟାଏ ମସ୍ତବଡ଼ କାଳିଆ ଜନ୍ତୁ । ନାକପୁଡ଼ାରେ ଅଣସ୍ତଣ ପବନ ବହୁଛ ।

ପହଲ ତା ପଛେ ପଛେ ଗୋଡ଼ାଇଲା; ମାତ୍ର ସେଇ କାଳିଆ ଗୁଇଟା ଧାନଗଛଗୁଡ଼ାକ କୁଢ଼ ଚକଟି ଦୌଡ଼ି ଦୌଡ଼ି ଏଣେତେଣେ ପଳାଇଗଲା ।

ଗୋଟିଏ ଧାନଗଛ ନଷ୍ଟ ହୋଇଯିବା ସଙ୍ଗେ ସଙ୍ଗେ ପହଲ ଦେହରୁ ପୋଷେ ରକ୍ତ ଶୁଖିଯାଉଥିଲା ।

ଆଗରେ ଗୋଟାଏ ଖାଲ । ଜନ୍ତୁଟା ଆଉ ଯାଇ ପାରିଲା ନାହିଁ—ମୁହଁ ବୁଲାଇ ପଛକୁ ଫେରି ଆଇଲା । ପହଲର ବାଉଁଶ ଠେଙ୍ଗା ଦୁମ୍ କରି ଯାଇ ବାଜିଲା ତା ତାଳୁରେ । ଠିକ୍ ତା ତାଳୁ ଉପରେ ।

ପହଲ ବିଜୁଳି ଆଲୁଅରେ ଦେଖି ପାରିଲା, ଦି'ଟା ବଡ଼ ବଡ଼ ମୁନିଆଁ ଶିଙ୍ଗ କେନା ମେଲିଚ ଉପରକୁ ବାହାରିଛ ।

ନାକ ଟେକି, ଫଁ ଫଁ ନିଶ୍ୱାସ ଛାଡ଼ି ଜନ୍ତୁଟା ପଳାଇଗଲା କାଇଁକାହୁଆ ହୋଇ ଏକ ମୁହଁରେ—ପହଲ ଶୁଣି ପାରିଲା, କିଛି ଦୂର ଯାଇ ସେଉଟା ଗୋଟାଏ କଣ୍ଟା ବୁଦାରେ ଲୁଷ୍ଟନା ପଡ଼ିଗଲା, ଆଉ ପଙ୍କ କାଦୁଅ ଭିତରୁ ଉଠି ପାରିଲା ନାହିଁ ଜମା ।

ପହଲ ଭଡ଼କ ଫେରି ଆସି ନଷ୍ଟିନ୍ତରେ ଶୋଇଲା । ସେ ରାତରେ ଶୋଇ ଶୋଇ ସ୍ୱପ୍ନ ଦେଖିଲା ଗୋଟାଏ ମସ୍ତବଡ଼ କାଳିଆ କଙ୍କାଳ, ଚାରିପଟେ ତାର ଜାଉ ବେଢ଼ି ଛନ୍ତି । ଗୋଟାଏ ଲେଙ୍କଡ଼ା ଶାଗୁଣା ସେଇ ମଡ଼ର ନାହିମୁଣ୍ଡା ଭିତରେ ଥଣ୍ଟ ପୁରେଇଛ । ସେଇ ମଡ଼ର ଘରଟା ଯାକ ଖୁରାକୁ କଏ ହାଣି ଦେଇଛ କୁରାଢ଼ିରେ ଘ୍ୱେଟ ଘ୍ୱେଟ କରି ।

ପୁରୋହିତେ ପୋଥି ଦେଖି କରି କହିଲେ, 'ଛନପାଦ ଦୋଷ ନାଗିଛ । ପୁରୁସ୍ତମ ଯାଇ ମୁକ୍ତିମଣ୍ଡପରେ ପ୍ରାୟଶ୍ଚିତ୍ତ ନ କଲେ ଏ ପାତକ ଛାଡ଼ିବ ନାହିଁ । ପ୍ରାୟଶ୍ଚିତ୍ତ ନ ହେବାଯାଏ ଦାଣ୍ଡରେ ଚରଣ ଦେବ, କଥା କହିବ ନାହିଁ ।'

ଗାଆଁ ଯାକ ଫୁସ୍ ଫୁସ୍ ହେଲେ—"ପହଲ ହାଡ଼ ବାନ୍ଧିବ । ଗୋରୁ ମାରିଛ ।"

ସେ ଦିନର ପହଲ, ଆଉ ଆଜିର ଅନ୍ଧାରୁଆ । କେତେ ତଫାତ୍ ?

ପହଲ ଭାବେ, ସେଦିନ ପଦ୍ମ ପୁରାଣ ପଢ଼ି ପୁରୋହିତ ନିଧି ମିଶ୍ରେ ତାକୁ କଣ କହିଥିଲେ । ଭୟରେ ମୁହଁଟା ତାର ଶ୍ୱେତବର୍ଣ୍ଣ ପଡ଼ିଯାଏ । ତା ଆଖି ଆଗରେ

ନାଚଯାଏ ଗୋଟାଏ ମସ୍ତବଡ଼ ଜଳନ୍ତା ଚୂଲି—ବଡ଼ ବଡ଼ ହଣ୍ଡାରେ ତେଲ କଡ଼କଡ଼ ହୋଇ ଫୁଟୁଚି । ସେ ଏପଟକୁ ସେପଟ ଚାହେଁ, ଥରଉଠେ । ପୁଣି ତା ଆଖି ଆଗରେ ନାଚଯାନ୍ତି ଦୁଇଟା ମଇଁଷିମୁହାଁ ଯମଦୂତ । ସେଦିନ ତାଙ୍କର ଚିଜ ତାକୁ ପୁରୋହିତ ଆପଣେ ଦୟାକରି ପୁରାଣରୁ ବାହାର କରି ମିଞ୍ଜି ମିଞ୍ଜି ଦୀପ ଆଲୁଅରେ ଦେଖାଇ ଦେଇଥିଲେ । ତାର ସେ ତିନି ରଙ୍ଗିଆ ଚିଜପଟଟା ମନେ ପଡ଼େ । କେଡ଼େ କେଡ଼େ ଆଖି, କମିତି ଶିଙ୍ଗ, ହାତ ଦିଟା କମିତି ମୁନିଆ ମୁନିଆ । ସେ ଡରୁଆ ପିଲାଙ୍କ ପରି ଦିନରେ ବିଲବିଲେଇ ଉଠେ—

"ଆଇଲା, ଆଇଲା, ହେଇ ଆଇଲା ।"

ଦିନେ ଦିନେ ବାଟ ଚାଲୁ ଚାଲୁ ଜଗୁଟିଆ ଦି' ପହରରେ ସେ ଥକା ହୋଇ ଗୋଟାଏ ଗଛ ମୂଳରେ ବସିପଡ଼େ । ଚାରିଆଡ଼ ଶୁନ୍‌ଶାନ ଖାଁ ଖାଁ କରୁଥାଏ । ତାର ମନେ ପଡ଼େ ତଳଗାଁ ରାମା ଗଉଡ଼ର କଥା । ଗୋରୁ ମାରି ନୁଚେଇ ଥୋଇ; କିନ୍ତୁ ମଲାବେଳକୁ ଜିଭରେ ଘା ହୋଇଗଲା, ପୋକମାଛି ହେଲା, ନାଙ୍ଗୁଡ଼ା ପୋକ ପାଟିରେ ସାଲୁବାଲୁ ହେଇ ଚାଲିଲେ । କେତେ ଖଞ୍ଜ ମୂତ, ରକ୍ତପୂଯ ହେଇ ସେ ଘାଣ୍ଟି ଚକଟି ହେଲା । ତେବେ ହେଲେ କଣ ତାର ପ୍ରାଣ ଗଲା ।

ଶେଷରେ ସାହି ଲୋକେ ପଚାରିଲେ—"କିରେ ରାମା, କଣ କରିଚୁ କହିଦେ । ନୋଇଲେ ସଜରେ କଣ ପ୍ରାଣ ଯିବ ?"

ରାମା ମାନିଗଲା । ଗୋରୁ ମାରିଥିବା କଥା କହିଦେବାମାତ୍ରକେ ତାର ହିକ୍‌କା ଉଠିଲା । ତିନିଥର ଗୋରୁଙ୍କ ପରି ହମ୍ବାଲି ଛାଡ଼ି ତା'ଠୁଁ ପ୍ରାଣବାୟୁ ଉଡ଼ିଗଲା ।

ପହିଲି ଆଉ ଭାବିପାରେ ନାହିଁ । ତାକୁ ଶୁଣାଯାଏ ଗୋଟାଏ ମାରଣା ଗୋରୁ ଯିମିତି ଖୁବ୍ ଦୂରରେ ହେମ୍ବାରି ଛାଡ଼ୁଛି । ସେ ଭୟରେ ଗଛଟାକୁ କୁଣ୍ଢାଇ ଧରେ ।

ନିକଟରେ ହୁଏତ ଗୋଟିଏ ଦିଓଟି ଗାଈ ଚରୁଥାନ୍ତି । ଧଳା, କଳା, କପିଳା ବାଛୁରିଗୁଡ଼ିକ ଚରିମାରି ତା'ଙ୍କ ଚାରିପାଖେ ନାଚୁଚନ୍ତି । ପହିଲିର ମନେହୁଏ, ସେମାନେ ଯେମିତି ତାକୁ ଶିଙ୍ଗ ଉଚେଇ ମାରିବାକୁ ଆସୁଚନ୍ତି । ସେ ବାଡ଼ିଖଣ୍ଡିକ ଧରି ଛିଡ଼ା ହୁଏ—ଭୟଜନ୍ତ ଆଖିରେ ଇଆଡ଼ିକି ସିଆଡ଼ିକି ଚାହେଁ ।

ଦିନେ ଦିନେ ରାତିରେ ପହିଲି ସପନ ଦେଖେ—ଗୋଟାଏ ମଲା କାଳିଆ ଗୋରୁ ପେଟ ଫୁଲେଇ ତାଙ୍କ ଅଗଣାରେ ଶୋଇଚି, ତା ପେଟ ଭିତରେ ଗୋଟେ କଅଁଳା ବାଛୁରି । ଗେଲବୋଉ ଚଉରା ମୂଳରେ ବସି ଲୁହ ହୋଇ କାନ୍ଦୁଚି । ଆଉ ତାର ମଲାପିଲା ଗେଲିଟା ପୁଣି ବଞ୍ଚିଲାଣି । ସେ ବାଆ ବାଆ ବୋଲି ଚାରିଆଡ଼େ ତାକୁ ଖୋଜିବୁଲୁଚି । ପହିଲିର ନିଦ ଚହଁକିନା ଭାଙ୍ଗିଯାଏ । ସେ ଉଠି ବସେ । ଦୂରରେ

ଜଣାଯାଏ ଯିମିତ ସଁ-ସଁ ହେଇ କୋଟିଏ କଣ ଚରୁଚ ।

ଦିନେ ଦିନେ ବାଟ ଚାଲୁ ଚାଲୁ ହଠାତ୍ ପହଲି ଥକା ମାରି ଛିଡ଼ା ହୋଇ-ଯାଏ । ତାର ମନେହୁଏ, ପଛରୁ ତାକୁ ଯିମିତି କିଏ ଡାକୁଚ । ଗୋଜିଆ ଗୋଜିଆ ଶିଙ୍ଗ—ହାତରେ ଗୋଟାଏ ବାଘୁଆ ଫାଶପକା ଦଉଡ଼ି । ତାର ମନେପଡ଼ିଯାଏ ଯମ ଗଉଡ଼ର ମୁହଁ । ରକ୍ତ, ପୂଯ, ଲଙ୍ଗୁଳିଆ ପୋକ; କିନ୍ତୁ ମନକୁ ମନ ବୁଝାଇ ସେ ପୁଣି ବାଟ ଚାଲେ । ଶହେ ଥର ବଡ଼ଠାକୁରଙ୍କ ନାଁ ସୁମରଣା କରେ । ପୁଣି ବଡ଼ଦାଣ୍ଡ । ଶହ ଶହ କୁଷ୍ଠରୋଗୀଙ୍କ ମେଳରେ ପହଲି ବସି ଖପର ଖଣ୍ଡିକ ପତାଇ ଭିକ ମାଗୁଚ । ବଡ଼ଦେଉଳ ଉପରେ ବଡ଼ଠାକୁରଙ୍କ ଧନ ସୋରୁଆ ନେତ ହଲୁଥାଏ । ପହଲି ଏକା ରାହାରେ ସେଇ ଆଡ଼କୁ ଅନାଇ ରହେ । ତା ମନରେ ପୁଣି ବଡ଼ଦାଣ୍ଡ ବୁଲିବା-ଦିନୁ ଟିକିଏ ସାହସ ଆସିଲାଣି । ସେ ଆଉ ପୂର୍ବ ପରି ବଲବଲେଇ ଉଠୁନାହିଁ କି ଠିଆରେ ଭୟଙ୍କର ସ୍ୱପ୍ନ ଦେଖି ଚମକି ପଡ଼ୁନାହିଁ । ପାଖରେ ଶୋଇଥିବା କୁଷ୍ଠ-ରୋଗିଣୀଟା ହୁଏତ ପଚାରେ, "ଆଉ କେତେ ଦିନ ତୁ ହାଡ଼ ବାଧିବୁ ମଉସା ?" ପହଲି ହାତ ଆଙ୍ଗୁଠି ଗଣି ତାର ଦିଏ, "ଆଉ ସାତଦିନ ।"

ସାତଦିନ ପରେ ପହଲି ଗାଆଁକୁ ଫେରି ଆଇଲା । ସେ ଗେଲବୋଉର ରସଖଣ୍ଡୁ, ବାସନକୁସନ ବିକି ଟଙ୍କା ପାଞ୍ଚଟା ଅଣ୍ଟାରେ ଖୋସି ପୁରୁଷୋତ୍ତମ ଯାଇଥିଲା । ଘରଯାକର ସବୁ ଦରବ ବିକି ସେ ପୁରୁଷୋତ୍ତମରେ ପାତକ ଛଡ଼ାଇ ଆସିଚି ।

ମାସେ ଏକୋଇଶ ଦିନ ପୂରିଲା ଦିନ ସେ ପଞ୍ଚଗବ୍ୟ ହୋଇ, ବ୍ରାହ୍ମଣ ଭୋଜନ କରାଇ, ମୁକ୍ତିମଣ୍ଡପର ଗୋସାଇଁ ମହାପୁରୁଷମାନଙ୍କୁ କିଛି କିଛି ଅଣ୍ଟାଖୋସା ଦେଇ, ସେମାନଙ୍କର ପାଦଧୂଳି ଆଉ ଆଶୀର୍ବାଦ ନେଇ ଘରକୁ ଫେରି ଆଇଲା । ଆଇଲାବେଳେ ଗେଲବୋଉ ପାଇଁ ମହାପ୍ରସାଦ କୋରୁଆଏ, ଆଉ ଶୁଖିଲା ନିର୍ମାଲ୍ୟ କେତେ ମୁଠି ମଧ୍ୟ ଆଣିବାକୁ ଭୁଲି ନ ଥିଲା । ଘରଫେରନ୍ତି ପହଲିର ପାଦ ତଳେ ଲାଗୁ ନ ଥିଲା । ତା ମନଟା ଖାଲି ଖୁସି-ବାସିରେ ଉଚ୍ଛୁଳି ଉଠୁଥିଲା ।

ମାଉସଞ୍ଜର କଅଁଳ ଅନ୍ଧାର ଗାଁ ଉପରେ ତାର ପାତଲା ଖଣ୍ଡୁଆ ଘୋଡ଼ାଇ ଦେଇଥାଏ । ଗାଁମୁଣ୍ଡ ମାହାଲ ଗଛ ଉପରେ ମହୁମାଛିମାନଙ୍କର ସଞ୍ଜ ସଭା ବସିଥାଏ । ଗେଲବୋଉ ତାର ଶୋକିଲା ମୁହଁ ଉପରେ ଲୁଗା ପଣତ ଢାଙ୍କିଦେଇ ବୃନ୍ଦାବତୀଙ୍କ ପାଖରେ ସଞ୍ଜବତିଟି ରଖି ଦଣ୍ଡବତ ହବାବେଳକୁ ପଛରୁ ପହଲି ଡାକିଲା—"ଘର-ଦ୍ୱାର ସବୁ ଭଲ ଅଛି ତ ଗେଲବୋଉ ?"

ଗେଲବୋଉ ଯାହା ଜବାବ ଦେଲା ସେଥିରେ ପହଲିର ହାଲୁକ ଶୁଖିଗଲା । ତା'ର ଘରଫେରନ୍ତା ଖୁସିବାସି ଆଖିପିଛୁଳାକେ କୁଆଡ଼େ ଉଭେଇ ଗଲା । 'ଘରେ

ପନ୍ଦର ଦନ ହେବ ଗୃହରୁ ନାହିଁ, ମାଣ୍ଡିଆତକ ଛେଳ ଖାଇଗଲେ, ଗତ ଦନ ତରେ ଯେଉଁ ଶୀତଦନଆ ଅକାର ଝଡ଼ ହୋଇଥିଲା, ସେଥିରେ ହାଣ୍ଡିଶାଳ ଘର କାନ୍ଥଟା ଭୁଷୁଡ଼ି ପଡ଼ିଚ୍ଛ । ଆଉ ଭାଗ ବାଲରୁ ଯେଉଁ ଧାନତକ ଅମଳ ହୋଇଥିଲା, ତାକୁ ଜମିଦାର ପାଆନ୍ତେ ସେ ପୁରସ୍ତମ ଯାଇଥିବାବେଳେ ଆଗତ ସାଲର ବାକ ଖଜଣା ବାବଦକୁ କବଜ କରନେଇଛନ୍ତି । ଗତ ସାଲର ଖଜଣା ମାସକ ଭିତରେ ନ ଦେଲେ ପୁଣି ଘର ଦୁଆର କୋରଖ କରବେ ବୋଲି ଧମକ ଦେଇଛନ୍ତି ।’

ମୁଣ୍ଡରେ ହାତ ଦେଇ ପହଲ ସବୁ ଶୁଣିଲା—କିଛୁ କହିଲା ନାହିଁ । ସେ ରାତଟା ପୁରୀରୁ ଆଣିଥିବା ମହାର୍ଦ ଖାଇ ଦୁଇ ପ୍ରାଣୀଙ୍କର ଏକରକମ କଟିଗଲା ।

ସକାଳୁ ପହଲ ଦେଖିଲା ଚୁଲିକୁ ହାଣ୍ଡି ଯିବାକୁ ଗୃହଲ ନାହିଁ । ପଇପରବା ତ ଦୂରର କଥା । ହାଣ୍ଡିଶାଲ ଘରେ କାନ୍ଥ ଭୁଷୁଡ଼ି ପଡ଼ି ମାଟି ଗଦାହେଇଚ । ଗୋଟାଏ କଣରେ ଗୋଟାଏ ମସ୍ତବଡ଼ ଉଇହୁଙ୍କା ମୁଣ୍ଡ ଟେକ ଛିଡ଼ାହେଲାଣି । ହାଣ୍ଡି-କୁଣ୍ଡେଇ ହେଇ ଯାହା ଦଖଣ୍ଡ ଥେଲା, ତାହା କାନ୍ଥରୁ ମାଟି ଖସି ଚୂନଚୂନ୍ ହୋଇ ଯାଇଚ୍ଛ । ଘର ଭିତରେ ଖପର ଖଣ୍ଡି ଖଣ୍ଡି ହେଉଚ । ପହଲ ଦ’ମାସ କାଲ ପଡ଼ିଆ ହେଇ ପୁରସ୍ତମରେ ବସିଥିଲା—ଘରେ ଫଟା ପାହୁଲାଟାଏ ବି ନାହିଁ । ବନ୍ଧାଇନ୍ଦା ବା ବକାକଣା କରବା ପାଇଁ ଯାହା ଉପାଦାନ ହୋଇ ଦଖଣ୍ଡ କନକପଦା ଥିଲା, ସେ ସବୁ ତ ପହଲ ବନ୍ଧୁଙ୍କ ଘୁଞ୍ଚିକୁ ନଗାନ୍ତ୍ୟା ପ.ଡଙ୍କ ଛଡ଼େଇ ଆଇଚ ? ବାକ ଅଛୁ କଣ ଯେ ହୋଥନ୍ତା ଆଜ୍ଞ ସେ ହ୍ରା ... ? ମାଇପ ହାତରେ ଖାଲି ଶଙ୍ଖା ପଟିଏ ପଟିଏ—ଦନକୁ ଦନ ବେଶି ହ୍ରପୁର୍ ହୋଇ ଯାଉଚ ।

ସକାଳୁ ପହଲକୁ ଦେଖି ଗାଆଁ ବ୍ରାହ୍ମଣେ ଧାଇଁଲେ, ଭୋଜନ ଦବାକୁ ହେବ । ବ୍ରାହ୍ମଣ ଶ୍ରଦ୍ଧ ନ କଲେ କୁଅଡ଼େ ପାତକ ଗ୍ଲଡ଼ବ ନାହିଁ । ଜମିଦାରଙ୍କ ପିଆଦା ଆସି ଦୁଆରେ ବସିଲା । ଗତ ସାଲର ଖଜଣା ପରଶୋଧ ନ କଲେ ସାଆନ୍ତେ ମକଦମା କରବେ । ଜାତଭାଇ ଧରବସିଲେ, ଜାତଭାତ ଦେଇ ଶୁଧ୍ଧଅ ହେବାକୁ ପଡ଼ବ ।

ପହଲ ମୂଲ ଲାଗିବାକୁ ବାହାରଲା; ମାଘ ପୁଷ ମାସ, ଧାନକଟା ପରେ ପାଇଟି କାହୁଁ ପ୍ରଟିବ ? ତା ଛଡ଼ା ପହଲ ଲକ୍ଷ୍ୟ କଲା ଯେ, ଗାଁ ଲୋକେ ତାକୁ ଦେଖି ଆଜକାଲି କମିତ ନାକ ଟାଉଁ ଟାଉଁ କରୁଚନ୍ତି । ଜଣେ ସେଦନ ତାକୁ ବଡ଼ପାଟି କର ଶୁଣାଇଦେଲା—“ଗୋରୁମରାଟାକୁ ଛୁଇଁଲେ ଛୁଆଁ ନାଗିବ ।” ପହଲ ସେହୁଦନୁ ଆଡ଼ଛଡ଼ା ହେଇ ରହୁଚ, କାହାର ସାଥିରେ ବଳେ ପଣି ମିଳାମିଶା କରୁନାହିଁ ।

ଜାତଆଣ ଭାତ ଦେଇ ନ ପାରବାରୁ ପହଲ ଅଜାତଆ ହେଲା । ସବୁଆଡ଼ୁ ବାସନ୍ଦ । ବ୍ରାହ୍ମଣ ଗୋସାଇଁମାନେ ଅଡ଼ି ବସିଲେ । ଧୋବା, ଭଣ୍ଡାର, କୁଆଁ ପାଣି ସବୁ

ମନା ହୋଇଗଲା । ପହଲି ଏକଘରକିଆ ହୋଇ ରହିଲା ।

ପହଲିର ଶାଳୀଗଲା ପରେ ଦାହାଟା ଗୁହୁଁ ଗୁହୁଁ ଆସି କଣ୍ଠା ହୋଇଗଲାଣି, ଗୋଲବୋହକୁ ଫର୍ଦ୍ଦ ଦେଲେ ପଢ଼ିଯିବ । ଖାଲି ହାଡ଼ ଦି'ଖଣ୍ଡ ଦେଖାଯାଉଚି । ସେ ସ୍ତ୍ରୀକୁ ବାପଘରକୁ ପଠାଇଦେଲା ।

ପହଲିର ଘରେ ଚୁଲି ଜଳିଲେ ଦି'ଦିନ ଖାଡ଼ା ଉପାସ । ଦୋକାନୀ ଧୋବ ସାହୁ କାଢ଼ିଆ ଦବାକୁ ନାହିଁ କରି ଦେଲାଣି । ପହଲିକୁ ବୁଦ୍ଧି ଦିଶୁନାହିଁ ।

ଦୁଃଖ, ଅଭାବ, ଅନଟନର ସହି ସହି ପହଲିର ମୁଣ୍ଡ ଖରାପ ହୋଇଗଲାଣି । ସେ ପୁରୁଷୋତ୍ତମ କ୍ଷେତ୍ରରେ ଏତେ ଟଙ୍କା ପଇସା ଖର୍ଚ୍ଚ କରି ମନର ଯେଉଁ କଳାଦାଗଟାକୁ ନଖାଇ ଦେଇ ଆସିଥିଲା, ତାହା ପୁଣି ଗହ୍ଲଡ଼ିଆ ହୋଇ ମନ ଉପରେ ଗାର କାଟିଲାଣି ।

ଆଗପରି ପୁଣି ସେଇ ଭୟଙ୍କର ସ୍ୱପ୍ନ ତାକୁ ବେଳେ ବେଳେ ପାଗଳ କରି ପକାଉଚି । ସେ ବେଳେ ବେଳେ ଚମକି ଉଠୁଚି । ତାର ମନ ହେଉଚି, ଗୋଟାଏ କଣ କାଳିଆ ହୋଇ ତା' ଘରପଟେ ଚରିବୁଲୁଚି । ସେ ରାତିରେ ସ୍ୱପ୍ନ ଦେଖୁଚି, ଗୋଟାଏ ମାରଣା ବଳଦ ତାକୁ ଯେପରି ଶିଙ୍ଗରେ ଭୁଷିଦେବା ନାଗି ନାଙ୍ଗୁଠିଆ କରି ଧାଇଁଆସୁଚି । ସେ ସପନରେ ବଲବଲେଇ ଉଠୁଚି—''ହେଇ ଆଇଲା, ଭୁଷିଦେବ ଭୁଷିଦେବ,—ପଳାଅ, ପଳାଅ ।'

ପହଲିର ସବୁ ଯାଇ ବାକି ଯାହା ଥିଲା, ସେଇ ଭଙ୍ଗାଘର ଖଣ୍ଡିକ ମଧ୍ୟ ଶେଷରେ ଖଜଣା ଦେଇ ନ ପାରିବାରୁ ନିଲାମ ହୋଇଗଲା । ତାର ଏତେ ବଡ଼ ଦୁନିଆରେ ମୁଣ୍ଡ ଗୁଞ୍ଜିବାକୁ ବାଡ଼ିଗୋବରେ ଜାଗେ ହେଲେ ଆଉ ରହିଲା ନାହିଁ । ଘର ଖଣ୍ଡିକ ନିଲାମ ହେଲାବେଳେ ପହଲି ବକ୍ ବକ ହୋଇ ଅନାଇ ରହିଥିଲା । ତା ପାଟିରେ ଉଁ କି ଚୁଁ କଥା ଫିଟୁ ନ ଥିଲା । ତାକୁ ଯେତେବେଳେ ଜଣାଇ ଦିଆଗଲା ଯେ, ଏଣିକି ଆଉ ସେ ଘରେ ରହିପାରିବ ନାହିଁ, ସେତେବେଳେ ସେ ଚୁପ୍ କରି ଉଠି ଛିଡ଼ାହେଲା । ତା' ପରେ ଗୋଟିଏ ସାବଳ ନେଇ ହାଣ୍ଡିଶାଳ ଘରୁ ତାର ଇଶାଣ ଦେବୀ ଆଉ ବାଡ଼ିପଟ କାନ୍ଥରୁ ତାର ମଲାଝିଅ ଗେଲିର ଷଠିଗାତଟାକୁ ତାଡ଼ି ନେଇ ଆସି ଧୀରେ ଧୀରେ ସେ ଘର ଛାଡ଼ି ପଦାକୁ ବାହାରିଗଲା । ଯେଇ ସେ ଗଲା, ଆଉ ଦିନେ ହେଲେ ସେ ଫେରି ଆଇଲାନାହିଁ ।

ବାପ ଅଜା ଅମଳର ଘରଖଣ୍ଡିକ ଯିବା ପରେ ପହଲିର ମନର ଅବସ୍ଥା ଆହୁରି ଖରାପ ହୋଇଗଲା । ସେ ଏ ଓଳି ସେ ଓଳି ହୋଇ କୌଣସି ପ୍ରକାରେ ରାତି କଟାଇ ଦେବାକୁ ନାଗିଲା ।

ଘର ମଝିରେ ଥିବା ଝଙ୍କା ସଜନାଗଛଟି ପହଲିର ଖାଲି ପ୍ରିୟ । କୁଢ଼ କୁଢ଼ କରି

ଗଛିଠା ପାଉଁଶ ତା ମୂଳରେ ଓଜାଡ଼ୁଛି । ସେ ସଜନା ଗଛରେ ଝୁଲି କେସ୍ତ କେସ୍ତ ଫଳ ଝଲେ ଝଙ୍କଡ଼ା ପଞ୍ଚକେ ସେଥିରୁ ଗୋଟେ ତୋଳି ଆଣି ପଖାଳ ଖାଇବା ପାଇଁ ତା ହାତ ଯାଇନାହିଁ ସଜରେ । ତାର ଛାଇରେ ବସି କେତେ ଜହ୍ନରାତି ସେ କଟାଇ ଦେଇଛି । ଦାଣ୍ଡରେ ଠିଆ ହେଇ ଦନେ ଦନେ ପହଲି ସେଇ ଗଛଟା ଆଡ଼କୁ ଚାହେଁ, ତା ମୂଳରେ ଟିକଏ ଯାଇ ବସିବା ପାଇଁ ତାର ଖୁବ ଇଚ୍ଛା ହୁଏ; କିନ୍ତୁ ସେ ଫେରିଆସେ । ସାଆନ୍ତ ଘରର ଜଗୁଆଳଟା ତାକୁ ଦେଖି କରି ଥଟ୍ଟା କରି କହେ, "କବେ ଗୋରୁମରା ପହଲି !"

ପହଲିର ମନେ ପଡ଼େ ତା ଘରର ପଛପଟେ ପିଣ୍ଡାତଳେ ବୁଦା ବୁଦା ହେଇ କାନଶିରି ଶାଗ ମାଡ଼ିଥିବ । କୂଅମୂଳେ ସେଇ ସଦାବିହାରୀ ଆଉ ଗୋଡ଼ିବାଣ ଗଛ-ଗୁଡ଼ାକ ବୋଧହୁଏ ଫୁଲରେ ନେଥି ହେଇ ଯାଇଥିବ । ତାର ମନ ଡାକେ କମିତ ଟିକଏ ଯାଇ ସେ ଏସବୁ ଗୁଡ଼ାକ ଥରେ ଆଖି ପୂରାଇ ଦେଖିଆସନ୍ତା କି !

ତା ଭଙ୍ଗା ଛାତି ଭିତରେ କୋହ ଉଠେ । ତା ମନଟା ଚୂନା ହେଇ ଭାଜି ପଡ଼େ । ସେ ତେଇଁ ତେଇଁ କେତେ କଣ ବିକଟାଳ ସ୍ୱପ୍ନ ଦେଖେ, ବାଉଳି-ଚାଉଳି ହୁଏ । ତାର ମନେହୁଏ, ସେ ଯେମିତି ଇଆ ଭିତରେ କେଉଦିନ ମରିଗଲାଣି ।

ଘର ନିଲାମ ହେବାର ମାସ ଗୋଟାକ ପରେ ସାହିବାଲା ଦନେ କଥାବାର୍ତ୍ତା ହେଲେ, ପହଲି ପଧାନ ପାଗଳ ହେଇଗଲାଣି । ଗୁହମୁତ ସାଲୁ ସାଲୁ ହେଇ ଏଣେ-ତେଣେ ବୁଲୁଚି, ଆଉ ମଣିଷ ଦେଖିଲେ କହୁଚି—'ହେଇ ଆଇଲା, ଆଇଲା, ଭୁଷିଦବ, ହୁସିଆର ।'

ପାହାଡ଼କୁ ଜାଳେଣି କାଠ ଗୋଟେଇବା ଲାଗି କେତେ ଜଣ ବାଉରାଣୀ ଟୋକା ଯାଇଥିଲେ । ସେମାନେ ସଞ୍ଜବୁଡ଼େ ଧୋବ ସାହୁ ଦୋକାନ ମୁଣ୍ଡରେ କଥାଭାଷା ହଉଥିଲେ—ପହଲି ପାହାଡ଼ ଉପରେ ବଇଚି—ଖାଲି ବଳଦଙ୍କ ପରି ବୋବାଳି ଛାଡ଼ୁଛି; ଆଉ କହୁଛି—"ହେଇ, ଆଇଲା, ଆଇଲା, କେଡ଼େ କେଡ଼େ ଶିଙ୍ଗ ହେଇଚି, ଖାଲି ସଁ ସଁ ହେଉଚି । ମୁଁ ମରିଗଲି । ମୁଁ ମରିଗଲି ସାଆନ୍ତେ !"

ସବୁ ଶୁଣି ଗମ୍ଭୀର ହେଇ ନିଧି ମିଶ୍ରେ କହିଲେ—"ତା ପାପ ତାକୁ ଦେଖାଇବ ନାହିଁ ତ ଯିବ କୁଆଡ଼େ ? ଶୁଦ୍ଧ ନ ହେଲେ କି ଗୋହତ୍ୟା ପାପ ଛାଡ଼େ ? ଆମେ ଯେତେ କହିଲୁଁ, ଆମ କଥା ଗଣେଇଲ । ଟଙ୍କା ଦଶୁଟା ଖର୍ଚ୍ଚ କରି ବ୍ରାହ୍ମଣ-ଭୋଜନଟା କରାଇ ଶୁଦ୍ଧ ହେଇଯାଇଥିଲେ ଆଜି ସେ ପୁରୁଖୁରୁରେ ଝାଡ଼ିଝୁଡ଼ି ହେଇ ବସିଥାନ୍ତା । ଧର୍ମ କଣ କୁଆଡ଼େ ଯାଇଛି ?"

ପଣ୍ଡିତ ବ୍ରହ୍ମା କହିଲେ—"ଆଜିକାଲି ଶାସ୍ତ୍ର ପୁରାଣ କଥା କିଏ କଣ

ମାନୁଛନ୍ତି, ମିଶ୍ରେ ? ଦେଖୁନ ମଲାବେଳେ କମିତି ଗୋରୁପରି ବୋବାଉଚି ? ତାକୁ ଆସି କାଳ ଘୂରିଲାଣି । ତା ପାପ ତା ଆଗେ ଆଗେ ଯାଉଚି ନା ଲୁଚୁଚି ?”

ଜଗୁଣିଆ ପାହାଡ଼ ଉପରେ ପହଲର କଙ୍କାଳ । ଗୋଟାଏ ଭୟାନକ କଳ୍ପନାର ପ୍ରେତାତ୍ମା ତା ମନ ଉପରେ ନମ୍ବ ନମ୍ବ ଗୁଞ୍ଜି ପକେଇ ମାଡ଼ି ବସିଚି । ସେଥିରୁ ତାର ଉଦ୍ଧାର କାହିଁ ? ତା ସଙ୍ଗରେ ଏକାଜୁଟ ହୋଇଛନ୍ତି ବହୁଦିନର ଶୋକ, ଉପାସ, ଅଭାବ, ଯନ୍ତ୍ରଣା ଆଉ ଅପମାନ । ସମସ୍ତେ ମିଳି ତା ମନଟାକୁ ଚୂନା ଚୂନା କରି ପେଷିଦବାକୁ ବସିଛନ୍ତି ।

ପହଲ ଦେଖୁଚି ତା ଆଗରେ ଘରଦ୍ୱାର, ସ୍ତ୍ରୀ ପରିବାର, ଲୋଧ କୁଟୁମ୍ବ କେହି ନାହାନ୍ତି । ଅଛୁ ଖାଲି ଗୋଟାଏ ଫାଙ୍କା ଜଗୁନ । ଆଉ ଅଛୁ ଗୋଟାଏ ମସ୍ତବଡ଼ ପୋଥି—ପୃଷ୍ଠାରେ ତାର ଲେଖା ହୋଇଚି ବଡ଼ ବଡ଼ ଯମଦୂତଙ୍କ ଛବି, କାଳା କଳା ଆଖି, ଗୋଜା ଗୋଜା ଶିଙ୍ଗ । ସେ ପୋଥିର ଅକ୍ଷରଗୁଡ଼ାକ ଗୋଟେ ଗୋଟେ ଯିମିତି ଘୋରଣା ଚକ ।

ପହଲର ମନେହୁଏ ସେ ଗୋରୁ ମାରି ନାହିଁ ଯେ ତା ନିଜ ବେକରେ ଝୁଣ୍ଟି ବସେଇଚି ।

ପହଲର ଅଚଳ ତାବଦା ମନଟା ଆଉ ହଲଚଲ ହୋଇ ପାରୁନାହିଁ । ସବୁ ତାକୁ ମାଡ଼ି ମାଡ଼ି ପଡ଼ୁଚି. ଚାରିଆଡ଼ ଖାଲି ତାକୁ ଖାଁ-ଖାଁ ଜଣାଯାଉଚି ।

ବେତନଟୀର ଘଞ୍ଚ ଅରମା ଭିତରୁ ଡାମରାକାଉ ଡାକଯାଏ କା-କା-କା । ବଣ, ଲଟା, ମୁଣ୍ଡିଆ ସମସ୍ତେ ଯିମିତି ଜୀଅନ୍ତା ମଣିଷ ପରି ତୁହାଇ ତା କାନ ଭିତରେ ଡାକଯାନ୍ତି ଆ-ଆ-ଆ ।

ପହଲ ଦେଖିଲା ତଳ ଗାଁ ରାମା ଗଉଡ଼ର ମଡ଼ାଟା । ତା ମଲା ମୁହଁରେ ଟହ-ଟହ ଉଛୁଳା ହସ; ଆଉ ଦୂରରେ ଗୋଟାଏ କ'ଣ ସଅଁ ସଅଁ ହୋଇ ଚାଲୁଚି !!!

ପହଲ ଭୟରେ ଚର୍ ଚରେଇ ଉଠି ବେହୋସ ହୋଇ ତଳେ ଗୋଟାଏ ମୁନିଆଁ ପଥର ଉପରେ କଗୁଡ଼ି ହୋଇ ପଡ଼ିଲା ।

ତହିଁ ଆରଦିନ ପତର-ଗୋଟେଇ ଟୋକାଏ ଧାଇ ଗାଆଁରେ ରାଷ୍ଟ୍ର କଲେ— ‘ପହଲ ପୁଲୁପୁଲୁ ହୋଇ ଧକଉଚି । ଏଇନା କି ଆଉ ଟିକେ ।’

ଛେଳି-ଜଗୁଆଳି ଟୋକା ଯାଇ ସାହି ମଝିରେ ହାତ ଗୋଡ଼ ହଲେଇ କହିଲା— ‘ଦିଟା ଯମଦୂତ ପହଲକୁ ଜଗି ବସିଚନ୍ତି । ମୁହଁଗୁଡ଼ାକ ତାଙ୍କର ବଳଦ ପରି । ସେ ଧୋ-ଧୋ କରିଦବାରୁ ସେମାନେ ପଳାଇଗଲେ ।’

ଗାଆଁର ଦି'ଚାରି ଜଣ ଭେଣ୍ଡିଆ ଯାଇ ଦେଖିଥିଲେ ଗୋଟେ ପଥରସନ୍ଧିରେ

ମୁଣ୍ଡ ଗେଞ୍ଜି ପହଲି ପଡ଼ିଛି ! ତା' ଖପୁରିରୁ ଫାଳେ ଛିଡ଼ିଯାଇ ଦନ୍ତ ବାହାରିପଡ଼ିଛି ।

ଖବର ପାଇ ସେଇ ରାତିରେ ଗେଲବୋଉ ଆଇଲା । ସେ ଗିରସ୍ତକୁ ଶୁଧୁଅ କରି ଗୋରୁମରା ପାତକରୁ ଉଦ୍ଧାର କରିବା ଲାଗି ବାପଘରୁ କିଛି ଟଙ୍କା ଧରି ଆଇଥିଲା । ସେହି ରାତିରେ ତାକୁ ଟିକିଏ ପହଲି ପାଖକୁ ନେଇଯିବା ପାଇଁ ସେ କେତେ ଲୋକଙ୍କ ପାଖରେ କେତେ ନେହୁରା ହେଲା; ମାତ୍ର ଏତେ ବଡ଼ ଗାଆଁଟାରେ ଜଣେ ହେଲେ କେହି ରାତିଅଧରେ ମୁଣ୍ଡିଆ ଉପରକୁ ଯିବାକୁ ମଙ୍ଗିଲେ ନାହିଁ ।

ବଡ଼ି ସକାଳୁ ଗେଲବୋଉ ମୁଣ୍ଡିଆ ଉପରକୁ ଯାଇ ବାଉରୁଣୀ ଟୋକାଙ୍କ-ଠାରୁ ସନ୍ଧାନ ନେଇ ଦେଖିଲା, ପହଲି ମରିଗଲାଣି । ପାଟିରୁ ଫେଣ ବାହାରି ପଡ଼ିଛି, ଆଖି ଖୋସି ହୋଇ ଯାଇଛି, କାନପାଖ ଖପୁରିରୁ ଫାଳେ କେନା କେନା ହୋଇ କୁଆଡ଼େ ଉଡ଼ିଯାଇଛି ।

ତା ଆଖିରୁ ଲୁହ ମରିଯାଇଥିଲା । ସେ କେବଳ ବଲବଲ ହୋଇ ସେ ଆଡ଼କୁ ଅନାଇ ରହିଲା ।

ଅଣଶୁଧୁଆ ପହଲିର ମୁର୍ଦ୍ଦାର କପିଛ ହଠିବ—ଏ କଥା ନେଇ ଗାଆଁରେ ଭାରି ପ୍ରକୃତର୍କ ଚାଲିଥିଲା ।

ଗେଲବୋଉ ଗିରସ୍ତକୁ ଶୁଧୁଅ କରିବା ପାଇଁ ବାପଘରୁ ଆଣିଥିବା ଦଶଟି ଟଙ୍କା ପଣତକାନିରୁ ଗାଆଁର ମୁରବିମାନଙ୍କ ହାତକୁ ବଢ଼ାଇ ଦେଇ ନମ୍ର ହୋଇ ସମସ୍ତଙ୍କ ଗୋଡ଼ତଳେ ପଡ଼ିଗଲା ।

ବ୍ରାହ୍ମଣ ଗୋସାଇଁ ଆଉ ଜାତଭାଇମାନେ ଖୁସି ହୋଇ ପହଲିର ମୁର୍ଦ୍ଦାରକୁ ଆଶୀର୍ବାଦ କଲେ ।

# ଗୋପୀ ସାହୁର ଦୋକାନ

## ଅନନ୍ତ ପ୍ରସାଦ ପଣ୍ଡା

ସଡ଼କ ପାଖରେ ସେଇ ଅତି ପୁରୁଣା ଝଙ୍କାଳିଆ ବରଗଛଟା ସେହିପରି ଛିଡ଼ା ହୋଇ ରହିଛି, କେତେ ଯୁଗ ଯୁଗ ଧରି । ଗଛଟିର ମୂଳଟି କାଳର କରାଳ-କବଳରେ କେଉଁ ଦିନୁ କ୍ଷୟ ପ୍ରାପ୍ତ ହୋଇଗଲାଣି, ତାର ଠିକଣା ନାହିଁ; କିନ୍ତୁ ଗଛଟିକୁ ଏତେଦିନ ଯାଏ ବଞ୍ଚାଇ ରଖିଛି ତାର ସ୍ଥୂଳ ଛଅଟି ବଡ଼ ମୋଟା ମୋଟା ଓହଳ—ଯାହା ମାଟି ଭିତରେ ପ୍ରବେଶ କରି ମୂଳର କାର୍ଯ୍ୟ ଚଳାଇନେଉଛି ।

ଗଛଟି ତାର ଜନ୍ମଠାରୁ ଏତେ ଦିନ ଯାଏ ଦେଖି ଆସୁଛି ଦୁନିଆର କେତେ ପରିବର୍ତ୍ତନ । ଯେତେବେଳେ ତାର ଜନ୍ମ ହୋଇଥିଲା, ସେତେବେଳେ ଏଠାରେ ନ ଥିଲା ଏପରି ପକ୍କା ସଡ଼କ । କିମ୍ବା ସଡ଼କଟିଏ ବି ନ ଥିଲା । କେବଳ ଗୋଟିଏ ବଙ୍କା ବଙ୍କା ଗାଉଁଲି ଚଲା ରାସ୍ତା ଏହି ଅଞ୍ଚଳରେ ଚାଲିଯାଇଥିଲା କେଉଁ ସୁଦୂର ଗ୍ରାମକୁ । ସେତେବେଳେ ପଥିକମାନଙ୍କର ଶ୍ରମ ନିବାରଣ ପାଇଁ କେଉଁ ମୁକ୍ତିପ୍ରୟାସୀ ସନାତନ ଏଇ ବଟ ବୃକ୍ଷଟିର ବୀଜ ରୋପଣ କରିଥିଲା ସେ ସ୍ଥାନରେ । ଏ ବଟବୃକ୍ଷଟି ରୋପଣ କରି ସେଇ ସନାତନଟିର ମୁକ୍ତି ହେଲା କି ନାହିଁ ଜଣାନାହିଁ । ହୁଏତ ଆଜିକାଲିର ନବ୍ୟ ସଭ୍ୟ ଯୁବକ ଯୁବତୀ ତାର ଏପରି କୁସଂସ୍କାରାଚ୍ଛନ୍ନ କାର୍ଯ୍ୟ ଦେଖି ହସି ଅସ୍ଥିର ହେବେ; କିନ୍ତୁ ତାର କାର୍ଯ୍ୟଟି ଯେ ଥିଲା ଲୋକସେବାର ପରମ ଆଦର୍ଶ, ଏଥିରେ କୌଣସି ସନ୍ଦେହ ନାହିଁ । ସେ ଯାହାହେଉ, ଗଛଟି ଅଦ୍ୟାବଧି ଛିଡ଼ା ହୋଇ ରହିଛି । କେତେ ପଥଶ୍ରାନ୍ତ ପଥିକ ତାର ମୂଳରେ ଆଶ୍ରୟ ନେଇ ବୈଶାଖର ମୁଣ୍ଡଫଟା ଖରାରୁ ଆତ୍ମରକ୍ଷା କରିଛନ୍ତି, କିଏ ହିସାବ ରଖିଛି ?

ସେଇ ବରଗଛଟି ସେଇପରି ଛିଡ଼ା ହୋଇ ଦେଖିଛି ଦୁନିଆର କେତେ ଅଭାବନୀୟ ପରିବର୍ତ୍ତନ । ସେଇ ବଙ୍କା ବଙ୍କା ଚଲା ରାସ୍ତାଟି ବଦଳିଲେ ସେଠାରେ ଯେତେବେଳେ ଗୋଟିଏ ଧୂଳିଆ ମାଟି ସଡ଼କ ନିର୍ମିତ ହେଲା, ସେତେବେଳେ ଶହ ଶହ ଶଗଡ଼ ସେଇ ରାସ୍ତା ଦେଇ ଚାଲିଲା । ସେତେବେଳେ ମଧ୍ୟ ବୃକ୍ଷଟି ଥିଲା ଶଗଡ଼ିଆ-ମାନଙ୍କର ଏକ ବିଶ୍ରାମସ୍ଥଳୀ । ବୈଶାଖର ତତଲା ଝାଞ୍ଜି ଓ ମୁଣ୍ଡଫଟା ଖରାର ଦାହ

ସମ୍ଭାଳି ନ ପାରି ଶଗଡ଼ିଆ ଯେତେବେଳେ ସେହି ବରଗଛ ମୂଳରେ ତାର ଶଗଡ଼ ଫିଟାଇ ଦେଇ, ଯୋଡ଼ା ବା ବଳଦ ହଳକୁ ଗଛ ଛାହାଁରେ ବାନ୍ଧି ଦେଇ ଛାଇତଳେ ଗାମୁଛା ପାରି ଶୋଇପଡ଼େ, ସେତେବେଳେ ତାର ପ୍ରାଣ ଏକ ଅପୂର୍ବ ପୁଲକରେ ପୂରି-ଉଠେ । ଗଛଟି ଯେ ଖାଲି ଖରାତାପରୁ ପଥିକ ଶଗଡ଼ିଆମାନଙ୍କୁ ରକ୍ଷା କରେ, ତାହା ନୁହେଁ, ପୁଷ ମାସର ହାଡ଼ଭଙ୍ଗା ଶୀତର ଦାଉରୁ ମଧ୍ୟ ରକ୍ଷା କରେ ! ଶୀତ ରାତିରେ ଶଗଡ଼ିଆର ହାତଗୋଡ଼ ଜୋର୍ ମାରିଗଲେ ସେ ଏହି ବରଗଛ ତଳେ ଶଗଡ଼ ଫିଟାଇ ଦେଇ ଧୂନି ଜାଳି ଦେଇ ଦେହ ସେକି ହୋଇ ଶୋଇପଡ଼େ ।

ବାଟୋଇମାନଙ୍କୁ ବିଶେଷତଃ ଶଗଡ଼ିଆମାନଙ୍କୁ ଖାଦ୍ୟପେୟ ଯୋଗାଇବା ପାଇଁ ଗୁଡ଼ିଆ ଗୋପୀ ସାହୁ ସେହି ବରଗଛଟି ମୂଳରେ ମେଲେଇଥିଲା ତାର କ୍ଷୁଦ୍ର ଦୋକାନଟି । ବରଗଛର ଗୋଟିଏ ବଡ଼ ଓହଳର ମଝିରେ ତାର ମାଟି ବାଉଁଶର ତିଆରି କ୍ଷୁଦ୍ର ଦୋକାନ ଘରଟି । ଦୋକାନଟି ଯେତେବେଳେ ଆରମ୍ଭ କରିଥିଲା ସେତେବେଳେ ଗୋପୀ ସାହୁର ବୟସ ଥିଲା ମୋଟେ କୋଡ଼ିଏ ପଚିଶ । ତାର ଦୋକାନ ଘରେ ଚାଉଳ, ପରିବାଠୁଁ ଆରମ୍ଭ କରି ହାଣ୍ଡି, କାଠ, ତେଲ ଲୁଣ ପର୍ଯ୍ୟନ୍ତ ସବୁ ଜିନିଷ ମହଜୁଦ ଥାଏ । ମୁଢ଼ି, ଚୁଡ଼ା ଓ ଗୁଡ଼ର ମଧ୍ୟ ଅଭାବ ନଥାଏ ।

ଦିନ ଦି'ପହରେ କିମ୍ବା ସଞ୍ଜବେଳେ ଯେଉଁ ଶଗଡ଼ିଆମାନେ ବିଶ୍ରାମ ନେବା ପାଇଁ ସେଠି ଅଟକିଯାଆନ୍ତି, ସେମାନେ ଗୋପୀ ସାହୁ ଦୋକାନରୁ ଚାଉଳ, ପରିବା, ହାଣ୍ଡି, କାଠ ଇତ୍ୟାଦି କିଣି ନେଇ ବରଗଛ ମୂଳରେ ଗୋଟିଏ ଗାତ ଖୋଳି ଦି' ଖଣ୍ଡେଟି ଚିମା ପଥର ଦେଇ ଭାତ ରାନ୍ଧିପକାନ୍ତି । ଦିନ ଗଡ଼ିଲେ ବା ସକାଳୁ ଉଠି ପୁଣି ଯେତେବେଳେ ସେମାନେ ଶଗଡ଼ ଯୋଚି ବାହାରନ୍ତି—ଗୋପୀ ସାହୁଠାରୁ ମୁଢ଼ି, ଚୁଡ଼ା, ଗୁଡ଼ ଓ ଧୂଆଁପତ୍ର ଇତ୍ୟାଦି ନେଇ ଗାମୁଛାରେ ବାନ୍ଧି ଉପେନ୍ଦ୍ର ଭଞ୍ଜ ବା କବିସୂର୍ଯ୍ୟଙ୍କର ରସିଆ ଗୀତ ଦି'ପଦ ବୋଲି ବୋଲି ବାହାରିଯାଆନ୍ତି । ଗୋପୀ ସାହୁର ଆଛା ଦି' ପଇସା ଲାଭ ହୁଏ ।

ଏମିତି କେତେଦିନ କଟିଗଲା । ତା'ପରେ ଜିଲାବୋର୍ଡର କଣ୍ଟ୍ରାକ୍ଟର ଓ ଇଞ୍ଜିନିୟରମାନେ ଆସି ସେ କଚ୍ଚା ରାସ୍ତାଟିକୁ ମାପଚୁପ କଲେ । ଗୋପୀ ସାହୁ ପଚାରି ବୁଝିଲା ଯେ, ସରକାର ରାସ୍ତାଟିକୁ ପକ୍କା କରିବେ । ଗୋପୀ ସାହୁର କପାଳ ଆହୁରି ଫିଟିଗଲା । କେତେ କୁଲି ମଜୁରିଆ ଆସି କାମରେ ଲାଗିଲେ । ଦିନାକେତେ ଗୋପୀ ସାହୁର ଭାରି ଲାଭ ହେଲା । ସେ ତାର ମାଟି କୁଡ଼ିଆଟି ଭାଙ୍ଗି ସେହି ସ୍ଥାନରେ ଇଟା ପଥରରେ ଦୁଇ ବଖରା ଘର ତିଆରି କଲା । ଦୋକାନ ପାଖକୁ ଗୋଟିଏ ଚା' କଫି ହୋଟେଲ ମଧ୍ୟ ଯୋଡ଼ିଦେଲା ।

ଗୋପୀର ବୟସ ହେଲାଣି ସେତେବେଳେ ତିରିଶ କି ଚାଳିଶ । ଏତେଦିନ ଯାଏ ତାର କୌଣସି ଭାବନା ନ ଥିଲା; କିନ୍ତୁ ଦୋକାନର ବୃଦ୍ଧି ଓ ହାତରେ କିଛି ପଇସା ଜମିବା ପରେ ସେ ଅନୁଭବ କଲା ଗୋଟାଏ ଅଭାବ । ତାକୁ ବୋଧ ହେଲା ସତେ ଯେପରି ସାରା ଦୁନିଆଟା ଭିତରେ ସେ ଭାରି ଏକୁଟିଆ ! ତା'ପରେ ଦୋକାନରେ ସାରାଦିନ ବସି ବସି ଯେତେବେଳେ ନିଜେ ଖାଇବାପାଇଁ ରୋଷେଇ କରିବସେ, ବା ଖାଇ ସାରି ରାତି ଅଧରେ ଆପଣାର କ୍ଷୁଦ୍ର ଖଟଟି ଉପରେ କନ୍ଥା ଟିଏ ପାରି ଦେଇ ଶୋଇବାକୁ ଯାଏ, ସେତେବେଳେ ତା'ର ମନରେ ଗୋଟିଏ ଅଭାବର ତୀବ୍ର କଷାଘାତ ସେ ଅନୁଭବ କରେ । ଗୋପୀ ଭାବିଲା, ବାହାହେଲେ ବୋହୂଟିଏ ଘରକୁ ଆଣିଲେ, ତାର ଭାରି ସୁଖ ହୁଅନ୍ତା ପରା ! ହାତରେ ତ ପଇସାର ଅଭାବ ନାହିଁ, ସୁତରାଂ କନ୍ୟାର ଅଭାବ ହେଲା ନାହିଁ । ଅଳ୍ପଦିନ ଭିତରେ ଗୋଟିଏ ନୂଆ ବୋହୂ ଆସି ଗୋପୀର ନିଃସଙ୍ଗ ଜୀବନର ଅଭାବଟି ପୂରଣ କରିଦେଲା ।

ଦିନ ପରେ ଦିନ ପାଣିସୁଅ ପରି ବହିଗଲା । ଗୋପୀର ମନେ ହେଲା, ସତେ ଯେପରି ଦୁନିଆଟା ଗୋଟାଏ ସୁଖର ଖେଳଘର ! ନୂଆ ବୋହୂଟି ପ୍ରଥମେ ପ୍ରଥମେ ଓଢ଼ଣା ଟାଣି ଦୋକାନର ଭିତର ଗମ୍ଭୀରିରେ ବସିରହୁଥାଏ; କିନ୍ତୁ କ୍ରମେ କ୍ରମେ ତାର ସେ ସଲଜ୍ଜ ଭାବ କଟିଗଲା । ସେ ହେଲା ଦୋକାନର ସର୍ବମୟୀ କର୍ତ୍ତ୍ରୀ ଓ ଗୋପୀ ହେଲା ତାର ଆଜ୍ଞାବହ ଭୃତ୍ୟ ମାତ୍ର । କିନ୍ତୁ ସେଥିରେ ଗୋପୀର ମନରେ ମୋଟେ କଷ୍ଟ ହୁଏନାହିଁ; ବରଂ ଆନନ୍ଦାତିଶଯ୍ୟରେ ସେ ଅନେକ ସମୟରେ ପୁଲକିତ ହୋଇଉଠେ । ହାତରେ ଯାହା କିଛି ଟଙ୍କା ପଇସା ଜମା ହୁଏ, ସେଥିରେ ସେ ସ୍ତ୍ରୀ ପାଇଁ ଅଣ୍ଟାପାଟିଆ, ନୋଥ, ନୋଳି ଇତ୍ୟାଦି ଅଳଙ୍କାର ଗଢ଼ି ପକାଏ ।

ଏହିପରି ଭାବରେ ଦି' ତିନିବର୍ଷ ବିତିଗଲା ପରେ ଗୋପୀ ଆଉ ତା ସ୍ତ୍ରୀ ଉଭୟ ଅନୁଭବ କଲେ ଆଉ ଗୋଟିଏ ନୂଆ ଅଭାବ । ପିଲାଟିଏ ପାଇବା ପାଇଁ ଗୋପୀପତ୍ନୀର ଭାରି ଇଚ୍ଛା ହେଲା । ସେଥିପାଇଁ ଦାନଧର୍ମରେ ସ୍ୱାମୀ ସ୍ତ୍ରୀ ଅକୁଣ୍ଠିତ ଚିତ୍ତରେ ଖର୍ଚ୍ଚ କରିଦେଲେ । ଲିଙ୍ଗରାଜବାବାଙ୍କ ମନ୍ଦିରରେ ଯାଇ କେତେ ଥର ପୂଜା ଅର୍ଚ୍ଚନା କଲେ । ଗାଁର ଗୋସେଇଁଙ୍କଠାରେ କେତେ ମାନସିକ କଲେ । ଶେଷରେ ଗାଁ ବାସୁଲେଇଙ୍କଠାରେ ଗୋଟାଏ କଳାବୋଦା ଓ ଯୋଡ଼ାଏ କଳା କୁକୁଡ଼ା ବଳି ଦିଆଇଲେ —ଗାଁର ଅନ୍ଧବିଶ୍ୱାସ ଅନୁସାରେ ।

ବାସୁଲେଇଙ୍କ କୃପା-କଟାକ୍ଷରୁ ହେଉ ବା ବାବାଙ୍କ ମହିମାରୁ ହେଉ ଷଠୀଦେବୀ ଗୋପୀର ସ୍ତ୍ରୀଙ୍କୁ ବର ଦେଲେ । ଶୁଭକ୍ଷଣରେ ଗୋପୀର ଗୋଟିଏ କନ୍ୟା ସନ୍ତାନ ଜନ୍ମ ହେଲା । ସ୍ୱାମୀ ସ୍ତ୍ରୀ ଉଭୟଙ୍କ ଆନନ୍ଦ ଉଛୁଳି ପଡ଼ିଲା । ନବଜାତ କନ୍ୟାଟିର ଦୀର୍ଘ ଜୀବନ

କାମନାରେ ବୁଢ଼ୀ ବାସୁଳେଇଙ୍କଠାରେ ପୁଣି ଯୋଡ଼ାଏ ନସ୍ୟଦ୍ଧ ଗୁଗ୍‌ଗୁଳି ବଳି ଦିଆଗଲା। ଲଙ୍କୁ ବାବାଙ୍କଠାରେ କେତେ ପୂଜା ଅର୍ଚ୍ଚନା ହେଲା । ମହାପ୍ରଭୁଙ୍କର ଦୟାଭଣ୍ଡାର ବୋଧହୁଏ ଏଥର ଉଛୁଳି ପଡ଼ିଲା । ପରବର୍ଷ କାର୍ତ୍ତିକ ମାସକୁ ପୁଣି ଗୋଟିଏ କନ୍ୟା । ଏହିପରି ଲଗାଦରେ ପାଞ୍ଚ ବର୍ଷରେ ପାଞ୍ଚୋଟି କନ୍ୟା ପାଇ ସାହୁଆଣୀ ଯେତେବେଳେ ପାଞ୍ଚଟିର ମାଆ ହେଲେ, ସେତେବେଳେ ମନକଷ୍ଟରେ ସ୍ୱାମୀଙ୍କୁ ଡାକି କହିଲେ—ହଇହେ, ବିଧାତା ବାପୁଡ଼ାର କଣ କିଛି ବିଚାର ନାହିଁ, ବର୍ଷକୁ ବର୍ଷ ଏ ମାଈପିଲାଗୁଡ଼ାକ ଜନ୍ମ ଦେଉଛନ୍ତି । ଯେତେ ହେଲେ ତ ଏଗୁଡ଼ାକ ପରଘରୀ, ପୁଅପିଲାଟିଏ ଭଲ ହୁଅନ୍ତା ।

ସାହୁ ଦମ୍ପତି ପୁଣି ଅନୁଭବ କଲେ ଏକ ଅସହନୀୟ ଗୁରୁ ଯନ୍ତ୍ରଣା । ପୁଅପିଲାଟିଏ ପାଇବା ପାଇଁ କାମନା କରି ଗୋପୀ ଏଥର ବାସୁଳେଇଙ୍କଠାରେ ଯୋଡ଼ାଏ କଳାବୋଦା ଓ ଯୋଡ଼ାଏ କଳା ଅଣ୍ଡିରି କୁକୁଡ଼ା ବଳି ପକାଇଲା । ଠାକୁରାଣୀ ବୋଧହୁଏ ପ୍ରସନ୍ନ ହେଲେ । ପାଞ୍ଚଝିଅ ପରେ ସାହୁ ଦମ୍ପତି ଯେତେବେଳେ ପୁତ୍ରରତ୍ନଟିଏ ଲାଭକଲେ, ସେତେବେଳେ ସେମାନଙ୍କର ଆନନ୍ଦ କହିଲେ ନ ସରେ । ଏଥର ପୁଅର ଦୀର୍ଘ ଜୀବନ କାମନା କରି ଗାଁ ବାସୁଳେଇଙ୍କଠାରୁ ଆରମ୍ଭ କରି ବଡ଼ଠାକୁରାଣୀ ଯେ ତାରାତାରିଣୀ, ତାଙ୍କଠାରେ ଗୋଟାଏ ପୋଡ଼ ଓ ଯୋଡ଼ାଏ କାଳିଆ ବୋଦା ବଳି ପକାଇଲେ ।

× × × ×

ଏହା ଭିତରେ ରାସ୍ତାକାମ ସରିଗଲାଣି । ଗୋପୀ ସାହୁର ଦୋକାନ ସାମନାର ସେଇ ଧୂଳିଆ ମାଟି ସଡ଼କଟା ଏବେ ପାଲଟିଗଲାଣି ଗୋଟାଏ ପଥରଗଡ଼ା ପକ୍କା ସଡ଼କ । କୁଲିଗୁଡ଼ାକ ଯେ ଯୁଆଡ଼େ ସେଠାରୁ ଚାଲିଗଲେ । ସୁତରାଂ, ଗୋପୀ ସାହୁ ଦୋକାନର ଆୟ ବହୁତ କମିଗଲାଣି; କିନ୍ତୁ ଗୋଟାଏ ପେଟକୁ ବର୍ତ୍ତମାନ ହେଲେଣି ଆଠ ପେଟ; ତା ଉପରେ ପୁଅଝିଅଙ୍କ ମଙ୍ଗଳ କାମନାରେ ବାର ପୂଜେଇ ତେର ପର୍ବରେ ପୂଜା, ଅର୍ଚ୍ଚନା, ବଳି ଇତ୍ୟାଦିରେ କେତେ କଣ ଖର୍ଚ୍ଚ ହୋଇଗଲାଣି; କିନ୍ତୁ ଗୋଟାଏ କଣାର କ୍ଷୁଦ୍ରଙ୍କରେ ସାହୁ ଦମ୍ପତି ସେଥିପ୍ରତି ମୋଟେ ନଜର ଦେଇ ନ ଥିଲେ । ତେବେ ଶଗଡ଼ିଆମାନଙ୍କଠାରୁ ଯାହା ଦି'ପଇସା ମିଳେ, ସେଥିରେ ଗୋପୀ କୌଣସିମତେ କଷ୍ଟମଷ୍ଟେ ପରିବାରଟି ଚଳାଇନିଏ । କିଛି ଦିନ ପରେ ବଡ଼ ଦି'ଝିଅ ବଡ଼ା ହୋଇଗଲେ । ବଡ଼ଘରକୁ ଟିକିଏ ଜାକଜମକରେ କରିବାପାଇଁ ସାହୁଆଣୀ ଜିଦ୍ ଲଗାଇଲା । ସୁତରାଂ, ଗୋପୀ ସାହୁ ବାଧ୍ୟ ହୋଇ ସାହୁକାର ଘରୁ କିଛି ଋଣ ଆଣି କାମଟା ଚଳେଇ ନେଲା । ପାଖ ପଡ଼ୋଶୀ ଜାତଭାଇମାନଙ୍କୁ ଆଚ୍ଛା ଗ୍ରାସେ ଖାଇବାକୁ ଦେଲା । ସମସ୍ତେ ଧନ୍ୟ ଧନ୍ୟ କଲେ ।

ଦିନେ ସକାଳବେଳା ଗୋପୀ ସାହୁ ବସି ଦୋକାନ ପିଣ୍ଡାରେ ଦାନ୍ତ ଘଷୁଛି, ଗୋଟାଏ ଘୋ-ଘୋ ଶବ୍ଦ ଶୁଭିଲା । ପିଲାଭୁଆଙ୍କ ଘର ଭିତରୁ ଦାଣ୍ଡକୁ ଧାଇଁ ଆସିଲେ । ସାହୁଆଣୀ ମଧ୍ୟ ଘରକାମ ଛାଡ଼ି ଧାଇଁ ଆସିଲା । ଗୋପୀ ଦୃଷ୍ଟି ଦେଖିଲା—ଗୋଟାଏ କଳଗାଡ଼ି ଧାଇଁ ଆସୁଛି ଧୁଁ ଧୁଁ ଫୁଁ କରି । କେତେ ଯାତ୍ରୀ—କୋଡ଼ିଏ କି ପଚିଶ । ଗୋପୀ ଭାବିଲା, ତା କପାଳ ଆଗେଇଲା । ଏତେ ଯାତ୍ରୀ ଏକାବେଳକେ ଯଦି ପଇସା ପଇସାକର ଜିନିଷ କିଣନ୍ତି, ତେବେ ତ ପାଞ୍ଚଅଣା କି ସାତଅଣାର ବିକି ହେବ ଏକା ଥରକେ । ସେଥିପାଇଁ ସାହୁ ତରତର କରି ଦୋକାନକୁ ଯିବାପାଇଁ ଉଠିପଡ଼ିଲା; କିନ୍ତୁ କଳଗାଡ଼ିଟା ଯେତେବେଳେ ତାର ଦୋକାନ ପ୍ରତି ଟିକିଏ ନଜର ନ ଦେଇ ଧୂଳି ଉଡ଼ାଇ ଧାଇଁଗଲା, ସେତେବେଳେ ଅଜାଣତରେ ତାର ବକ୍ଷପଞ୍ଜର ଭେଦ କରି ବାହାରି ପଡ଼ିଲା ନୈରାଶ୍ୟର ଗୋଟିଏ ଦୀର୍ଘଶ୍ୱାସ ।

ଗୋପୀ ଭାବିଲା—ସକାଳଟାରୁ ଖିନା କଳଗାଡ଼ି ଧାଇଁଗଲା; କିନ୍ତୁ ଦି'ପହରର ମୁଣ୍ଡଫଟା ଖରାବେଳେ କିମ୍ବା ଘୋର ଅନ୍ଧାରରେ ନିଶ୍ଚୟ ଏଇ ଗଛମୂଳରେ ଆଶ୍ରୟ ନେବ । ସେତେବେଳେ ନିଶ୍ଚୟ ତାର ହାଣ୍ଡି, କାଠ, ଚାଉଳ କେତେ ବିକାଯିବ ହେବ; କିନ୍ତୁ ଦ୍ୱିପ୍ରହରରେ ଯେଉଁ କଳଗାଡ଼ି ଆସିଲା, ସେଟା ଏ ମୁଣ୍ଡଫଟା ଖରାକୁ ଖାତିର ନ କରି ଗୋପୀ ସାହୁର ଦୋକାନଘର ଉପରେ ଟିକିଏ ମାତ୍ର ଦୃଷ୍ଟି ନ ପକାଇ କିମ୍ବା ଏତେ କାଳର ଆଶ୍ରୟସ୍ଥଳ ଏଇ ପୁରୁଣା ବରଗଛର ଛାଇ ପ୍ରତି ଟିକିଏ ନଜର ନ ଦେଇ ଧାଇଁ ଚାଲିଗଲା ଗୋଟାଏ ନିର୍ମମ ଦୈତ୍ୟପରି । ଗୋପୀର ଆଶାଲତା ମୂଳରୁ ଗଲା ଛିଣ୍ଡି । ସନ୍ଧ୍ୟାବେଳେ ପୁଣି ମଟର ବସ୍ ଆସିଲା; କିନ୍ତୁ ରହିଲା ନାହିଁ ।

ଗୋପୀ ଭାବିଲା—ହେଉ, କଳଗାଡ଼ିଟା ଯଦି ମଣିଷ ବୋହୁଛି, ମାଲପତ୍ର ତ ସବୁ ଯିବ ବଳଦ ଶଗଡ଼ରେ; କିନ୍ତୁ ଗୋପୀର ସେ ଆଶାଲତାର ମୂଳରେ କୁଠାରାଘାତ କରି ଯେଉଁ ଦିନ ଗୋଟାଏ ମାଲବୁହା ଲରି ସେଇ ବାଟେ ଧାଇଁଗଲା, ଗୋପୀର ମନ ଭାଙ୍ଗିଗଲା । ବଳଦ ବା ଘୋଡ଼ା ଶଗଡ଼ର ସଂଖ୍ୟା ଗଲା କମି । ଗୋପୀର ଆୟ ଗଲା ବହୁତ କମି; କିନ୍ତୁ ଖର୍ଚ୍ଚ ଗଲା ବଢ଼ି । ଗୋପୀ ଅନୁଭବ କଲା ଅଭାବର ତୀବ୍ର କଷାଘାତ ।

× × × ×

ଥାହୁର ଦିନୋଟି ଝିଅର ବାହାଘର ପାଇଁ ସାହୁକାର ଘରୁ ଆଉ କିଛି ଋଣ ଆଣିଲା । ଅଭାବ ଅନାଟନରେ ପଡ଼ି ଗୋପୀ ଓ ତାର ସ୍ତ୍ରୀ ବଡ଼ ରୁଗଣ ହୋଇ ପଡ଼ିଲେ । ପୁଅ ପିଲାଟି ମଧ୍ୟ ଖାଦ୍ୟ ଅଭାବରୁ ବାତଗ୍ରସ୍ତ ହୋଇ ପଡ଼ିଲା ।

× × × ×

ଗାଁରେ ଲାଗିଲା ବସନ୍ତ । କେତେ ଯେ ଲୋକ ମଲେ, ତାର ଠିକଣା ନାହିଁ । ଦିନେ ହଠାତ୍ ଗୋପୀ ସାହୁର ପୁଅକୁ ହେଲା ବସନ୍ତ । ବୁଢ଼ାଙ୍କର ଦେହ ମନ ଥର୍କି ପଡ଼ିଲା । ବାକି ଯାହା ଅଳଙ୍କାର ଥିଲା, ସେତକ ବିକାଭିଙ୍ଗା କରି ପୁଅର ଜୀବନରକ୍ଷା ପାଇଁ ପୂଣି ବାସୁଲେଇ ଠାକୁରାଣୀଙ୍କଠେଇଁ କାଳିଆବୋଦା ଓ କାଳିଆ କୁକୁଡ଼ା ବଳି ଦେଲେ; କିନ୍ତୁ ଏଥର କାହିଁକି ଠାକୁରାଣୀଙ୍କ କୃପା-କଟାକ୍ଷ ପଡ଼ିଲା ନାହିଁ । ପୁଅଟି ଚାଲିଗଲା ।

ତା ପରେ ପରେ ବୁଢ଼ାକୁ ଧରିଲା ବସନ୍ତ । ଦେହରେ ଛୁଞ୍ଚି ବସାଇବାକୁ ଆଉ ନାହିଁ । ହେଲେ ବୁଢ଼ାର ଦୁଃଖ ନାହିଁ । ସେ ଡାକୁଛି, "ହେ ମା ବାସୁଲେଇ, ମୋ ପୁଅକୁ ନେଇଛ, ମୋତେ ଭଲ ଦୟାକରି ନେଇଯାଅ;" କିନ୍ତୁ ବୁଢ଼ାର ଏ ଦାରୁଣ ଡାକ ଠାକୁରାଣୀଙ୍କର ପାଷାଣ ହୃଦୟ ଭେଦପାରିଲା ନାହିଁ । ବୁଢ଼ା ପଡ଼ି ପଡ଼ି ଭଲ ହେଲା; କିନ୍ତୁ ତାର ଆଖି ଯୋଡ଼ିକ ଚିରଦିନ ପାଇଁ ହଜିଗଲା । ପଥି ଧରିଛି କି ନାହିଁ ସାହୁକାର ଘର କୋର୍ଟରେ ନାଲିସ୍ କରି ବୁଢ଼ାବୁଢ଼ୀଙ୍କୁ ଘରୁ ବାହାର କରି ଦେଇ ଯାହା କିଛି କଂସାବାସନ ଥିଲା, ନିଲାମ କରି ନେଲେ ।

ବର୍ତ୍ତମାନ ବୁଢ଼ା-ବୁଢ଼ୀ ଯୋଡ଼ିକ ବଡ଼ ନିଃସ୍ୱ ହୋଇ ପଡ଼ିଲେ । ସେଇ ବରଗଛ ମୂଳରେ ଗୋଟିଏ କୁଡ଼ିଆ ଘରେ ଦିହେଁ ପଡ଼ିଥାନ୍ତି । ଦିନବେଳେ ମଟର ବସ୍ ଗଲାବେଳେ ବୁଢ଼ାହାତ ଧରି ବୁଢ଼ୀ ନେଇଯାଏ ରାସ୍ତାକଡ଼କୁ । ବୁଢ଼ୀ କହେ—"ହାତ ବଢ଼ାଇ ମାଗ ପଇସା ଅଧଲାଏ, କେତେ ବସ୍ ଯାଉଛି ।" କିନ୍ତୁ ବୁଢ଼ାର ପାଟି ଫିଟେ ନାହିଁ । ସେ ଅନୁଭବ କରେ ସତେ ଯେପରି ଏଇ ବସ୍‌ଗୁଡ଼ାକ ତାର ଦୁର୍ଗତିର ଏକମାତ୍ର କାରଣ । କ୍ରୋଧ ଓ ଅଭିମାନରେ ତାର କୋଟରଗତ ଜ୍ୟୋତିହୀନ ନୟନଦ୍ୱୟରୁ ବୋହିଯାଏ ଦୁଇଧାର ତତଲା ଲୁହ !

# କଳାପାହାଡ଼

## ରାଜକିଶୋର ରାୟ

ପ୍ରାଚୀ ନଦୀକୂଳ ଉପରେ ଏକ ଜନବସତି ଭିତରେ ସେହି ପରିବାରଟି । ହଠାତ୍ ଦିନେ ସେହି ପରିବାରରେ ଚଞ୍ଚଳତା ଦେଖାଗଲା ।

ପ୍ରାଚୀ ନଦୀର ବହୁ ଜଳ ବହିଯାଇଛି । କାଳ-କଲ୍ଲୋଳର ଛନ୍ଦମୁଖର ଅଜସ୍ର ସନ୍ଧ୍ୟା ବିତିଯାଇଛି; କିନ୍ତୁ ସେହି ସନ୍ଧ୍ୟାଟି ଜୟଶୀଳା ଓ ଲୋକକାନ୍ତ ଉଭୟଙ୍କର ମନରେ ଗୋଟିଏ ସାର୍ଥକ ସ୍ମୃତିରେଖା ଲେଖି ଦେଇଥିଲା ।

କାହାଣୀଟି ବହୁତ ଦିନର କାହାଣୀ । ଜୟଶୀଳା ସ୍ୱର୍ଗପୁରେ । ଲୋକକାନ୍ତ ବଞ୍ଚିରହିଛନ୍ତି । କେତୋଟି ନିରଳସ ମଧ୍ୟାହ୍ନ । ଅପରାହ୍ଣ ସନ୍ଧ୍ୟାରେ ସେ ପ୍ରାଚୀ ଆଡ଼କୁ ମୁହଁକରି କେତେ କଥା ଭାବନ୍ତି । ତାଙ୍କର କୀର୍ତ୍ତିଗୁଡ଼ିକ ବଡ଼ ପିଲାଳିଆ ଭଳି ଏବେ ସେ ମନେ ରଖନ୍ତି, ଅବଚେତନ ମନରୁ ଗୋଟାଏ କାତରମୟ ସ୍ୱପ୍ନ ବାହାରି ଆସି ତାଙ୍କର ଦେହ ଉପରେ ଗୁଡ଼େଇ ହୋଇ ସଦାଚଳିତ ଚକ୍ଷୁ ଦୁଇଟିରେ ତାଙ୍କୁ ଘେରି ଗ୍ରାସ କରି କହେ···

ହେ ଦୁରଭିସନ୍ଧି ପୁରୁଷ, ଖୁବ୍ କାମ କଲ । ହେ ମହାନ୍‌ଚେତା ବନ୍ଧୁ, ଠିକ୍ ରାଜପଥ ଉପରେ ନ ଯାଇ ଗଳିସନ୍ଧିରେ ପଶିଯାଇ ଯାହା ଆବିଷ୍କାର କଲ, ତାହା ବଡ଼ ବରିଷ୍ଠ ଓ ପ୍ରଶଂସନୀୟ । ଏବେ ତୁମର ପ୍ରାପ୍ୟ ହିସାବରେ ଦେଶ ଯାହା ଦେଇଛି, ତାହାର ଅତିରିକ୍ତ କେତେଗୁଡ଼ିଏ ଚୁମ୍ବନ ତୁମ ଅଙ୍ଗରେ ଦେଇଯାଉଛି, ତାହା ସଗ୍ରାସ୍ପୃହୀୟ ହେଲେ ବି ମୋର ଆଶା, ତୁମେ ଗ୍ରହଣ କରିବ ।

ଲୋକକାନ୍ତ ଶିହରିଉଠୁଥିଲେ । ପ୍ରାଚୀ ନଦୀର ଜଳ-ତରଙ୍ଗରେ ତାଙ୍କର ପୌରୁଷର ରୂପ ପ୍ରତିଫଳିତ ହେଉଥିଲା । ସାମାନ୍ୟ ଦୂରରେ ସର୍ବଶୁଭମୟୀ ମା' ମଙ୍ଗଳାଙ୍କର ଦେଉଳରୁ ଆରତି ଘଣ୍ଟାର ସ୍ୱନ ଭାସିଆସୁଥିଲା ।

ଲୋକକାନ୍ତ ସେଇ ସ୍ମରଣୀୟ ସନ୍ଧ୍ୟାରେ ବାହାରୁ ଧଇଁସଇଁ ହୋଇ ଦଉଡ଼ି ଆସି ଡାକ ପକାଇଲେ—

—ଜୟଶୀଳା, କବାଟ ଫିଟାଅ ।

ଜୟଶୀଳା ତଟବରରେ କବାଟ ଫିଟାଇ ଦେଖିଲେ ସ୍ୱାମୀ କାନ୍ଧ ଉପରେ କଅଣ ଗୋଟାଏ କାନ୍ଧେଇଛନ୍ତି ଓ ସେଇ ପଦାର୍ଥଟି ଉପରେ ତାଙ୍କର ଦୋପଟ୍ଟା ଗୁଡ଼ା-ହୋଇଛି । ପଦାର୍ଥଟିର ଲମ୍ବା ଅଛି, ଚଉଡ଼ା ଅଛି, ଉଚ୍ଚତା ଅଛି । ଓଜନ ଥିବାର ଜଣାଯାଉଥିଲା । ନ ହେଲେ ସ୍ୱାମୀ ତାହାକୁ ବୋହିଆଣି ଏପରି ଅଣନିଃଶ୍ୱାସୀ ହେଉ ନ ଥାନ୍ତେ ।

କବାଟ ପକାଅ, କିଳାଣି ଦେଇଦିଅ । ହେଇଟି, ମୁଁ ଏହାକୁ ଆଉ କାନ୍ଧରୁ ଓହ୍ଲାଇବି ନାହିଁ । ଜୟ ଦୁର୍ଗେ କହି ମୁଁ ଆସିଛି; ସେଇ ଦୁର୍ଗା ନାମ ଡାକି କାର୍ଯ୍ୟ ସମାପନ କରିବି । ଜୟଶୀଳା, ଦୀପଟା ଧର ତମେ ଘଣ୍ଟାଏ ଖଣ୍ଡେ କେବଳ ଦୁର୍ଗାନାମ ସ୍ମରଣ କର, ଆଉ ପ୍ରାର୍ଥନା କର ଯେପରି ସବୁ ବାଧାବିଘ୍ନ ବିପାକ ପରମେଶ୍ୱରୀ ଭଗବତୀଙ୍କ କୃପାରୁ ଉଭେଇଯିବ ।

ଜୟଶୀଳା ସ୍ୱାମୀଙ୍କର ଏ ରୂପ ଓ ଏ କଥାରେ ଜଡ଼ ହୋଇ କିଛି ସମୟ ରହିଗଲେ । ସେ ଭାବିଲେ ସ୍ୱାମୀ ନିଶ୍ଚୟ କିଛି ଚୋରି ଜିନିଷ ଘରକୁ ଆଣିଛନ୍ତି । ପୋଲିସ୍ ବୋଧହୁଏ ପଛେ ପଛେ ଆସୁଛି । ତାଙ୍କ ଆଖିଆଗରେ ଏ ସଂସାର ଜଳିଗଲା ଭଳି ମନେ ହେଲା । ସେ ତୀକ୍ଷ୍ଣ କଣ୍ଠରେ କହିଲେ :

—କଅଣ ଚୋରି ଜିନିଷ ? ଏମିତି ଚୋରଙ୍କ ଭଳି କାହିଁକି ହେଉଛ ? ଏ ଦୁର୍ବୁଦ୍ଧି କିଏ ଦେଲା ? ସୁଖେ ଦୁଃଖେ ସଂସାର ଚଳିଯାଉଛି । ଭଗବାନ୍ ଯେତେବେଳେ ଯାହା ଦେଇଛନ୍ତି, ସେତିକିରେ ମୁଁ ଚଳେଇନେଉଛି । ଏ କି ବ୍ୟବସାୟ ? ତୁମ ଗୋଡ଼ ଧରୁଛି, ତୁମେ ଯାହା ଆଣିଛ କେଉଁଠି ରଖିଦେଇ ଆସ, ନ ହେଲେ ପୋତିଦେଇ ଆସ । ପୁଲିସ ଯଦି ପଛେ ପଛେ ଆସୁଥାଏ, ତେବେ ସର୍ବନାଶ ।

ଲୋକକାନ୍ତ ଦେଖିଲେ ସ୍ତ୍ରୀ ଜୟଶୀଳା ଉତ୍ତେଜିତ ହୋଇପଡ଼ିଛି । ମାଇପି ଲୋକ କଅଣ ବୁଝିବେ ଏ ଦୁନିଆର ହଟଚମଟ ବିଦ୍ୟା । ବାହାବେଳୀ ଉପର-ଲୋକଟାକୁ ସ୍ୱାମୀ କହେ, ସନ୍ତାନ ଜନ୍ମାଏ, ଆଉ ସଂକୀର୍ଣ୍ଣ ମନ ଘେନି ପଡ଼ିଥାଏ ।

ଲୋକକାନ୍ତ ବାରିଆଡ଼କୁ ଚାଲୁ ଚାଲୁ କହିଲେ—ହଉ, ଖଣତିଟା ଦିଅ, ନାଇଁ ଖଣତିଟା ହେବ ନାହିଁ, ସମୟ ଯିବ, କୋଦାଳଟା ଦିଅ । ତମେ ମୋ ସାଙ୍ଗରେ ଆସ ନାହିଁ । କେବଳ ଦୁର୍ଗା, ମଙ୍ଗଳା, ଅମ୍ବିକା ଯାହା ମନକୁ ଆସୁଛି ସ୍ମରଣ କର । ତମର କଥା ମାନି ମୁଁ ଏଇଟାକୁ ପୋତିଦେବାକୁ ଯାଉଛି । ବଡ଼ ମୂଲ୍ୟବାନ୍ ପଦାର୍ଥ, ମଣି-ମାଣିକ୍ୟ ବି ସରି ହେବନାହିଁ । ଯେତିକି ସମୟ ଗଡ଼ୁଥିବ ଏଇଟା ସେତିକି ମୂଲ୍ୟବାନ ହେଉଥିବ, ଶେଷକୁ ଅମୂଲ୍ୟ ହୋଇଯିବ ।

ଜୟଶୀଳାଙ୍କର ମନ କିପରି କଅଁଳ ହୋଇଗଲା । ନାରୀସୁଲଭ କୌତୂହଳରେ

ସେ ଭାବିବସିଲେ—ଆହା, ସ୍ୱାମୀ ଏଇକ୍ଷଣି ପୋତିଦେବେ, ପୋତିବା ଆଗରୁ ଟିକିଏ ଦେଖନ୍ତୁ କି, କି ଅମୂଲ୍ୟ ପଦାର୍ଥ !

କହିଲେ—ହଇଏ, ଟିକିଏ ଦେଖାଇବ ନାହିଁ ? ଏଡ଼େ ବଡ଼ ଦାମିକିଆ ପଦାର୍ଥ, ଟିକିଏ ଆଖି ପକାଇବ ନାହିଁ ?

ଲେକକାନ୍ତ ବାଉକବାଟ ପାଖରେ ଛିଡ଼ା ହୋଇ କହିଲେ—ନା, ମାଇପି ଲୋକ, ତମମାନଙ୍କୁ ବିଶ୍ୱାସ ଅଛି ? କହିଦେବା ପାଇଁ ପାଟି ଖାଲି ପାକୁ ପାକୁ ହେଉଥିବ । ଶାସ୍ତ୍ରରେ ଅଛି, ଦୁଷ୍ଟ ଲୋ ନାରୀକୁ ବିଶ୍ୱାସ କରିବ ନାହିଁ ।

ଜୟଶୀଳା ପାଟିକଲେ—କି...ଇ...ଇ, ମୁଁ ପୁଣି ଦୁଷ୍ଟ ଲୋ ? କଅଣ ଗୋଟାଏ ଚୋରେଇ ଆଣି ରାତିରେ ପୋତିବାକୁ ଯାଉଛ । ସକାଳୁ ପୁଣି କାଢ଼ି ଆଣି ଘରେ ପୂରେଇବ, ପୁଲିସ ଆଖିରେ ଧୂଳି ଦେଇ ଏ କାମ କରୁଛ । ମୁଁ କହିବାରୁ ଦୁଷ୍ଟ ଲୋ ହେଲି ! ତୁମେ କୋଉ ସ୍କୁଲରୁ ଆସିଛ ଦେଖେଁ । କହ ସେ କଅଣ, ନଇଲେ ପାଟି କରି ପାଇପଡ଼ଶା ଡାକିବି ।

ହତଚକିତ ସ୍ୱାମୀ କୋଦାଳ ଧରି ସେତେବେଳକୁ ଅଦୃଶ୍ୟ ହୋଇଯାଇଥିଲେ ।

ପ୍ରାଚୀ ନଦୀର ଜଳପ୍ରବାହ ସହ କୋଦାଳର ଖନନ ଶବ୍ଦ ମିଶିଯାଇଥିଲା । ମାଟି ଟିକିଏ ଶକ୍ତ ଥିଲା; କାରଣ ଲେକକାନ୍ତର ମାଂସପେଶୀ ବ୍ୟଥା କରିଥିଲା । ସବଶେଷରେ କାମଟା ସାରି ସେ ଯେତେବେଳେ ସିଧାହୋଇ ଛିଡ଼ାହେଲେ, ତାଙ୍କ ତୁଣ୍ଡରୁ ବାହାରି ଆସିଲା ଆଶ୍ୱସ୍ତିର ସ୍ୱର—ଆଃ...ଚନ୍ଦ୍ରଟା ରଖିଦିଏ ।

ପୁରୀ ସହର ପଥୁରିଆ ସାହିର ପ୍ରସିଦ୍ଧ କାରିଗର ସାରଥି ମହାପାତ୍ର ଘର ଭିତର ପିଣ୍ଡି ଉପରେ ଜାକିଜୁକି ହୋଇ ବସି କଅଣ ଭାବୁଥିଲେ । ଘଣ୍ଟାଏ ଦ'ଘଣ୍ଟା ନୁହେଁ, କେତେବେଳୁ ସେ ଏମିତି ବସିଲେଣି । ଝିଅ ଶେଫାଳୀ ତିନିଥର ଉଣ୍ଡି ଦେଇ ଗଲାଣି । ବାପା ବସିଛନ୍ତି ନିର୍ବିକଳ୍ପ ସମାଧିରେ ।

"ବୋଉ ଲୋ, ବାପା କେତେବେଳୁ ଆଖି ବୁଜି ବସିଛନ୍ତି । ମୁଁ ଡାକିଲି, ତେବେ ବି ଉଁ ଚୁଁ କିଛି ହେଲେନି । ଖଡ଼ପଥରର କୋଣାର୍କ ଘୋଡ଼ା ନେବାପାଇଁ ନଟଭାଇ କଉଁ ଗରାଖକୁ ଆଣିଛି । ବାପା ସିନା ଉଠିଲେ ମୂଲଚୂଲ କରିବେ ? ସେ ଶୁଣୁନାହାନ୍ତି ।"

ଶେଫାଳୀ ସାରଥିଙ୍କର ଗେଲବସର ଝିଅ । କଥା କହିଲେ ଗୋଡ଼ ବାଡ଼ାଏ, କଥାର ଛନ୍ଦରେ ଶେଫାଳୀର ପାଦ-ପ୍ରହାର ଛନ୍ଦ ମିଶିଥାଏ । ଢ଼ଙ୍ଗିନ ଝିଅ । ବଢ଼ିଛି ବଳିଷ୍ଠ ଅଙ୍ଗ ନେଇ । ମୁହଁ ଉପରେ ବାଳ ଫୁରୁଫୁରୁ ହୋଇଆସିଛି ।

ସାରଥିଙ୍କର ସ୍ତ୍ରୀ ଭିତରୁ ପାଟି ଶୁଣେଇ କହିଲେ—ଶେଫ ! ବାପା ଗୋଟାଏ କିଛି କାରିଗରି କଥା ଭାବୁଥିବେ । ଏମିତି ସେ କେତେ ଥର ବସିଛନ୍ତି । ଗୋଟାଏ କଅଣ ଥର

ହୋଇ ତାଙ୍କ ମନକୁ ନ ଆସିବାଯାଏ ସେ ଏମିତି ବସିଥିବେ । ଥରେ ମନକୁ ଆସିଗଲେ ହସି ହସି ପଥରଖଣ୍ଡେ ଟାଣି ଆଣି ଠକ୍ ଠକ୍ କରିବେ । ଆଜି କଣ ନୂଆ ହୋଇଛି କି ଏ କଥା ? ଯା, ନଟଭଗିଙ୍କି କହିଦେ, ପଚିଶ ଟଙ୍କାରୁ କମ୍ ହେଲେ କୋଣାର୍କ ଘୋଡ଼ାମୂର୍ତ୍ତି ବିକି ହେବ ନାହିଁ । ଦୁଇଶ' ଟଙ୍କାର କାମ ପଚିଶ ଟଙ୍କାକୁ ଦିଆହେଉଛି, ଅଭାବ ପଡ଼ିଛି ବୋଲି । ଗରାଖ ବା କାହାନ୍ତି ?

ଶେଫାଳୀ "ହଉ ଲୋ ବୋଉ !" କହି ଦାଣ୍ଡ ଆଡ଼କୁ ଦଉଡ଼ିଗଲା ।

ସାରଥି ଧାନସ୍ତିମିତ ନୟନ ଫେଟାଇ ଝିଅଆଡ଼କୁ ଚାହିଁଲେ । ତାଙ୍କୁ ଆଶ୍ଚର୍ଯ୍ୟ ଲାଗୁଛି, ଏ କି ପ୍ରକାର ଫରମାସୀ । ଦୀର୍ଘ ପଚଶ ବର୍ଷର ଶିଳ୍ପୀ-ଜୀବନରେ ଏପରି ଅନୁଭୂତି ତ ତାଙ୍କର କେବେ ହୋଇନାହିଁ ।

ଲୋକେ ଆସିଛନ୍ତି—ଓଡ଼ିଶା ଭିତରୁ ଓ ବାହାରୁ; ବିଶେଷ କରି ବାହାରୁ । ଫର୍ମାସୀ କରିଛନ୍ତି ନାନା ମୂର୍ତ୍ତି—କିନ୍ତୁ ପ୍ରତ୍ୟେକଟି ପୂର୍ଣ୍ଣାଙ୍ଗ । ଅଥଚ ଏଇ ଭଦ୍ର-ଲୋକ ଅଗ୍ରିମ ଦଶଟି ଟଙ୍କା ଦେଇ ଅନୁରୋଧ କଲେ ଗୋଟିଏ ଅବଲୋକିତେଶ୍ୱର ମୂର୍ତ୍ତି ଗଢ଼ିବା ପାଇଁ, କିନ୍ତୁ...

"ମହାପାତ୍ରେ, ଚିନ୍ତା କରିବେ ନାହିଁ, ଦଶଟି ଟଙ୍କା ଅଗ୍ରିମ ରହିଲା । ଅବଲୋକିତେଶ୍ୱର ମୂର୍ତ୍ତିଟି ପୂର୍ଣ୍ଣାଙ୍ଗ ହେବ ନାହିଁ । ତାର ଗୋଟିଏ ପାଦ ଓ ଗୋଟିଏ କର ଭଙ୍ଗି ଯାଇଥିବ, ଦେଖିଲେ ଯେପରି ମନେହେବ କାଳର ଅବକ୍ଷୟ ଶକ୍ତି ମୂର୍ତ୍ତିଟିର ହସ୍ତ-ପଦକୁ ଖଣ୍ଡିତ କରିଛି । ଖୁଣ୍ଟକୁ ଏପରି କାଟିଦେବେ ଯେ ଜାଣିଶୁଣି ଏହା ଭଙ୍ଗାଯାଇଛି ବା ଅପୂର୍ଣ୍ଣ ରହିଛି ବୋଲି ଯେପରି ଲୋକେ ବୁଝିପାରିବେ ନାହିଁ ।"

ସାରଥି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ଅଭିନବ ଅନୁରୋଧ ଏ ! ଶିଳ୍ପୀ ପୂର୍ଣ୍ଣ ଖଣ୍ଡିତ ମୂର୍ତ୍ତି ଯୋଗାଇଦେବ ଅର୍ଥଲୋଭରେ !

ଶେଷକୁ ସାରଥି ମହାପାତ୍ର ପରାସ୍ତ ହୋଇ ଯାଇଥିଲେ । ଦ୍ୱିଧାଗ୍ରସ୍ତ ମନ ଘେନି ସାରଥି ହସ୍ତପଦଖଣ୍ଡିତ ଗୋଟିଏ ଅବଲୋକିତେଶ୍ୱର ମୂର୍ତ୍ତି ଗଠନ କରି ଦେଇଥିଲେ । କାଳ-ପାରାବାରର ପ୍ରତି ବିନ୍ଦୁରେ ବଜ୍ର ଅବଲୋକିତେଶ୍ୱର, ବଜ୍ର ବୁଦ୍ଧ ଓ ପ୍ରଜ୍ଞା-ପାରମିତା ମୂର୍ତ୍ତି ଭାସିଯାଇଥିଲେ । କ୍ଷତିହୀନ ବସ୍ତୁ ଭିତରେ ସାରଥି ଆଜି ଦେହାବଶେଷ ରଖିଯାଇଛନ୍ତି । ପଥୁରିଆ ସାହି ଆଜି ସାହି ମାତ୍ର ରହିଛି । ସେ ଶିଳ୍ପମୟ ଧ୍ୟାନଦୃଷ୍ଟି, ସେ ସାଧନା ଓ କଳ୍ପନା ଆଜି କାଳର ଘନତମିରରେ ଅବଲୁପ୍ତ ।

ଗ୍ରନ୍ଥାଗାରର କର୍ମଚାରୀ ଭୟ ଶଙ୍କିତ ବିହ୍ୱଳ ଦୃଷ୍ଟି ପକାଇ କଥାଟାକୁ ବୁଝିବାକୁ ଯେତେ ଚେଷ୍ଟା କଲେ ବି ତାଙ୍କର ଆଖି ଦୁଇଟା ଉପରକୁ ବାହାରିଆସୁଛି ବୋଲି ତାଙ୍କୁ ମନେହେଲା ।

ସହରର ପ୍ରଖ୍ୟାତ ଗ୍ରନ୍ଥାଗାର କେବଳ ପ୍ରଖ୍ୟାତ ନୁହେଁ, ପୁରାତନ । ସେହି ଗ୍ରନ୍ଥାଗାର ଭିତରେ ଏହିପରି ଭାବରେ ଦୁଇଜଣ ବ୍ୟକ୍ତି କଥାବାର୍ତ୍ତା କରୁଥିଲେ; ସମୟ ରାତି ଏଗାର ଘଣ୍ଟା । ପାଠକମାନେ ଚାଲିଯାଇଛନ୍ତି ।

—ନା, ତା ହୋଇ ପାରିବ ନାହିଁ ।

—କାହିଁକି ହୋଇ ପାରିବ ନାହିଁ ?

—ଦେଶ ପାଇଁ ତ ମୁଁ ଏସବୁ ସଂଗ୍ରହ କରୁଛି ? ଗବେଷଣା ଭଳି ଏକ ପବିତ୍ର କାର୍ଯ୍ୟର ଦାୟିତ୍ୱ ନେଇଛି । ଏ ପଥରେ କେତେ ଜଣ ବା ରଥୀ ଆଗରୁ ଯାଇଛନ୍ତି ? କେହି ନୁହନ୍ତି । ମୁଁ ବର୍ତ୍ତମାନ ଏକକ । ତେଣୁ ମୋ ପ୍ରସ୍ତାବରେ ଆପଣ ରାଜି ହୋଇ-ଗଲେ ମୁଁ ଯାହା ମୋଟା ଟଙ୍କା ଗବେଷଣା ପାଇଁ ପାଇଛି, ସେଥିରୁ କିଛି ଆପଣଙ୍କୁ ଦେବି । ମୋର ବେଶି ଦରକାର ଅତି ପ୍ରାଚୀନ ସଂଖ୍ୟା ଏବଂ ଯାହା ମୋର ହସ୍ତଗତ ହେବ, ତାହାର ଦ୍ୱିତୀୟ କପି ଯେପରି ଆଉ କାହା ହାତରେ ନ ପଡ଼େ । ତେବେ ଏଇ କଥା ରହିଲା । କାଲି ରାତି ବାରଟାକୁ ଆସିବି । ଆପଣ ଲାଇବ୍ରେରୀ ଖୋଲା ରଖିଥିବେ । ସବୁ ଫିଟାଇବେ ନାହିଁ; ଗୋଟାଏ ଦରଜା ଖୋଲା ରଖିବେ । ମୁଁ ଗୋଟାଏ ଶଗଡ଼ ଆଣିଥିବି ।

—ଏଁ ? ଶଗଡ଼ ? କର୍ମଚାରୀଟି ଭୟରେ ଥରିଗଲା । ଶଗଡ଼ଟାଏ କଣ ହେବ ?

ଭଦ୍ରଲୋକ କହିଲେ—ଆଉ କଅଣ ମୁଁ ଖଣ୍ଡିଏ ଦି'ଖଣ୍ଡି ପାଇଁ ଆସିଛି । ମୁଁ ଚାହେଁ ଏଇ ଅତି ପ୍ରାଚୀନ ଓ ପ୍ରତିଷ୍ଠିତ ଲାଇବ୍ରେରୀର ସବୁ ସମ୍ବାଦପତ୍ର ଅପହରଣ କରି ମାଲିକ ହେବି । ସେଥିରେ ଯାହା ଥିବ, ଗବେଷଣା କରି ପ୍ରବନ୍ଧ ଛପାଇବି । ଯାହା ନ ଥିବ ତାକୁ ଓଲଟା ଦଗରୁ 'ଏଷଣାଗବ' କରି ଗୁମ୍ଫିବି । ଆଉ କାହା ପାଖେ କଅଣ ଥିବ ଯେ ପ୍ରତିବାଦ କରିବ ? ବୁଝିଲେ, ଏଥିପାଇଁ ଶଗଡ଼ ଆଣିବି ।

କର୍ମଚାରୀଙ୍କର ଆଖି ଦୁଇଟାରୁ ପାଣି ବୋହିବା ଉପରେ । ଶହେ ଟଙ୍କାର ମୋହ ଏଡ଼ି ହେଉନାହିଁ । ତା ଛଡ଼ା କିଏ ବା କାହିଁକି ମଳିନ କୀଟଦଷ୍ଟ ପୁରୁଣା ଖବରକାଗଜ ପଢ଼ିବାକୁ ଆସିବ ? ଏମିତ ଲକ୍ଷ୍ମୀଛଡ଼ା ଅନ୍ୟକାର୍ଯ୍ୟ ଅଦକ୍ଷ କେତେ ଜଣ ଅଛନ୍ତି ? ତେବେ ଶଗଡ଼ ଆଣି ବସ୍ତା ବୋଝକରି କାଗଜ ନେବାବେଳକୁ ଧରା-ପଡ଼ି ମାମୁଘର ଆଡ଼େ ମୁହାଁଇବା ସାର ହୋଇଥିବ; ବରଂ ଅନ୍ୟ ଉପାୟ ଅଛି ।

କର୍ମଚାରୀ କହିଲେ—ଦେଖନ୍ତୁ, ଶଗଡ଼ ମଟର କଥା ଛାଡ଼ି ଆପଣ ପ୍ରତି ରାତିରେ ଗୋଟିଏ ରିକ୍ସା ଆଣନ୍ତୁ । ଗୋଟିଏ ରିକ୍ସା ଗୋଟିଏ ରାତିରେ ସବୁ ବୋହି ନେବ ।

ପ୍ରସ୍ତାବଟା ଗବେଷକଙ୍କ ମନକୁ ପାଇଲା । ସେ ହଁ ଭରିଲେ । ଶୌର୍ଯ୍ୟ ଦେଖାଇ କହିଲେ—ବନ୍ଧୁ, ଏ ତ କାଗଜ । ବଡ଼-ବଡ଼ ତଥ୍ୟସମ୍ବଳିତ ଗନର ତଦ

ପୃଷ୍ଠା ଛୁଣ୍ଡେଇ ନେଇଛୁ । ଜ୍ଞାନବୃଦ୍ଧି ପାଇଁ ଓ ଦେଶର କ୍ରମିକ ଇତିହାସ ଲେଖିବା ପାଇଁ ଏ ଚୌର୍ଯ୍ୟ-ଅପରାଧ ଅପରାଧ ନୁହେଁ । ସେ ବିଷୟରେ ମୋର କନ୍‌ସେନ୍‌ସ କ୍ଲିଅର ଅଛି ।

କର୍ମଚାରୀ ପ୍ରାର୍ଥନା କଲେ :

—ଆଉ କୋଡ଼ିଏ ଟଙ୍କା ବଢ଼ାଇଦେବେନି !

ଗବେଷକ ଚିନ୍ତିତ ହୋଇ କହିଲେ— ଦେଖନ୍ତୁ, ମୋର ଏଥିରେ ଆର୍ଥିକ ଲାଭ ନାହିଁ । ହଉ ହେଲା, ଆଉ ଦଶଟା ଟଙ୍କା ବେଶି ଦେଇପାରେ ।

—ଶହେ ଦଶ, ବୁଝିଲେ ?

ସ୍ୱଳ୍ପପରେ ପିଲାଏ ବସିଛନ୍ତି । ଗଗନବାବୁ ଗୋଟିଏ ବହିର କେତେଗୁଡ଼ିଏ କପି ତାଙ୍କୁ ଧରେଇ ଦେଇଛନ୍ତି । ଛାତ୍ରମାନେ କର୍ମରତ ଅଛନ୍ତି ।

ଗଗନବାବୁ ଉତ୍ସାହ ଦେଇ କହିଲେ—ହଉ, ଆରମ୍ଭ ହେଉ ।

ଗଣ—

ଜଣେ ଛାତ୍ର କହିଲେ—କେଉଁ ଅକ୍ଷରଟା ?

—ମୋର ନାଁ ଆଗରେ ଯେଉଁ ଅକ୍ଷରଟା ଅଛି, ଗଗନବିହାରୀ, ସେଇ 'ଗ' ଅକ୍ଷରଟା ।

ଅନ୍ୟ ଜଣେ ଛାତ୍ର କହିଲେ—ଆଜ୍ଞା, ଛଅଶହ ପୃଷ୍ଠାର ବହି ଭିତରେ 'ଗ' ଅକ୍ଷର କେତେ ଯେ ଥିବ କହିହେବ ନାହିଁ । ତେବେ ଏପରି ମହତ୍ତ୍ୱ କାର୍ଯ୍ୟ ଯେତେବେଳେ ଆପଣ ସମ୍ପାଦନ କରିବାକୁ ବ୍ରତୀ ହୋଇଛନ୍ତି ଏବଂ ଏହି ଅକ୍ଷର ଗଣନା ପ୍ରକ୍ରିୟାରେ ଆପଣଙ୍କ ପାଣ୍ଡିତ୍ୟ ଓ ଭୂୟୋଦର୍ଶନ ପ୍ରକଟିତ ହେବ ବୋଲି ଯଦି ଆପଣ ଭାବୁଛନ୍ତି, ତେବେ ଆମେ ଏ କାର୍ଯ୍ୟ କରିବୁ । ଆପଣ ଏ ଅକ୍ଷର-ଗଣନା ନେଇ କଣ କରିବେ ?

ଗଗନବିହାରୀ ହସି ହସି କହିଲେ—ଆରେ ମୂର୍ଖ, କେତେ ଥର 'ଗ' ଅକ୍ଷର କବି ପ୍ରୟୋଗ କରିଛନ୍ତି ତାହା ପ୍ରଥମେ ବ୍ୟକ୍ତ କରି କାହିଁକି 'ଗ' ଅକ୍ଷର ଲେଖିଲେ ବୋଲି ଗବେଷଣା କରିବି । ଅତଏବ ତୁମେ ଗଣ ।

ଗୋଟିଏ ରସିକ ଛାତ୍ର ଗଣନା-ରସର ଭୟାବହତା ବୁଝି କରଯୋଡ଼ି ଜଣାଇଲା— ଆଜ୍ଞା, ଏ ବଡ଼ ଦୁରନ୍ତ କାର୍ଯ୍ୟ । ତେବେ ଆପଣ ପ୍ରଥମେ ଗଣନାକାର୍ଯ୍ୟର ଶୁଭ ଦିଅନ୍ତୁ । 'ତ' ବର୍ଗର ତୃତୀୟ ଅକ୍ଷର, 'ର' ବର୍ଣ୍ଣର ପରବର୍ତ୍ତୀ, 'କ' ବର୍ଗର ଦ୍ୱିତୀୟ ଅକ୍ଷରରେ 'ଇ' ଦେଇ ଯାହା ହେବ ।

—'ଆ'ଶନ୍ତୁ ।

ଗବେଷକ ହିସାବ କରି ଦେଖିଲେ ଯେ ସାତଟି ଛାତ୍ରଙ୍କର ଉଦର ପୂର୍ତ୍ତି ଓ

ରସନା ତୃପ୍ତି ପାଇଁ ଆଠଅଣା ଲେଖାଏଁ ହେଲେ ଟଙ୍କାଏ ଖର୍ଚ୍ଚ । ହେଉ ପଛେ, ଗବେଷଣା କାର୍ଯ୍ୟ ତ ଚାଲିବ । ଡାକିଲେ—"ପରମା, ଟଙ୍କାର ଜାଲିଆ ଆଣିବୁ, ଯା ଶୀଘ୍ର ଯା ।"

ଟାଉନ୍ ବସ୍‌ରୁ ଦୁଇଜଣ ଲୋକ ଅବତରଣ କଲେ । ଭିତରେ ଥିବାବେଳେ କେହି କାହାକୁ ଦେଖି ନ ଥିଲେ; ବାହାରକୁ ଆସି ପରମ ପ୍ରୀତିରେ କୋଳାକୋଳି ହେଲେ । ଜଣେ ଅନ୍ୟକୁ ପଚାରିଲେ—

—କମିତି ଚାଲିଛି ?

ଉତ୍ତର ମିଳିଲା—ଖୁବ୍ ଚାଲିଛି, ଆପଣ ଭୂଗର୍ଭବାସୀ, ମୁଁ କାଗଜ-କୀଟ । ଆଉ ଜଣେ ଅଛି, ସେ ଖାଲି ଗଣନା କରୁଛି । କୋଷ୍ଠୀ-ଗଣନା ନୁହେଁ, ଅକ୍ଷର-ଗଣନା । ଏଇ ତିନିଜଣଙ୍କୁ ଛାଡ଼ିଦେଲେ ପ୍ରତ୍ନତାତ୍ତ୍ୱିକ ଆଉ କେହି ନାହାନ୍ତି ।

ପ୍ରଥମ ଜଣକ ଚମଡ଼ାଥଳୀ ଖୋଲି ବାହାର କଲେ ଗୋଟିଏ ନିମନ୍ତ୍ରଣ-ପତ୍ର; କହିଲେ—ବନ୍ଧୁ, ତୁମକୁ ମନେ ମନେ ଖୋଜୁଥିଲି । ଏଇ ନିମନ୍ତ୍ରଣପତ୍ର ନିଅ । ନିଶ୍ଚୟ ଆସିବ । ପ୍ରାଚୀ ଉପତ୍ୟକାରେ ବୌଦ୍ଧ ସଂସ୍କୃତିର ଆଭାସ ପାଇଛି ।

ମୁଁ ଗବେଷକଙ୍କର ସୂକ୍ଷ୍ମଦୃଷ୍ଟି ଦେଇ ଯାହା ଦେଖିଛି ପ୍ରାଚୀ ନଦୀକୂଳ ଉପରେ ଯେଉଁ ଗାଇକୁଣ୍ଡାଗଛ ଶାଖାପତ୍ର ମେଲେଇ ଛିଡ଼ା ହୋଇଛି, ତାର ତଳେ ରହିଛି ବୌଦ୍ଧ ବିହାର । ଆଉ ସେ ଗାଇକୁଣ୍ଡାଗଛର ବୟସ ପ୍ରାୟ ଦଶବର୍ଷ ହେବ । କାରଣ ଦଶବର୍ଷ ତଳେ••ନା•••ଆଉ ଏମିତି ବସ୍ତୁକ୍ଷେପ ପାଖରେ ଛିଡ଼ାହୋଇ ସବୁ ପ୍ରାକୃତ ତତ୍ତ୍ୱ ବାଢ଼ି-ପାରିବ ନାହିଁ । ଗୋଟିଏ ଗ୍ରେଟକୋଟର ଉତ୍ସବର ଆୟୋଜନ କରିଛି । ମେଳକ୍ଷେତ୍ରମ ଆଉ କିଛି ଟଙ୍କା ମିଳିଛି । ଦେଶର ବହୁ ଇତିହାସବେତ୍ତା ଆସିବେ । ତାଙ୍କର ଆଗରେ ମୁଁ ଯୁଗଯୁଗର ଯବନିକା ଉନ୍ମୋଚନ କରି ଦେଖାଇଦେବି ଯେ ପ୍ରାଚୀ ଉପତ୍ୟକାରେ ବୌଦ୍ଧ ସଂସ୍କୃତି ବିରାଜମାନ କରିଥିଲା । ମୁଁ ତାକୁ ଲୋକ-ଲୋଚନକୁ ଆଣିବି । ଏହାହିଁ ମୋର ବିନିଦ୍ର ରଜନୀର ଗବେଷଣାର ଫଳ ।

ଅପରବ୍ୟକ୍ତି ଚିତ୍କାର କଲେ—ସାବାସ ବନ୍ଧୁ, ମୁଁ କଣ କରିଛି ଜାଣ ? ମୁଁ ବି ଦେଖାଇଦେବି ଆମ ସାହିତ୍ୟର ଦିଗପାଳମାନେ କିପରି ଡାଇରି ରଖିଯାଇଛନ୍ତି ଏବଂ ସେ ଡାଏରୀ ମୋ ଛଡ଼ା ଆଉ କାହା ପାଖରେ ନାହିଁ । ବଡ଼ ବଡ଼ ସାହିତ୍ୟକମାନେ କେଉଁଠୁ ଇନ୍‌ସପେରେସନ୍ ପାଇଛନ୍ତି ଜାଣ ? ଏ ତଥ୍ୟ ଆଉ କେହି ଜାଣନ୍ତି ନାହିଁ ।

ଅପର ଭଦ୍ରଲୋକ ପଚାରିଲେ—କେଉଁଠୁ ?

'ପାଇଖାନାରେ ବସିଲାବେଳେ' ପୁରୁଣା ଖବରକାଗଜ ଭିତରେ ଏ ସତ୍ୟ ଲୁଚି ରହିଛି । କିଏ ପଢ଼ୁଛି ନା ଦେଖୁଛି ।

"ବାଃ ଚମତ୍କାର, ସତରେ ସତରେ କଅଣ ଏ କଥା ଛପା ହୋଇଛୁ, ନା ଆପଣ ଗବେଷକଙ୍କର ଦୃଷ୍ଟି ନେଇ ସବୁ ବୁଝିପାରିଲେ ?"

ଛପା ଅଛପା ସବୁ ଆମକୁ ବୁଝିବାକୁ ହେବ । ରାଧାନାଥ, ଫକୀରମୋହନ, ଗଙ୍ଗାଧର କାବ୍ୟ ଉପନ୍ୟାସ ସୃଷ୍ଟି କରିବାର ବେଗ ପାଇଥିଲେ ବହିର୍ଭୂମି କରୁଥିବା-ବେଳେ । ଏପରି ମୁଁ ଏସବୁ ପ୍ରକାଶ କରୁନାହିଁ । ଉଷା, ଚନ୍ଦ୍ରଭାଗା, ଋଷିପ୍ରାଣେ ଦେବାବତରଣ, ଫକୀରମୋହନଙ୍କ ରେବତୀ, ମଙ୍ଗରାଜ—ଏସବୁ ସେହି ସ୍ଥଳରୁ ଆସିଛନ୍ତି । ତାଙ୍କର ଡାଏରୀରୁ ସେମାନେ ନକେ କଥା କହୁଛନ୍ତି ।

ଦୌଡ ସଂସ୍କୃତର ଗବେଷକ ପ୍ରୀତ-ଆଲିଙ୍ଗନରେ ପୁରୁଣା କାଗଜର ମାଲିକଙ୍କୁ ଚପିଧରି କହିଲେ—ସାବାସ୍, ଆମେ ତିନିଜଣ ଦେଶ ଓ ଜାତି ପାଇଁ ଯେ କି ସାଧ-ସାଧନା କରୁଛେ, ତାହା ଦେଶ ବୁଝିଲେ ହିଁ ହେଲା ।

—'ହଉ ତେବେ ଆସୁଛି' କହି ସେ ବିଦାୟ ନେଇଗଲେ ।

ସେହିଦିନ ରାତି ଦୁଇଘଣ୍ଟାବେଳେ ପୁରୁଣା କାଗଜର ମାଲିକ ଏହିପରି ଦେଖୁଥିଲେ—

"ପ୍ରିଷ୍ଟର ମାହେନ୍ଦ ୧୯୦୩ ମସିହା ଜୁନ ମାସ ୧୩ ତାରିଖ ଦିନ ୪ ଘଣ୍ଟା ୫ ମିନଟ୍ ଅନ୍ତେଇସେକେଣ୍ଡ୍ ବେଳେ ବାଥରୁମ୍‌ରେ ବସି ଭାବୁଥିଲେ ଯେ, ଶ୍ରୀରାମପୁର ଛାପାଖାନାରେ ଛାପା ହେଉଥିବା ଓଡ଼ିଆ ବ୍ୟାକରଣ ଶେଷ ହୋଇଯାଇଛି ।

ଫକୀରମୋହନଙ୍କର କାଠଗୋଦାମ ତଳେ ଯେଉଁ ଚମୌଇ ନେଉଳଟି ଛଟପଟ ହୋଇ ମରିଗଲା, ତାହାର ପ୍ରେତାତ୍ମା ଫକୀରମୋହନଙ୍କୁ ଶୁଣାଇଦେଲା ଯେ, ସେ ବି ଏମିତି ଓଡ଼ିଆ ସାହିତ୍ୟ ଓ ଭାଷା ପାଇଁ ଛଟପଟ ହେଉଥିବେ ଓ ୧୯୬୮-୬୯ ଗବେଷକଙ୍କର ଗୋଦାମତଳେ ଚପି ହୋଇଯାଇ ଯାହି ଡାକ ଛାଡ଼ୁଥିବେ ।

ରାଧାନାଥ ରାୟ ଭାର୍ଗବୀ ନଦୀକୂଳରୁ ଦୁଇମାଇଲ ୨୨ ଗଜ ଅଧେଫୁଟ ସାଢ଼େ ତିନିଇଞ୍ଚ ଦୂରରେ ଅବସ୍ଥିତ ଗୋଟିଏ ଏଲ. ପି. ସ୍କୁଲ୍ ଉଦ୍‌ଘାଟନ କରୁଥିବାବେଳେ ତାଙ୍କର ଭୟଙ୍କର କାଶ ଉଠିଥିଲା ।

ଏହି ବିଷୟଟି ତାଙ୍କର ମହାଯାତ୍ରାର ଭାବକୁ ପ୍ରାଞ୍ଜଳ କରିଦେବ ।

କୁନ୍ତଳାକୁମାରୀ ପୂର୍ବଜନ୍ମରେ ଅଗ୍ନିମାନ୍ଦ୍ୟ ରୋଗରେ ବିଶେଷଭାବରେ ପୀଡ଼ିତ ଥିବାରୁ ଏ ଜନ୍ମରେ ପ୍ରତିଶୋଧ ନେବା ମାନସରେ କେବଳ ଅଗ୍ନି ବିରାଇଲେ ତାଙ୍କ କବିତାରେ । ଏହି ତଥ୍ୟଟିକୁ ତାଙ୍କର କାବ୍ୟ-କବିତା ବିଚାର କଲେ ଓଡ଼ିଆ ସାହିତ୍ୟରେ ତାଙ୍କର ସ୍ଥାନ ପ୍ରାଞ୍ଜଳ ହୋଇଯିବ ।

ନୂଆଁଖୁଣ୍ଟାର 'ଡାମରିକାଉ' ନନ୍ଦକିଶୋରଙ୍କର 'ଡାମରିକାଉ'ର ପୂର୍ବସୂରୀ । ଉଭୟ

ଉମଗ୍ରକାଶ କେତେଦୂର ଉଡ଼ିପାରୁଥିଲେ ଓ କେଉଁଠି 'ଚନ୍ଦ୍ରମଲ୍ଲିକା' ଓ 'କଉଡ଼ିଗଣା' ଦେଖୁଥିଲେ, ତାର ଗୋଟାଏ ତୁଳନାତ୍ମକ ସମୀକ୍ଷା ଶୀଘ୍ର ପ୍ରକାଶିତ ହେଉଛି ।

ସମ୍ବଲପୁରରୁ ବରପାଲି ଚାଲି ଚାଲି ଯାଇ ଥକ୍କା ହୋଇ ବସିପଡ଼ି ଗଙ୍ଗାଧର ଆମ୍ବଗଛ ତଳେ ପଡ଼ିଥିବା ଗୋଟିଏ ଲାଲ ଟକ୍‌ଟକ୍ ଆମ୍ବ ଖାଇଥିବାରୁ ତାଙ୍କର ସମସ୍ତ କାବ୍ୟ-କବିତା ରସାଳ ହୋଇଗଲା । ସେଦିନ ତାଙ୍କର ଉପବାସ ଥିଲା । ସେ ଲୋଭ ସମ୍ଭାଳି ପାରି ନ ଥିଲେ ।"

ଗବେଷକଙ୍କ ଲେଖନୀ ହଠାତ୍ ବନ୍ଦ ହୋଇଗଲା; କାରଣ କିଛି ଗୋଟାଏ ବିଘ୍ନ ଘଟିଲା ବୋଲି ସେ ଜାଣିପାରିଲେ । ବିଘ୍ନ ଆଉ କିଛି ନୁହେଁ, ନିଜ ସ୍ତ୍ରୀ ଚମ୍ପାମାଳୀ ?

—ହଇଏ, ଶୁଣୁଛ !

—କଅଣ ?

—ଏ ଚୁଲି ନିଆଁ କଅଣ ଲେଖୁଛ । କାହିଁକି ? ତମେ କେତେବେଳୁ ଆସି ପଢ଼ୁଛ ପରା ? ଖବରଦାର । ଚୁଲି ନିଆଁ କଅଣ ସେ କଥା ଦେଶବାସୀ ବୁଝୁଛନ୍ତି ? ଏତକ ନ ହେଲେ, ଯେତେ ବଡ଼ କବି ଓ ଲେଖକ ହୁଅନ୍ତୁ ନା କାହିଁକି ତା ଲେଖାରୁ ରସ ବାହାରି ପାରିବ ନାହିଁ ।

—ସତେ ? ଦଶମଶ୍ରେଣୀ ଯାଏ ପଢ଼ିଥିଲି । ଆମ ପଣ୍ଡିତ ମହାଶୟ ଭକ୍ତଚରଣ ଆମ୍ବ ଖାଉଥିଲେ କି ପଣସ ଖାଉଥିଲେ କହୁ ନ ଥିଲେ; କିନ୍ତୁ 'ଆରେ ବାବୁ ଶ୍ୟାମଘନ' ଛାନ୍ଦଟି ଦୁଇଥର ଏମିତି କରୁଣ ଭାବରେ ପଢ଼ୁଥିଲେ ଯେ ଆମ ଆଖିରୁ ଲୁହ ଗଡ଼ି-ପଡ଼ୁଥିଲା । ତାଙ୍କର ପଢ଼ାଇବା ରୀତି ଏତେ ମଧୁର, ଏତେ କରୁଣ, କାହିଁ ତ ଅଗ୍ନିମାନ୍ଦ୍ୟ ରୋଗ କାହାକୁ ଧରିଥିଲା ବୋଲି ସେ କହୁ ନ ଥିଲେ ।

ଗବେଷକ କହିଲେ—କଓ ବାବୁ ! ସେତେବେଳେ କଅଣ ଗବେଷଣା ହେଉଥିଲା ? ଆଜି ସେ ଦ୍ୱାର ଖୋଲିଛି । ଯାଃ ଯାଃ, କଅଣ ଦ'ପଦ ଦଶମ ଶ୍ରେଣୀରେ ପଢ଼ୁଥିଲେ ଯେ, ସାହସ ଦେଖ । ସବୁ ପୁରୁଣା କାଗଜର ମାଲିକଙ୍କୁ ଜବାବ ଦିଆଯାଇଛି ।

—ହଇଏ ଶୁଣୁଛ ? ଏ ଚଷ୍ଟ୍ରେ ଚେଷ୍ଟ କାହିଁକି କରୁଛ ? ଯାହାକୁ କିଏ ପଢ଼ନ୍ତି ? ରାଧାନାଥଙ୍କର କାଶ ଉଠିଥିଲା ବୋଲି ମହାଯାତ୍ରା ପ୍ରାଞ୍ଜଳ ହୋଇଗଲା ? ଶୁଣ ମ ?

—କଣ କହୁନ ?

—ତମେ ଏ ବାଟ ଛାଡ଼ି କବିତା ଲେଖ ମ । ଜୀବନର କେତେ ଆବେଗ ଉଚ୍ଛ୍ୱାସ ସେଥିରେ ଫୁଟିବ ।

—କଅଣ କହିଲ ? କବିତା ଲେଖିବି ? ମୁଁ ମାଇଚିଆ ହୋଇଛି ? ମୋର

ପୌରୁଷ ନାହିଁ ? ଚଳଚଳ ତରଳ କନକନ ଛନଛନ ଚଳଚଞ୍ଚଳ କବିତା ଲେଖି ମାଇଚଆ ହେବ ? ଆରେ ସେଥିରେ କଣ ଅଛି ?

—ହଇଏ ଶୁଣୁଚ ? ନ ହେଲେ ଉପନ୍ୟାସଟିଏ ଲେଖ ମ । ମଣିଷ ଜୀବନର କେତେ କଥା, କେତେ ବ୍ୟଥା, ଆନନ୍ଦ, କେତେ କଅଣ ସେଥିରେ ଅଛି । କେମିତି ରସାଳ, କେମିତି କରୁଣ । ଲେଖମ, ଖଣ୍ଡିଏ ଉପନ୍ୟାସ ଲେଖ ।

—ବନ୍ଦ କର ରତ୍ନମାଳୀ ! ମୁଁ ଜୀବନରେ ଗଳ୍ପ ଉପନ୍ୟାସ ପଢ଼େନାହିଁ; ଲେଖିବା ଦୂରେ ଥାଉ । ବୁଢ଼ୀ ଆଈ ଗପ କହେ, ବୁଢ଼ାମାନେ ଗପ କହନ୍ତି । ଗୋଟାଏ ଅଶିକ୍ଷିତ ଲୋକ ଗାଁ ଦାଣ୍ଡରେ ଯାଉଁ ଯାଉଁ ଗପ କହିଯାଏ । ଏଗୁଡ଼ାକ ଗପୁଡ଼ିଆ । ଏଗୁଡ଼ାକ ଆଉ କିଛି ଜାଣନ୍ତି ନାହିଁ ବୋଲି ଗପ ଉପନ୍ୟାସ ଲେଖନ୍ତି । ଛି, ଛି···

—ଶୁଣ ମ, କେତେ ହୃଦୟର କଥା ସେମାନେ ଜାଣନ୍ତି କହିଲ ? ତମ ଲେଖା ପଢ଼ି କେବେ ଆଖି ଛଳଛଳ ହେବ ? କିନ୍ତୁ ତାଙ୍କ ଲେଖା ସବୁ ପଢ଼ିଲେ କେତେ ଭାବ କେତେ ଆନନ୍ଦ ମନକୁ ଆସେ । ସେମିତି ଲେଖ ମ ।

—ରତ୍ନମାଳୀ, ତୁମେ ମୋତେ ବିରକ୍ତ କରନାହିଁ । ମୁଁ ଏମିତି କଲେ ଆଉ ଦୁଇଜଣ ଆଗକୁ ମାଡ଼ିଯିବେ; ମୁଁ ପଛରେ ପଡ଼ିଯିବି । ଜଣେ ମାଟି ଭିତର କଥା ଜାଣି-ପାରୁଛି, ଖୋଳା ନାହିଁ, ପୋତା ନାହିଁ ଅଥଚ ସେ କହୁଛି ଯେ ପ୍ରାଚୀ ଉପତ୍ୟକାରେ ବୌଦ୍ଧ ସଂସ୍କୃତି ରହିଛି । ଆଉ ଜଣେ ବନ୍ଧ ଭିତରେ କେତେ ଥର ଗୋଟାଏ ନିର୍ଦ୍ଦିଷ୍ଟ ଅକ୍ଷର ମିଳୁଛି ଓ ତାହା କାହିଁକି ଏତେଥର ଲେଖାଗଲା, ଏସବୁ ଗବେଷଣା କରୁଛି । ଏମାନେ ଅମର ହୋଇଯିବେ ରତ୍ନମାଳୀ, ମୁଁ ଆଉ ତମ ମାଇପିକିଆ ମାନ ଯଦି ହସ, କାନ୍ଦଣା, ବିରସ, ବିଚ୍ଛେଦକଥା ଲେଖିବସେ, ତେବେ ମରିଯିବି । ମତେ କେହି ମନେ ପକେଇବେ ନାହିଁ, ତମେ ଗଲ । ଦଶମଶ୍ରେଣୀର ପାଣ୍ଡିତ୍ୟ ଆଉ ଦେଖାଅ ନାହିଁ । 'ଆରେ ବାବୁ ଶ୍ୟାମଘନ' ଗାୟନ ପଦ୍ଧତିରେ ନିଜ ପୁଅ କେଶବାନନ୍ଦକୁ ଗେଲ କରି ଅଶ୍ରୁ ବର୍ଷଣ କର, ଯାଅ ।

ବିରାଟ ଏକ ସାମିୟାନା ତଳେ ଦେଶର ବୁଦ୍ଧିଜୀବୀ ପଣ୍ଡିତ, ଗବେଷକ, ଐତିହାସିକ ଉପସ୍ଥିତ ଅଛନ୍ତି । ପ୍ରାଚୀ ନଦୀଟି ତରୁଣୀ ବଧୂ ଭଳି ଏତେ ଜନସମାଗମ ଦେଖି ମୁରୁକି ମୁରୁକି ହସି ବୋହିଯାଉଛି । ଆଜି ଦେଶର ଶ୍ରେଷ୍ଠ ଗବେଷକ ରହସ୍ୟର ଦ୍ୱାର ଉଦ୍‌ଘାଟନ କରି ଦେଖାଇଦେବେ ଯେ, ପ୍ରାଚୀତଟରେ ବୌଦ୍ଧ ସଂସ୍କୃତି ଥିଲା ହଜାର ହଜାର ବର୍ଷତଳେ ।

କାଠୁରିଆମାନେ ବୃକ୍ଷଣ୍ଡା ଗଛଟାକୁ କାଟି ଫୋପାଡ଼ି ଦେଲେ । ଖନନ କାର୍ଯ୍ୟ ଚାଲିଲା । ଏଣେ ପକ୍ଷୀଟି ଭୟାନକ ରେକଡ଼ବଜା ଚାଲିଥାଏ । ଚି' ପାଣିର

ବ୍ୟବସ୍ଥା ବି ଥିଲା ।

ଗବେଷକ ଲୋକକାନ୍ତ ଆନନ୍ଦ, ଆଶା ଓ ସାଫଲ୍ୟର ଏକ ପ୍ରତିମୂର୍ତ୍ତି । ଲୋକେ ତାଙ୍କୁ ସମ୍ଭ୍ରମ ଦେଖାଇଛନ୍ତି, ସତେ କି ବିରାଟ ଗବେଷଣା ! ଲୋକଙ୍କର କି ଦିବ୍ୟଦୃଷ୍ଟି !

ମୋଟେ ଦଶହାତ ଖୋଳାଯିବା ପରେ କିଏ ଜଣେ ପାଟିକରି ଡାକିଲା—ମିଳିଲା, ମିଳିଲା ।

—କଣ ମିଳିଲା ?

—ମୂର୍ତ୍ତି ।

—ମୂର୍ତ୍ତି ?

—ହଁ, ବୌଦ୍ଧମୂର୍ତ୍ତି ।

ଲୋକେ ଯେଉଁଠା ଆସନ ଗୁଡ଼ି ମାଡ଼ିଗଲେ । ସ୍ୱେଚ୍ଛାସେବକମାନେ ଉତ୍ସୁକ ଜନତାକୁ ଶାନ୍ତ କରିବାକୁ ଚେଷ୍ଟା କଲେ ।

ବହୁ ଫଟୋଗ୍ରାଫର୍ କାମେରା ଧରି ପ୍ରସ୍ତୁତ ହୋଇଗଲେ ।

ଜଣେ କିଏ କହିଲା—

"ଅବଲୋକିତେଶ୍ୱର ମୂର୍ତ୍ତି । ବାମପାଦର ଅର୍ଦ୍ଧେକ ନାହିଁ; ଦକ୍ଷିଣହସ୍ତ ବି ଖଣ୍ଡିତ ।"

ଅନ୍ୟ ଜଣେ କହିଲେ—ହେବନାହିଁ ? ହଜାର ହଜାର ବର୍ଷ ତଳର ମୂର୍ତ୍ତି ! କାଳର ଅବକ୍ଷୟ ତଳେ ଏକାବେଳକେ ଧ୍ୱଂସ ନ ହୋଇ ଯେ ଏପରି ରହିଛି, ମନେ ହେଉଛି ପ୍ରାଚୀ ନଦୀର ମୃତ୍ତିକାଶଯ୍ୟାରେ ହିଁ ଏହା ଏପର୍ଯ୍ୟନ୍ତ ସୁରକ୍ଷିତ ରହିଥିଲା ।

ଲୋକକାନ୍ତ ସେତେବେଳେ ଗାଁ କାଳସାଁ ଭଳି କେବଳ ଠଲୁଥିଲେ । ସେ ସ୍ୱପ୍ନ ଦେଖୁଥିଲେ । ଗୋଟାଏ ସାମାନ୍ୟ ଷ୍ଟେଟ୍ ଓଡ଼ିଶାରେ ସେ ଆଉ ରହିବେ ନାହିଁ । ବିଶ୍ୱସାରା ବୁଲି ପ୍ରତ୍ନତତ୍ତ୍ୱର ଅନୁସନ୍ଧାନ ସେ କରିବେ । ସେଥିପାଇଁ ସବୁଆଡ଼ୁ ତାଙ୍କୁ ସାହାଯ୍ୟ ମିଳିବ ବୋଲି ସେ ଜାଣିଥିଲେ । ସେ ବଡ଼ ହୋଇଗଲେ ।

ପ୍ରାଚୀତଟରେ ବୌଦ୍ଧ ସଂସ୍କୃତିର ତତ୍ତ୍ୱ ପ୍ରତିଷ୍ଠିତ ହୋଇଗଲା ।

ପୁରୀଧାମର ସ୍ୱର୍ଗଦ୍ୱାର ଶ୍ମଶାନରେ ପଥୁରିଆ ସାହିର ଶିଳ୍ପୀ ସାରଥି ମହାପାତ୍ରଙ୍କର ଶରୀର ଦଗ୍ଧ ହୋଇଯାଇଥିଲା କେତେକାଳୁ ।

ବସୁର ବୃକୁଣ୍ଡା ଗଛ ?

ଅବଲୋକିତେଶ୍ୱରଙ୍କର ମୁଣ୍ଡ ଉପରେ ରହି ବି ରକ୍ଷା ପାଇଲା ନାହିଁ । କଟା ଗଛଟା ଭାସିଗଲା ପ୍ରାଚୀ ନଦୀର ସୁଅମୁହଁରେ ବଡ଼ ଅନ୍ଧାରୁ ବଡ଼ ଅନ୍ଧାର ଭିତରେ ।

# ନିଶୀଥର ପ୍ରେତାତ୍ମା

## ପ୍ରାଣବନ୍ଧୁ କର

ଗୋଟିଏ ଛୋଟିଆ ଜୀବନର ଛୋଟିଆ ଇତିହାସ—ଭାରତର ଗଣତନ୍ତ୍ର ଶାସନର ଦ୍ୱିତୀୟ ସାଧାରଣ ନିର୍ବାଚନ ପାଇଁ ଛ'ଟି କେନ୍ଦ୍ରରେ ଭୋଟ ଗ୍ରହଣ କାର୍ଯ୍ୟ ଶେଷ କରି ପ୍ରିଜାଇଡ଼ିଂ ଅଫିସର ବିଶ୍ୱବନ୍ଧୁ କଟକ ଫେରୁଚି ଇଲେକ୍‌ସନ ଟ୍ରକ୍‌ରେ । ପ୍ରଥମ ସାଧାରଣ ନିର୍ବାଚନରେ ସେ ବସ୍‌ରେ ଯାଇଥିଲା ଆଉ ଫେରିଥିଲା; କିନ୍ତୁ ଏଥର ଦୀର୍ଘ ମାସେ କାଳ ଖରାରେ ତରାରେ ଖାଲ ଢିପ ରାସ୍ତାରେ ଧକଡ଼ ଚକଡ଼ ହୋଇ ମାଲବୁହା ଟ୍ରକରେ ପୋଲିଂ ପାର୍ଟି ସହିତ ବିଶ୍ୱବନ୍ଧୁ ଫେରୁଚି ଶ୍ରାନ୍ତ କ୍ଳାନ୍ତ ହୋଇ । ସାଥିରେ ସେ ପ୍ରଥମ କରି ରକ୍ତ-ଆମାଶୟ ରୋଗ ଧରି ଫେରୁଚି—ତା ପାଇଁ ଟ୍ରକ୍‌ଟା ବାଟରେ ପାଣିଥିବା ଜାଗା ଦେଖି ପ୍ରାୟ ପନ୍ଦର ଥର ଅଟକିଲଣି । ରାତି ଦୁଇଟା—ଜହ୍ନ ଆଲୁଅ ରାସ୍ତାକଡ଼ର ଦ'ପଟ ଗଛର ଡାଳରେ ବାଝି ହୋଇ ଯାଉଛି—ବିଶ୍ୱବନ୍ଧୁ ବସିଚି ଡ୍ରାଇଭର ପାଖେ, ଆଉ ତା ପୋଲିଂ ପାର୍ଟିର ଅନ୍ୟାନ୍ୟ ସଭ୍ୟମାନେ ଟ୍ରକ୍‌ର ଖୋଳଡ଼ା ଭିତରେ ବିକ୍ଷିପ୍ତ ଭାବରେ ରଖାହୋଇଥିବା ମାଲପତ୍ର ଭିତରେ କୌଣସି ପ୍ରକାରେ ଖୁନ୍ଦାଖୁନ୍ଦି ହୋଇ ବସିଛନ୍ତି । ଟ୍ରକ୍ ହଠାତ୍ ଖାଲରେ ପଡ଼ି ଉଠିଗଲାବେଳକୁ ସେମାନଙ୍କ ଶରୀରଗୁଡ଼ିକ ଟ୍ରକ୍ ଚଟାଣ ଦେହରୁ ହାତେ ଉପରକୁ ଉଠିଯାଇ ପୁଣି ଯଥା ସ୍ଥାନକୁ ଫେରିଗଲାବେଳେ ତାଙ୍କର ମୁହଁରେ ଯେଉଁ ବିକଳ ଭାବ ଫୁଟିଉଠୁଚି, ତାହା ଇଲେକ୍‌ସନ୍ କର୍ମକର୍ତ୍ତାଙ୍କ ଆଖିରେ ପଡ଼ିପାରୁନି ବୋଲି ବିଶ୍ୱବନ୍ଧୁ ମନରେ ଦାରୁଣ କ୍ଷୋଭ । ପୋଲିଂ କର୍ମଚାରୀମାନଙ୍କୁ ଖରାଦାଉରୁ ରକ୍ଷା କରିବା ପାଇଁ ବତା ଫ୍ରେମ୍ ଉପରେ ଗୋଟିଏ ଟରପୁଲିନ୍ ଢାଙ୍କି ଦିଆହୋଇଚି । ଇଲେକ୍‌ସନ୍ କାମରେ ଶୁଭଯାତ୍ରା ପୂର୍ବଦିନ ଯେତେବେଳେ ଖୋଲା ଟ୍ରକ୍ ଉପରେ ଏଇ ଟରପୁଲିନ୍‌ର ଛାତ ତିଆରି କାମ ଚାଲିଥିଲା, ସେତେବେଳେ କୌତୂହଳ ଦୃଷ୍ଟିରେ ବସ୍ତିର ପାଚିଲା ଦାଢ଼ିଆ ବସିର୍ ମିଆଁଠାରୁ ଆରମ୍ଭ କରି ଚାରିବର୍ଷିଆ ଟୁଆ ପର୍ଯ୍ୟନ୍ତ ସମସ୍ତେ ଟ୍ରକ୍ ଚାରିପଟେ ଜମା ହୋଇଯାଇଥିଲେ । ବସ୍ତିବାଲାଙ୍କର ଆଗ୍ରହ ଦୃଷ୍ଟି ଟ୍ରକ୍‌ର ଏଇ ଆକସ୍ମିକ ଓ କ୍ଷଣସ୍ଥାୟୀ ପଦୋନ୍ନତି ପ୍ରତି ଏକ କଟାକ୍ଷ ଭାବ ଶିଖି

ଡ୍ରାଇଭର ଅଜିତ ସିଂ କିପରି ଗୋଟାଏ ଅସ୍ୱସ୍ତି ଅନୁଭବ କରୁଥିଲା; ସୁତରାଂ ବସ୍ତିବାଲାଙ୍କ ଭିଡ଼ ବଢ଼ିବାରୁ ସେ ସେମାନଙ୍କୁ ଘଉଡ଼େଇବାକୁ ଚେଷ୍ଟା କଲା; କିନ୍ତୁ କଟକୀ ବସ୍ତିର ଟୁଆ ସେମାନେ, ସହଜରେ ହାଲ ଛାଡ଼ନ୍ତି ନାହିଁ ।

ବିଶ୍ୱବନ୍ଧୁର ସ୍ତ୍ରୀ ଅଞ୍ଜଳି ଝରକା ପାଖରେ ଠିଆ ହୋଇ ଟ୍ରକ୍‌ର ଏ ସୌଭାଗ୍ୟ ଲକ୍ଷ୍ୟ କରୁଥିଲେ ମୁରୁକିହସା ଦେଇ—ବିଶ୍ୱବନ୍ଧୁ ତା ଦେଖିପାରି କହିଲା, "ଏଇ ଟ୍ରକ୍‌ରେ ଆମେ ବୁଢ଼ା ହୋଇଯିବୁ ଶହ ଶହ ମାଇଲ; ଛ' ଛ'ଟା ବୁଥ୍‌ରେ କାମ କରିବୁ···"

"ମନ୍ଦ କଣ ? ଇଟା କାଠ ବଦଳରେ ତୁମେମାନେ ବୁଢ଼ା ହୋଇଯିବ"—ଅଞ୍ଜଳି ପରିହାସ ଭଙ୍ଗୀରେ କହିଲା ।

"ମୁଁ ଭାବିପାରୁନି, ରିଟର୍ଣ୍ଣିଂ ଅଫିସର ଆମକୁ ସବୁ ଇଟା କାଠ ସଙ୍ଗେ ସାମିଲ କଲେ କିମିତି ?"

ଅଞ୍ଜଳି କହିଲା, "ତାହିଁକି ଭାବିପାରିଲନି; ଭୋଟ କାମଟା କଅଣ ଦେଶକାମ ନୁହେଁ ? ସେଥିପାଇଁ ସ୍ୱାର୍ଥ ଓ ସୁଖ-ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିବାକୁ ପଡ଼ିବ···।"

ଅଞ୍ଜଳିର ଏପରି ଏକ ମନ୍ତବ୍ୟ ବିଶ୍ୱବନ୍ଧୁ ଆଶା କରି ନ ଥିଲା—ବ୍ୟଥିତ ହୋଇ କହିଲା—"ଲାଭ ?"

"ଲାଭ ନାହିଁ କହୁଚ ? ବେଶ୍ ଲାଭ ଅଛି । ଦେଖୁନ, ଯେଉଁମାନେ ବ୍ରିଟିଶ ସରକାରଙ୍କ ଅମଳରେ ଦେଶର କଂଗ୍ରେସ ନେତାମାନଙ୍କୁ ଜେଲରେ ଠୁଙ୍କ ଦେଇ ଗୋରା ସାହେବମାନଙ୍କଠୁ ବାହାବା ପାଉଥିଲେ, ସେମାନେ ଏବେ ରାଜଦତ୍ତ ଉପାଧି ଛାଡ଼ିଛୁଡ଼ି ଦେଇ ଖଦଡ଼ ପିନ୍ଧି କାର୍ ଚଢ଼ି ବୁଲିବାରୁ ତାଙ୍କୁ ନେତୃତ୍ୱ ଦେବାପାଇଁ ଦେଶଲୋକେ କିମିତି ବ୍ୟାକୁଳ—ଦେଖୁନ, ସେମାନଙ୍କର ମହନୀୟ ସ୍ୱାର୍ଥତ୍ୟାଗ ଦେଶବାସୀଙ୍କୁ କିମିତି ମୁଗ୍ଧ କରିଚି···"

"ମୋର ତେବେ ସେମିତି କିଛି ଲାଭ ହବ ବୋଲି ଭାବୁଚ ଅଞ୍ଜଳି ?"

"ସେ ଧରଣର ଲାଭ ନ ହୋଇପାରେ—ତେବେ ଇଲେକ୍‌ସନ୍‌ରୁ ଫେରିଆସିଲେ ଅନ୍ତତଃ ଆମାଶୟ, ଇନ୍‌ଫ୍ଲୁଏଞ୍ଜା କିମ୍ବା ଟାଇଫଏଡ୍ ଲାଭ ହବ ତ ?"

ବିଶ୍ୱବନ୍ଧୁ ଅଞ୍ଜଳିର ବିଚକ୍ଷଣତାରେ ମୁଗ୍ଧ ହୋଇଯାଇ କହିଲା, "ଅଞ୍ଜଳି, ବି. ଏ. ପାଶ ପରେ ମତେ ବାହା ନ ହୋଇ ତୁମେ ରାଜନୀତି କରିଥିଲେ ଏତେବେଳକୁ ମନ୍ତ୍ରୀ ହୋଇସାରନ୍ତଣି ।"

ଅଞ୍ଜଳି ଫିକ୍‌କରି ହସିପକେଇ କହିଲା—"ଭୁଲ୍ କରି ପକେଇଥିଲି । ସେତେବେଳେ ଭାବିଲି, ମନ୍ତ୍ରିତ୍ୱ ପାଇବା ସହଜ; ମନ୍ତ୍ରୀ ମନକୁ ପାଇବା ସହଜ ନୁହେଁ···"

ବିଶ୍ୱବନ୍ଧୁ କହିଲା—"ବର୍ତ୍ତମାନ ବ ତ ସେ ଭୁଲଟା ଠିକ୍ କରି ନେଇ ପାରିବ ? ତମର ବୁଦ୍ଧି ଅଛି, ବିବାହର ଷୋଳ ବର୍ଷ ପରେ ମଧ୍ୟ ସୌନ୍ଦର୍ଯ୍ୟ ମଣିଙ୍କୁ ଧରିନ..."

ଅଞ୍ଜଳି ବିଶ୍ୱବନ୍ଧୁର କଥାଟାକୁ ଗ୍ରହଣ କରିନେଲା ଭଳି ଭାବ ଦେଖେଇ କହିଲା—"ମନ୍ଦ ହୁଅନ୍ତା ନାହିଁ । ରାଣୀ ଏଲିଜାବେଥ୍ କୌଣସି ଉତ୍ସବରେ ଯୋଗ ଦେଲାବେଳେ ଡିଉକ୍ ଅଫ୍ ଏଡ଼ିନ୍‌ବରା ଯେମିତି ତାଙ୍କ ପଛେ ପଛେ ଚାଲିଥାନ୍ତି ଓ ତାଙ୍କ ପଛରେ ତାଙ୍କ ପିଲାମାନେ, ମୁଁ ସଭା-ସମିତି ବା ଉତ୍ସବରେ ଯୋଗ ଦେଲାବେଳେ ମୋ ପଛେ ପଛେ ଛୁଆମାନଙ୍କୁ ଧରି ତମେ ବି ଚାଲିଥାନ୍ତ କିମ୍ବା ମୁଁ ଯଦି ତମ ଡିପାର୍ଟମେଣ୍ଟର ମନ୍ତ୍ରୀ ହୁଅନ୍ତି, ତେବେ ମତେ ଘନଘନ ଦଣ୍ଡବତ କରୁଥାନ୍ତ ।"

ବିଶ୍ୱବନ୍ଧୁ ହସି କହିଲା—"କିନ୍ତୁ ମାଡ଼ାମ୍, ଦି ଡଗ୍ ହ୍ୟାଜ୍ ହିଜ୍ ଡେ ଆଲ୍‌ସୋ । ଘରକୁ ଫେରିଆସିଲା ପରେ ପ୍ରିନ୍ସ ଆଲବର୍ଟ ରାଣୀ ଭିକ୍ଟୋରିଆଙ୍କୁ ଦଣ୍ଡେଇଲା ଭଳି ମୁଁ ବି ତମକୁ ଦଣ୍ଡେଇଦିଅନ୍ତି—ବୁଝିଲ ?"

ଅଞ୍ଜଳି ଓଠ ବଙ୍କେଇ କହିଲା—"ଇସ୍.....ଚାକିରି ଭୟ ନାହିଁ ? ସାଙ୍ଗେ ସାଙ୍ଗେ ଅଫିସକୁ ଯାଇ ବରଖାସ୍ତ ଅର୍ଡ଼ର ।"

"ହଁ ହଁ, ଭାରି ବରଖାସ୍ତ କଲାବାଲା । ପାଞ୍ଚବର୍ଷ ପରେ ଯେତେବେଳେ ଆସେମ୍ବ୍ଲିକୁ ନିର୍ବାଚିତ ନ ହୋଇ ପାରନ୍ତି, ସେତେବେଳେ ତମ ମଜାଟା ବାହାରି ଯାଆନ୍ତା ।"

ସ୍ୱାମୀ, ସ୍ତ୍ରୀଙ୍କର ଏଇ ମଧୁରାଳାପରେ ବାଧା ଦେଇ ଶିଖ୍ ଡ୍ରାଇଭର ଆସ୍ତେ କହିଲା—"ଜୀ ହୋଗିଆ ।"

ବିଶ୍ୱବନ୍ଧୁ ଦେଖିଲା ଟ୍ରକ୍‌ର ରୂପ ବଦଳି ଯାଇଛି । ଟ୍ରକ୍‌ର ଚାରିକଡ଼ ଉପରେ ଟର୍‌ପୁଲିନ୍‌ଟା ପଡ଼ିଗଲା ପରେ ଛାତଟା ଶଗଡ଼ ଗାଡ଼ିର ଗୋଲିଆ ତାଳପତ୍ର ବା ଛଲେଇ ଛାତ ଭଳି ଦେଖାଯାଉଚି; କିନ୍ତୁ ଶଗଡ଼ ନୁହେଁ କି ବସ୍ ନୁହେଁ—ପଶୁ ନୁହେଁ କି ପକ୍ଷୀ ନୁହେଁ । ଡ୍ରାଇଭର ଟ୍ରକ୍‌ର ପଛପଟେ, କଡ଼ରେ ଓ ସାମନାରେ ଛପା ଅକ୍ଷରରେ ଇଂରେଜୀରେ ଲେଖା ହୋଇଥିବା "ଅନ ଇଲେକ୍‌ସନ ଡିଉଟି ଓ ପାର୍ଟି ନମ୍ବର ୫୦୦" କାଗଜଗୁଡ଼ିକ ମାରି ଦେଇ ଟ୍ରକ୍‌ର ମାନ-ସମ୍ମାନ ବଢ଼ାଇବାରେ ଯଥେଷ୍ଟ କୋସିସ୍ କରିଚି... ।

ଆଜି ସେଇ ଟ୍ରକ୍‌ଟି ଜହ୍ନରାତିରେ ଫେରୁଚି.....ପୋଲିଂ କର୍ମଚାରୀ ଓ ଟ୍ରକ୍‌ର ଗଲାବେଳର ସଜ୍ଜିକତା ଫେରିଲାବେଳକୁ ନାହିଁ—ନୂଆ ମାଟିପକା ରାସ୍ତାରେ ମାଇଲ ମାଇଲ ପଡ଼ି ଉଠି ଯିବାଦ୍ୱାରା ଟର୍‌ପୁଲିନ୍ ଛାତଟି ଗୋଟିଏ ଲେସଡ଼ା ଆମ୍ବ ଭଳି

ଦେଖାଯାଉଛି……ଟ୍ରକ୍ ଆସି ବଡ଼ଚଣା ପୁଲିସ ଷ୍ଟେସନ ସାମନାରେ ପହଞ୍ଚିଗଲା । ବିଶ୍ୱବନ୍ଧୁ ଦେଖିଲେ ଗୋଟିଏ ପଡ଼ିଆରେ ବହୁତଗୁଡ଼ିଏ ପେଟ୍ରୋମାକ୍ସ ଜଳୁଛି…… ଦୋଳଯାତ୍ରା । ପୋଲିସ ଅଫିସରମାନେ କହିଲେ—"ସାର୍, ଆମେ ଟିକିଏ ଯାତ୍ରା ଦେଖିବୁ ।"

ବିଶ୍ୱବନ୍ଧୁ ସାଙ୍ଗେ ସାଙ୍ଗେ ରାଜି ହୋଇଯାଇ ପଚାରିଲେ, "ଏଠି ପାଖରେ ପୋଖରୀ କମ୍ବା ଗାଡ଼ିଆ ନ ଥିବ ?"

ଟ୍ରକ୍ ରାସ୍ତାକଡ଼ରେ ରହିଲା—ପୋଲିସ ଅଫିସର ଓ ପୁଲିସ ପାର୍ଟି ଦୋଳଯାତ୍ରା ଦେଖି ବାହାରିଲେ । ଆଉ ପ୍ରିଜାଇଡ଼ିଂ ଅଫିସର ଗାମାପଟା ବାହାର କରି ବାହାରିଲେ ପଡ଼ିଆର ସନ୍ଧାନରେ ।

ସାମାନ୍ୟ ସୁସ୍ଥ ବୋଧକରି ବିଶ୍ୱବନ୍ଧୁ ଫେରିଆସିଲେ ଟ୍ରକ୍ ପାଖକୁ; କିନ୍ତୁ ଯାହା ଦେଖିଲେ, ସେଥିରେ ସେ ବିସ୍ମିତ ହେଲେ ।

ଟ୍ରକ୍‌ର ଧାଁ ପଟ ପଛ ଓ ସାମନା ଚକ ମଝିରେ ଗୋଟିଏ ଲୋକ ବସିଚି… ବିଶ୍ୱବନ୍ଧୁ ଭାବିପାରିଲେ ନାହିଁ କି ଉଦ୍ଦେଶ୍ୟରେ ଗୋଟାଏ ଲୋକ ଟ୍ରକ୍ ତଳେ ବସିପାରେ ! ଟ୍ରକ୍ ତଳ ଅନ୍ଧାର, ଲୋକଟିର ଦେହର ରଙ୍ଗ ମଧ୍ୟ କଳା; ତାର ଛିଣ୍ଡା ମଇଳା ଲୁଗାରୁ ଜାଣିହେବନି ଗୋଟାଏ ଲୋକ ଟ୍ରକ୍ ତଳେ ବସିଚି ବୋଲି…ସେଠି ଲୋକଟାର ଉପସ୍ଥିତି କେହି ଜାଣି ପାରି ନ ଥିଲେ ଟ୍ରକ୍ ଯେତେବେଳେ ଚାଲିବାକୁ ଆରମ୍ଭ କରିଥାନ୍ତା, ସେ ଲୋକଟି ଅବଶ୍ୟ ମରିଥାନ୍ତା…ତା ପରେ ? …ତା ପରେ ଇନ୍‌କୁଆରି…ଇଲେକ୍‌ସନ ପାର୍ଟି ନଂ ୫୦୦ ଟ୍ରକ୍ ଗୋଟିଏ ଭିକାରି ଉପରେ ମାଡ଼ି ଯାଇ ତାକୁ ମାରିଦେଇଛି…କେହି ବୁଝିପାରି ନ ଥାନ୍ତା ଅସଲ କଥା…ଡ୍ରାଇଭର ହତଭାକ୍ ହୋଇ ଭାବିଥାନ୍ତା ଲୋକଟା ଉପରେ ସେ କେତେବେଳେ ଟ୍ରକ୍ ଚଢ଼େଇ-ଦେଲା । ପ୍ରିଜାଇଡ଼ିଂ ଅଫିସର ବିଶ୍ୱବନ୍ଧୁ ମଧ୍ୟ ବିସ୍ମିତ ହୋଇ ଠିକ୍ ସେଇ କଥା ହିଁ ଭାବନ୍ତା ।

ଉତ୍‌କ୍ତ ଗଳାରେ ବିଶ୍ୱବନ୍ଧୁ ପଚାରିଲା—"କିଏ ବସିଚରେ ମଟର ତଳେ ?" ଲୋକଟି ନିରୁତ୍ତର ରହିଲା । ବେକଟି ନୁଆଁଇ ଦେଇ ସେ ବସିରହିଲା ଏକ ଚିନ୍ତାଶୀଳ ଦାର୍ଶନିକ ଭଳି ।

ବିଶ୍ୱବନ୍ଧୁର ଗଳା ପଞ୍ଚମକୁ ଉଠିଲା…ତଥାପି ସେ ଲୋକଟି ବସିରହିଲା ଧ୍ୟାନମଗ୍ନ ବୁଦ୍ଧଙ୍କ ଭଳି ।

ସପ୍ତମକୁ ଉଠିଲା ବିଶ୍ୱବନ୍ଧୁର ଗଳା ।

"ଜରେ, କିଏ ବସିଚ ସେଠି, ପାଟି ନାହିଁ ?"

କ୍ଷୀଣ ଅଥଚ ଦୃଢ଼ ଏକ ବୃଦ୍ଧ କଣ୍ଠରୁ ଉତ୍ତର ଆସିଲା—

"ମୁଁ ବସିଛି… ।"

ନିର୍ଭୟ ନିଃସଙ୍କୋଚ ଗୋଟିଏ ଦ୍ୱିପଦିଆ ଉତ୍ତର—

"ତୁ ବୋଇଲେ କିଏ ?"

ବୃଦ୍ଧ ପୁଣି କହିଲା, "ମୋର ଡିଷ୍ଟର ନୁହେଁ ବାବୁ…ଆପଣ କାହିଁକି ଏମିତି ରାଗୁଛ ।"

ବିଶ୍ୱବନ୍ଧୁର ଚିତ୍କାରରେ ଗାଁର କେତେଗୁଡ଼ିଏ ଲୋକ ଆସି ଜମା ହୋଇଗଲେ… ଗୋଟିଏ ପିଲା କହିଲା—"ଆରେ ହେ, ଇଏ ତ ଚଇଁ ଜେନା କୋଢ଼ିଆ ।"

"କାହିଁକି ସେ ଟ୍ରକତଳେ ଯାଇ ବସିଛି ?" ବିଶ୍ୱବନ୍ଧୁ ସେଇ ପିଲାଟି ଆଡ଼େ ଚାହିଁ ପଚାରିଲା ।

"ମୁଁ କହିପାରିବିନି—"

ଆଉ ଜଣେ ଗ୍ରାମବାସୀ କହିଲା—

"ଆଜ୍ଞା କୋଢ଼ିଆଟା ଭାରି କଷ୍ଟ ପାଉଛି । ମୋଟର ତଳେ ଜୀବନ ହାରି-ଦେବାକୁ ବସିଛି ବୋଧେ ।" ବିଶ୍ୱବନ୍ଧୁ ଚଇଁ ଜେନାକୁ ଚାହିଁ କହିଲା, "ଏ, ଚାଲିଆ ସେଠୁଁ…"

ବିଶ୍ୱବନ୍ଧୁ ଅପେକ୍ଷା କଲା—କିନ୍ତୁ ଚଇଁ ଜେନା ଚଳିଲା ନାହିଁ । ଜମା ହୋଇଥିବା ଲୋକମାନଙ୍କ ଭିତରୁ ଜଣେ ବୁଢ଼ା କହିଲା—

"ଜରେ ଚଇଁଆ, ଆସୁନୁ କିଆଁ…ବାବୁଙ୍କର ଡେରି ହେଉଛି, ମୋଟର ଛାଡ଼ିବେ ।"

"ଛାଡ଼ୁନାହାନ୍ତି ମୋଟର, ମୁ କଅଣ ତାଙ୍କୁ ମନା କଲି ?"

"କିମିତି ଛାଡ଼ିବେ, ତୁ ତା' ତଳେ ବସିଛୁ ମଟର ଅଖଟାକୁ ଜାବୁଡ଼ି ଧରି ।"

"ମୁଁ ଏଇ ଅଖ ଉପରେ ଟିକିଏ ବସି କରି ଚାଲିଯିବି…"

ରାଗିଯାଇ ବିଶ୍ୱବନ୍ଧୁ ପଚାରିଲା—"କୁଆଡ଼େ ଚାଲିଯିବୁ ?"

"ଛତିଆ ।"

"ଅଖ ଉପରେ ବସି କରି ଗଲେ ଖସିପଡ଼ିବୁ…ମରିବୁ ।"

"ହଉ ବାବୁ, ମଲେ ମରିବି…ବଞ୍ଚି କରି କୋଉ ଲାଭ ହଉଛି ?"

ବିଶ୍ୱବନ୍ଧୁ ହତାଶ ଭାବରେ ଗ୍ରାମବାସୀମାନଙ୍କ ଆଡ଼େ ଚାହିଁ କହିଲା—"ବଡ଼ ମୁସ୍କିଲ କଥା ହେଲା…ଆମେ ଯିବୁ ଏବେ କିମିତି ? ଏ ବୁଢ଼ାର ଆଉ କିଏ ଅଛି ?"

ପୂର୍ବୋକ୍ତ ବୁଢ଼ା ଜଣକ କହିଲା—"ତାର ଆଉ କେହି ନାହିଁ; ପୁଅ ମରିଗଲା ପରେ

ତା ବୋହୂ, ଆଉ ଜଣକୁ ଦୁତାସ୍ତ ହୋଇ ଚାଲିଗଲା ।"

ବିଶ୍ୱବନ୍ଧୁ ପକେଟରୁ ଗୋଟିଏ ଆଠଣି ବାହାର କରି ଚଇଁ ଜେନାକୁ ଯାଚିଲା—କିନ୍ତୁ ସେଥିପ୍ରତି ଭ୍ରୂକ୍ଷେପ ନ କରି ସେ କହିଲା, "ମୋର ପ୍ରିଏ କଣ ହେବ ବାବୁ···ମତେ ଟିକିଏ ଖାଲି ଛଡଆବଟରେ ପହଞ୍ଚେଇ ଦିଅ ।"

ଚଇଁ ଜେନାର ଗଳାରେ ଅନୁନୟ ନ ଥିଲା—ଥିଲା ଦାବି···କହିଲା—"କେତେ ବାବୁ ଏଇ ବାଟେ ମୋଟରରେ ବସି ଗଲେଣି—କେତେ ନେହୁରା ହେଇ କହିଲି ମତେ ଟିକିଏ ଛଡଆରେ ପହଞ୍ଚେଇ ଦିଅ - ମୁଁ ମଟର ତଳେ ବସି ଚାଲିଯିବି—କେହି କଆଁ ଶୁଣନ୍ତି ।"

ବିଶ୍ୱବନ୍ଧୁ ବୁଝି ପାରିଲା ଯେ ଶେଷ ଉପାୟ ଭାବରେ ଚଇଁ ଜେନା କାହାକୁ ଅପେକ୍ଷା ନ କରି ଟ୍ରକ ତଳେ ଆକ୍‌ସେଲକୁ ଜାବୁଡ଼ି ଧରି ବସିଚି । ସେ ଜାଣେ, ତାକୁ କେହି ଛୁଇଁବାକୁ ସାହସ କରିବେ ନାହିଁ ।

ଧମକ ଦେଇ ବିଶ୍ୱବନ୍ଧୁ କହିଲା—

"ତୁ ଯଦି ଗାଡ଼ିତଳୁ ନ ବାହାରୁ ତେବେ ପୁଲିସ ଡାକି ତତେ ସେଠୁ ବାହାର କରେଇବି ।"

ଚଇଁ ଜେନା ଅତି ନିର୍ବିକାର ଭାବରେ ଏ କଥାଗୁଡ଼ାକ ଶୁଣିଗଲା ।

ଅଜିତ୍ ସିଂ ଡ୍ରାଇଭର ଯାଇ ଦେଖି ଫେରିଲା···

ବିଶ୍ୱବନ୍ଧୁ ତାକୁ ଟର୍ଚ୍ଚଟା ଆଣିବାକୁ କହିଲା···ଟର୍ଚ୍ଚର ଆଲୁଅ ଚଇଁ ଜେନାର ବିକଳାଙ୍ଗଟିକୁ ଆଲୋକିତ କଲା···ଶିହରି ଉଠିଲା ବିଶ୍ୱବନ୍ଧୁ···ରକ୍ତହୀନ ଠାକରି ମୁହଁରେ ବିଦ୍ରୋହର ଏକ ଦୃଢ଼ ସଙ୍କେତ । ମାଦଳା ହାତ ଦୁଇଟା ତାର ଚକର ଆକ୍‌ସେଲ ଉପରେ ଅଠାରେ ଲାଗିଗଲା ଭଳି ରହିଛି । ଅଜିତ୍ ସିଂ ଘୃଣାରେ ନାକ ଟେକି କହିଲା ତା ଓଡ଼ିଆରେ—"ଯେ ତୋ ଜା ଏକ କୋଢ଼ିଆ ଅଛି···ଆବବେ ଏ ଲେଙ୍ଗଡ଼ା, ଉହାଁ ବସିକରି କଣ କରୁଚୁ···ଚଲ୍—ନିକଲ୍ ।"

ବିଶ୍ୱବନ୍ଧୁ ଡ୍ରାଇଭରକୁ ଇଙ୍ଗିତରେ ଚଇଁ ଜେନାକୁ ଗାଳିଦବାକୁ ମନାକଲା ।

ବହୁଲୋକଙ୍କର ବହୁ ଅନୁରୋଧ ପରେ ବି ଚଇଁ ଜେନା ଟ୍ରକ୍‌ତଳେ ଅଚଳ ଅଟଳ ଭାବରେ ବସିରହିଲା··· ।

"ଏ ବୁଢ଼ା ଆମକୁ ହରବରରେ ପକେଇବ ଦେଖୁଚି—ହଉ, ଦେଖାଯାଉ କଅଣ ହଉଚି—ଡ୍ରାଇଭର, ତମେ ଯାଅ ! ଯାଉରୁ ସମସ୍ତଙ୍କୁ ଡାକି ଆଣିବ—ବୁଢ଼ାକୁ କିଛି ମାରଧର କି ଗାଳିଗୁଲଜ କରିବନି···ମୁଁ ଆସେ—" କହି ଆମାଶୟ ରୋଗୀ ବିଶ୍ୱବନ୍ଧୁ ତରତର ହୋଇ ଗାଡ଼ିଆ ଆଡ଼େ ଚାଲିଗଲା ।

ଫେରିଆସିଲାବେଳକୁ ଟ୍ରକ୍ ପାଖରେ ଗୋଟିଏ କନଷ୍ଟେବଲ ଛଡ଼ା ଆଉ କେହି ନାହାନ୍ତି, କିନ୍ତୁ ଚଇଁ ଜେନାର କୌଣସି ସ୍ଥାନ ପରିବର୍ତ୍ତନ ହୋଇନି । ଯଥାସମ୍ଭବ ନିକଟକୁ ଯାଇ ନିମ୍ନସ୍ୱର, କହିଲି—

"ଏ ଚଇଁ ଜେନା, ଆ ଚଟକରି ବାହାରିଆ—ମୁଁ ତତେ ଗୋଟେ ଟଙ୍କା ଦଉଚି ନେ···କାହିଁକି ଏମିତି ଆମକୁ ହଇରାଣ କରୁଚୁ କହିଲୁ ? ଆ···ବାହାରି ଆ—ତା' ନ ହେଲେ ପୁଲିସ ଆସି ତତେ ମାରଧର କରିବେ··· ।

ନିର୍ଭୀକ ଭାବରେ ଚଇଁ ଜେନା ଉତ୍ତର କଲା, "ମୁଁ କିଣ କଲି କି, ପୁଲିସ ମତେ ମାରିବେ···ମୁଁ ଇସ୍କୁଲ ଉପରେ ଟିକିଏ ବସି ଛତିଆ ଯାଏଁ ଚାଲିଯିବି !"

"ଛତିଆ କାହିଁକି ଯିବୁ କହିଲୁ ?"

"ଛତିଆବଟଙ୍କ ଠେଇଁ ଅଧିଆ ପଡ଼ିବି ।"

ମାଦଳ ହୋଇସାରିଲା ପରେ ବି ଚଇଁ ଜେନା ଅଧିଆ ପଡ଼ିବ·····ଚଇଁ ଜେନା ବର୍ତ୍ତମାନ ବି ଭାବୁଚି ତାର ହାତଗୋଡ଼ ସବୁ କଅଁଳିଯିବ । ବନ୍ଧୁବନ୍ଧୁର ବିସ୍ମୟର ସୀମା ରହିଲାନି ।

ସେ ପଚାରିଲେ—"ଯେତେବେଳେ ଚାଲିଚାଲି ଯାଉଥିଲୁ ସେତେବେଳେ କିଆଁ ଛତିଆବଟକୁ ଚାଲିଗଲୁନି ? ମୋଟେ ତ ଛ' କି ସାତ ମାଇଲ ବାଟ ।"

ସେଇ ଅନ୍ଧାର ଭିତରେ ବି ଚଇଁ ଜେନାର ବଡ଼ବଡ଼ ଆଖି ଦୁଇଟି ଜଳିଉଠିଲା ପରି ଜଣାଗଲା···କହିଲା—

"ମୁଁ ଯାଇ ପାରିଥାନ୍ତି—ହେଲେ ଏଇ ଧୋବଧାଉଳିଆ ବାବୁମାନଙ୍କ ପେଇଁ ଯାଇ ପାରିଲିନି ।

'ପାଞ୍ଚବର୍ଷ ତଳେ ମୋ ଦିହରେ ଏ ବେମାରି ବାହାରିଲା । ଦିହଯାକ ଛଉ ହୋଇଗଲା । କାନ ନାକ ଫୁଲିଗଲା···ମତେ ସମସ୍ତେ କହିଲେ, ଛତିଆବଟଙ୍କ ପାଖେ ଅଧିଆ ପଡ଼ିଲେ ଭଲ ହେଇଯିବ···ବଡ଼ ପ୍ରତେଖ ଠାକୁରେ···ସେଇ ବର୍ଷ ଇମିତି ଭୋଟନିଆ କାମ ଚାଲିଥାଏ । କେତେ ବାବୁ ଏ ବର୍ଷ ଭଳିଆ ଆସି ଗାଁରେ ସଭା ସମିତି କରି ତାଙ୍କୁ ସବୁ ଭୋଟ ଦେବାପାଇଁ କହିଲେ । ଯେଉଁଦିନ ଆମ ଏଠା ଭୋଟ ନିଆହେବ, ସେଦିନ ସକାଳୁ ମୁଁ ବାହାରିଲି ଛତିଆବଟ । ମୋ ନାଁ ଭୋଟ ତାଲିକାରେ ଥାଏ—ହେଲେ ମୁଁ ତ ବେମାରିଆ ଲୋକ, ଭୋଟ କଥା ମୋର କିଏ ଭାବୁଚି···ମୁଁ ବାଡ଼ି ଖଣ୍ଡିଏ ଧରି ବାହାରିଚି, ଜଣେ ସହରିବାବୁ ଆସି ମୋତେ ପଚାରିଲେ, 'କିରେ ବୁଢ଼ା ! ବାହାରିଚୁ ଭୋଟ ଦେବାପାଇଁ ? କୋଉ ବାକ୍ସରେ ଦବୁ ?' ମୁଁ କହିଲି—'ବାବୁ, ମୁଁ ଭୋଟ ଦବାକୁ ଯାଉନି । ମୋର ସେଥିରେ କି ଥାଏ ? ମୁଁ ଯାଉଛି

ଛଡାଆବଟ ।'

ବାବୁଜଣକେ ପଚାରିଲେ—'ଛଡାଆ ଯାଉଚୁ କଆଁ ?'

କହିଲି, 'ମୋର ବଡ଼ରୋଗ ହେଇଚି ବାବୁ, ଅଧିଆ ପଡ଼ିବି, ଠାକୁରେ ଭଲ କରିଦେବେ ।'

ବାବୁ ଜଣକ ପାଟିକରି ହସି କହିଲେ—

'ହରେ ଠାକୁର ଯଦି ରୋଗ ଭଲ କରି ଥାଅନ୍ତେ, ତେବେ ଆଉ ଡାକତର କବିରାଜ ସବୁ ଥାଆନ୍ତେ କଆଁ ? ଆଜିକାଲି ଏଇ ବଡ଼ରୋଗକୁ କେତେ ସବୁ ଭଲ ଔଷଧ ବାହାରିଲାଣି, କଟକ ଯାଇ ଚିକିତ୍ସା କଲେ ଭଲ ହେଇଯିବୁ···'

ମୁଁ କହିଲି, 'ବାବୁ ! କଟକ କିଏ, ମୁଁ କିଏ ?'

ସେ ବାବୁ ଜଣକ କହିଲେ—'ଆରେ, ମୁଁ ନେଇଯିବି···ତୁ ଚାଲ ଆଗ, ଭୋଟ ଦବୁ । ଶୁଣ୍···ତୁ 'କଦଳୀ' ଚିହ୍ନ ଥିବା ବାକ୍ସରେ ଭୋଟ ଦବୁ···ବୁଝିଲୁ ? ଆମ ପାର୍ଟି ସରକାର ଗଢ଼ିଲେ ଦେଶର କେତେ ଉପକାର କରିବୁଁ । ଆମ ଗାଁଗଣ୍ଡାରେ ଯେତେ କୋଢ଼ିଆ ଅଛନ୍ତି ତାଙ୍କୁ ତ ଆଗ ଭଲ କରିବେ ଔଷଧପତ୍ର ଖୁଆଇ—ତୁ ତ ମାସ ଦ'ଟାରେ ଭଲ ହେଇଯିବୁ···ମିଛଟାରେ କଆଁ ଛଡାଆବଟରେ ନ ଖାଇ ନ ପିଇ ଅଧିଆ ପଡ଼ିବୁ କହିଲୁ—କିଛି ଫଳ ହବନି ।'

ମୁଁ ପଚାରିଲି, 'ବାବୁ, ମୁଁ ନିଶ୍ଚେ ଭଲ ହେଇଯିବି ?'

ସେ ବାବୁ ଜଣକ କହିଲେ, 'ମୁଁ କଅଣ ତତେ ମିଛ କହୁଚି ? ଦେଖିବୁନି ···ମୁଁ ତତେ ନିଜେ ଆସି ମଟରରେ ବସାଇ କଟକ ନେଇଯିବି···ଚାଲ୍ ଚାଲ୍, ସକାଳ ସକାଳ ଭୋଟ ଦେଇ ଆସିବୁ, ଚାଲ ।'

ମୁଁ କହିଲି—'ବାବୁ, ମୁଁ କୋଢ଼ିଆଟା—ମତେ ସେଠି ପଶିବାକୁ ଦେବେ ।'

ବାବୁ କହିଲେ—'କିଏ ପଶିବାକୁ ଦେବ ମୁଁ ଦେଖିବି—କୋଢ଼ିଆମାନେ ବି ଭୋଟ ଦେଇ ପାରିବେ ବୋଲି ଆଇନରେ ଅଛି—ଆ, ମୋ ସାଙ୍ଗରେ ଆ, ମୁଁ ସବୁ ସୁବିଧା କରିଦେବି ।'

ମୁଁ ସେ ବାବୁଙ୍କ ସାଙ୍ଗେ ଆସିଲି ଭୋଟ ଦବାକୁ—

'କଦଳୀ' ଚିହ୍ନ ଯୋଉ ବାକ୍ସ ଦେହରେ ଥିଲା, ସେଇଥିରେ ଭୋଟ କାଗଜ ଗଳେଇ ଦେଇ ଆସିଲି···ବାହାରେ ସେଇ ବାବୁ ଥିଲେ, ତାଙ୍କୁ ଆସି କହିଲି···ସେ ଖୁବ ଖୁସି ହୋଇଗଲେ, କହିଲେ, 'ବୁଢ଼ା, ଯା ଘରେ ନିଶ୍ଚିନ୍ତରେ ଖାଇପିଇ ବସିଥା—ଏଇ ଭୋଟକାମ ସରିଲେ ମୁଁ ତତେ ନିଜେ ଆସି କଟକ ବଡ଼ଡାକ୍ତର-ଖାନାକୁ ନେଇଯିବି···ମଟରରେ ବସେଇ···।'

"ସେଇ ବାବୁଙ୍କ କଥାକୁ ସତ ମଣି ମୁଁ ଘରେ ବସିଲି, ଛତିଆ ଗଲିନି । ଭୋଟନାମ ସରିଲା···ମାସେ ଗଲା, ଦି ମାସ ଗଲା···କାହିଁ, ସେ ବାବୁଙ୍କ ଦେଖା ! ଚାହିଁ କରି ବସିଥାଏ, ବାବୁ ଆସିବେ—ମତେ କଟକ ନେଇ ଭଲ କରି ଦେବେ । ବର୍ଷେ ଗଲା, ଶେଷକୁ ମୋ ଆଣ୍ଠୁ ଗଣ୍ଠିକି ବାତ ଧରିପକେଇଲା । ଆଉ ଉଠି ବସି ପାରିଲିନି । ଯିଏ ଗଣ୍ଡିଏ ଖାଇବାକୁ ଦେଲେ ଖାଇଲି, ନ ଦେଲେ ଯୋଉଠି ବସିଲି ସେଇଠି···ସେ ବାବୁ ମତେ କଦଳୀ ଧରେଇ ଦେଇଗଲା ।"

ପଡ଼ିଆରେ ମେଳାଣି ଚାଲିଚି···ଘଣ୍ଟ-ବାଦ୍ୟର ଶବ୍ଦ ନଈଅର ସ୍ରୋତକୁ ଥରେଇ ଦେଇ ଭାସିଆସୁଚି—ବିଶ୍ୱବନ୍ଧୁ ରୁଦ୍ଧ ନିଃଶ୍ୱାସରେ ଶୁଣିଯାଉଚି କୋଢ଼ିଆ-ଜୀବନର ଗୋଟିଏ କରୁଣ ଅଧ୍ୟାୟ ।

ଚଇଁ ଜେନା ତାର କଥା ବନ୍ଦ କଲା ଅଣନିଃଶ୍ୱାସୀ ହୋଇଯାଇ; କିନ୍ତୁ ବିଶ୍ୱବନ୍ଧୁ ତଥାପି ଶୁଣୁଚି—ତଥାପି ଶୁଣୁଚି—କେତେ ଭୋଟପ୍ରାର୍ଥୀ ଏମିତି କେତେ ଦୁଃସ୍ଥଙ୍କୁ ଏଇପରି ନିଷ୍ଫଳ ଆଶ୍ୱାସନା ବାଣୀ ଶୁଣେଇ ତାଙ୍କଠୁ ଭୋଟ ଆଦାୟ ପାଇଁ ଖର ପ୍ରଚୁର କରୁଛନ୍ତି···ଦେଶ ଶିର ଦୁହିଁ ହୋଇଯାଉଚି ସେମାନେ ବକ୍ତୃତା ଦେଲାବେଳେ । ସ୍ୱାର୍ଥତ୍ୟାଗର ଏକ ବିରାଟ ପ୍ରତୀକ ଭାବରେ ସେମାନେ ଜନତା ଆଗରେ ଠିଆ ହୋଇ ବିବିଧ ଭଳି ଦାନ ଓ ମିଠା କଥା କହୁଛନ୍ତି ।

ବିଶ୍ୱବନ୍ଧୁ ଚଇଁ ଜେନା ଆଡ଼େ ଚାହିଁଲା···ଟର୍ଚ୍ଚ ପକେଇଲା ତା ଉପରେ; ଦେଖିଲା ଚଇଁ ଜେନା ତାର କଥା କହି ଦେଇ ଯେପରି ଖୁବ୍ ନିଶ୍ଚିନ୍ତ ହୋଇଯାଇଚି··· ଟକ ଆକ୍ସେଲ ଉପରେ ଚଢ଼ି ଛତିଆ ଯିବାର ଦାବି ଯେପରି ତାର ଆହୁରି ଦୃଢ଼ ହୋଇଯାଇଚି !

ବିଶ୍ୱବନ୍ଧୁର ଇଚ୍ଛା ହେଲା ତାକୁ ଟ୍ରକ୍‌ରେ ବସେଇ ଛତିଆଯାଏ ନେଇଯିବ—କିନ୍ତୁ ତା' ବା ସମ୍ଭବ କିପରି ? ପୋଲିଂ ଅଫିସର ଓ ପୁଲିସ ପାର୍ଟି ନିଶ୍ଚୟ ଆପତ୍ତି କରିବେ ।

ପୋଲିଂ ପାର୍ଟିର ସମସ୍ତେ ଯାତ ଦେଖି ଫେରିଲେ । ଡ୍ରାଇଭରଠାରୁ ସବୁ କଥା ଶୁଣିସାରିଥିଲେ ସେମାନେ ।

ଚଇଁ ଜେନା ଉପରେ ଆରମ୍ଭ ହେଲା ତେଣମେର···ଗାଳିଗୁଲଜ···ଶଳାଠାରୁ ହାରାମଜାଦା ପର୍ଯ୍ୟନ୍ତ···କିନ୍ତୁ କୋଢିଆ ଚଇଁ ଜେନା ନିର୍ବିକାର···ସେ ଜାଣେ ତାକୁ ସେଠୁ କେହି ଉଠେଇବାକୁ ସାହସ କରିବେ ନାହିଁ—ତାକୁ ଛୁଇଁବାକୁ ଡରିବେ—ବିଷଧର ସାପ ଅପେକ୍ଷା ସେ ଆହୁରି ଭୟଙ୍କର ।

ଚଇଁ ଜେନା ଯେ କୌଣସିମତେ ଛତିଆ ଯିବ—ଆଜି ଆଉ ସେ କଦଳୀ ଧରିବାକୁ ଚାହେଁନା ।

ତେଣୁ ସମସ୍ତେ ଠିକ୍ କଲେ ଗୋଟାଏ ବାଉଁଶ ତଡ଼ା ଆଣି ତାକୁ ସେଠୁ କେଞ୍ଚି ବାହାର କରିବେ । ସେମାନଙ୍କର ଏ ସିଦ୍ଧାନ୍ତ ଶୁଣି ବିଶ୍ୱବନ୍ଧୁ ଚମକି ପଡ଼ି ପଚାରିଲା, "ଏ କଅଣ କହୁଛନ୍ତି ଆପଣମାନେ ? ତାକୁ ସେଠୁ କେଞ୍ଚି ବାହାର କରିବେ ?"

ଜଣେ ପୋଲିଂ ଅଫିସର କହିଲେ—"ଆଉ ଉପାୟ କଅଣ ?"

"ଅସମ୍ଭବ, ତା ହୋଇ ପାରିବନି ।"—ବିଶ୍ୱବନ୍ଧୁ ଦୃଢ଼ ଓ କର୍କଶ ଗଳାରେ କହିଲା ।

"ତେବେ କଅଣ ଏଇଠି ପଡ଼ିରହିବାକୁ ପଡ଼ିବ ଆପଣ କହୁଛନ୍ତି ? ଭଲ କଥା ହେଲା ତ ?"

"କିନ୍ତୁ ତା' ବୋଲି ତାକୁ କେଞ୍ଚାକେଞ୍ଚି କରି ସେଠୁଁ ବାହାର କରିବେ ? ସିଏ ଗୋଟାଏ କୁକୁର ନା ବିଲେଇ ନା କଅଣ ? ମୁଁ ବାସ୍ତବିକ୍ ଭାବିପାରୁନି କିମିତି ଆପଣମାନେ ଏ ଧରଣର ଚିନ୍ତା ମନରେ ଆଣିପାରୁଛନ୍ତି ।"

ଅନ୍ୟ ଜଣେ ପୋଲିଂ ଅଫିସର ବିରକ୍ତ ହୋଇ କହିଲେ, "ହଉ ଆପଣଙ୍କୁ ତେବେ ଯାହା ଭଲ ଦିଶୁଚି କରନ୍ତୁ ।"

ସମସ୍ତେ ଚୁପ୍ ରହିଲେ—ବିଶ୍ୱବନ୍ଧୁ ବୁଝି ପାରିଲା, ବହୁତଗୁଡ଼ାଏ ମନର ପୁଞ୍ଜୀଭୂତ ବିରକ୍ତି ଓ ଅସନ୍ତୋଷ ତା' ଉପରେ ଅଜାଡ଼ି ହୋଇ ପଡ଼ୁଛି । ଲୁଚି-ଯାଉଥିବା ଲଣ୍ଠନର ମଇଳା ଆଲୁଅରେ ସେ ଦେଖିପାରିଲା କେତେଗୁଡ଼ାଏ ଗମ୍ଭୀର ଝାଉଁଳ ମୁହଁ, ରୁକ୍ଷ ସମାଲୋଚନାର ବିଷାକ୍ତ ପରିପ୍ରକାଶ ଯେପରି ସେ ମୁହଁଗୁଡ଼ିକୁ ଅସୁନ୍ଦର କରିପକେଇଚି ।

ବିଶ୍ୱବନ୍ଧୁ ସେମାନଙ୍କୁ କୌଶଳରେ ଦୂରକୁ ଡାକିନେଲା । ସେମାନଙ୍କ ସହିତ ବହୁତ ସମୟ ଯାଏଁ ପରାମର୍ଶ କଲା । ସେ ସେମାନଙ୍କୁ ବହୁତ ବୁଝେଇବାକୁ ଚେଷ୍ଟାକଲା···ଧୈର୍ଯ୍ୟ ଧରିବାକୁ କହିଲା; କିନ୍ତୁ ସେମାନେ କେବଳ ଗୋଟିଏ କଥା କହିଲେ—"ନା, ତାକୁ ସେଠୁ ପୁଲିସ ସାହାଯ୍ୟରେ ତଡ଼ାଦ୍ୱାରା କେଞ୍ଚି ବାହାର ନ କଲେ ସେଠୁ ଟ୍ରକ୍ ନେଇ ଯିବାର ଉପାୟ ନାହିଁ ।"

ଶେଷକୁ ନିରୁପାୟ ହୋଇ ବିଶ୍ୱବନ୍ଧୁ ଅଜିତ ସିଂକୁ ଡାକି ତା ସହିତ କଅଣ କଥାବାର୍ତ୍ତା ହେଲା ।

ତା' ପରେ ଚରି ଜେନାକୁ ଆସି ଅତି ନରମ ଗଳାରେ କହିଲା, "ହଉ, ରୁ ବାହାର ଆ ବୁଢ଼ା ! ଆମେ ତତେ ମଟର ଭିତରେ ବସେଇ ନେଇଯିବୁ ।"

ବାହାରିବାର କୌଣସି ଅଗ୍ରହ ପ୍ରକାଶ ନ କରି ଚରି ଜେନା କହିଲା, "ତମେ

ମିଛ କହୁଚ ବାବୁ !"

"ମୁଁ ସତ କହୁଚରେ—ତୁ ଯିବୁ ଆମ ସାଥିରେ ।"

"ହଁ, ମୁଁ କୋଉଁଠି ଆଣ୍ଟା—ଯା' ଘଉଡ଼ ଦହରେ ଉଠିବି । ମତେ ଫେର୍ ତମେ ସାଙ୍ଗରେ ବସେଇ ନବ ?"

ଅନ୍ୟାନ୍ୟ ପୋଲିଂ କର୍ମଚାରୀମାନେ ବିଶ୍ୱବନ୍ଧୁର ଏପରି ସିଦ୍ଧାନ୍ତ ଶୁଣି, ପରସ୍ପରର ମୁହଁକୁ ଚାହାଁଚାହିଁ ହେବାକୁ ଆରମ୍ଭ କଲେ—ବିସ୍ମୟସୂଚକ ଭଙ୍ଗୀରେ ।

ବିଶ୍ୱବନ୍ଧୁ ଆଦେଶ ଦେବା ଭଙ୍ଗୀରେ ଜଣେ କର୍ମଚାରୀଙ୍କୁ କହିଲା, "ଆପଣ ଉଠିବେକି ଟ୍ରକ ଉପରେ, ଜିନିଷପତ୍ର ଆଡ଼େଇ ବୁଢ଼ାପାଇଁ ଟିକିଏ ଜାଗା କରି ଦେବେ—ପ୍ଲିଜ୍ ପ୍ଲିଜ୍, ଉଠନ୍ତୁ ।"

ଚଇଁ ଜେନା ଦେଖିଲା ଜଣେ ବାବୁ ଟ୍ରକ୍ ଉପରକୁ ଉଠିଲେ; ଜିନିଷପତ୍ରର ଧଡ଼ଧାଡ଼ ଶବ୍ଦ ହେଲା ।

ବିଶ୍ୱବନ୍ଧୁ ଚଇଁ ଜେନାକୁ ଡାକିଲା—

"ଆ ବୁଢ଼ା ! ମଟର ଭିତରକୁ ଯିବୁ ଆ ।"

"ମତେ ତା' ଉପରକୁ କିଏ ଉଠେଇଦବ ?"

"ମୁଁ ଉଠେଇଦେବି । ତୁ ଆ ! ଦେଖିବୁ ମୁଁ ତତେ ଉଠେଇ ଦଉଚ କି ନାହିଁ ।"

ଚଇଁ ଜେନା ମୁଣ୍ଡ ଟେକି ବିଶ୍ୱବନ୍ଧୁ ମୁହଁକୁ ଚାହିଁଲା । ତା ମୁହଁରେ କଅଣ ଦେଖିଲା କେଜାଣି, ଧୀରେ ଧୀରେ ଟ୍ରକଡାଲୁ ବାହାର ଆସିଲା । ଯେପରି ଯୁଗ ଯୁଗର ଏକ କ୍ଷୁଦ୍ଧ ପ୍ରେତାତ୍ମା ହଠାତ୍ ତା ଘଟ ଭିତରେ ପୁନଃ ପ୍ରବେଶ କରି ପୁଲକ-ଚଞ୍ଚଳ ହୋଇଉଠିଚ ।

ବିଶ୍ୱବନ୍ଧୁ ଦାନ୍ତ ଓଠ ଚପି ଠିଆହୋଇଚ । ଅନ୍ୟ କର୍ମଚାରୀମାନେ କିଙ୍କର୍ତ୍ତବ୍ୟବିମୂଢ଼ ହୋଇଯାଇ କଅଣ ସବୁ ଚୁପ୍‌ଚାପ୍ ହେଉଛନ୍ତି । ଟ୍ରକ୍‌ଠାରୁ ଦଶହାତ ଦୂରକୁ ଚଇଁ ଜେନା ଘୁଷୁରି ଘୁଷୁରି ଆସି ଅତି କ୍ଳାନ୍ତ ଗଳାରେ ବିଶ୍ୱବନ୍ଧୁଙ୍କୁ ଚାହିଁ ହାତ ଟେକି କହିଲା—

"ଦିଅ ବାବୁ, ମତେ ମୋଟର ଉପରକୁ ଉଠେଇ ଦିଅ—ତମରି ବାବୁ କେତେ..."

ଚଇଁ ଜେନାର କଥାକୁ ଅସମ୍ପୂର୍ଣ୍ଣ ରଖି ଟ୍ରକ୍ ଘର୍ ଘର୍ ଶବ୍ଦ କରି ସେଠୁ ଚାଲିଗଲା ପ୍ରାୟ ଶହେ ହାତ ଦୂରକୁ ।

ଚଇଁ ଜେନାର ହାତ ଦୁଇଟା ତଳକୁ ଖସିପଡ଼ିଲା—ବିଶ୍ୱବନ୍ଧୁ ବିସ୍ମିତ କର୍ମଚାରୀମାନଙ୍କ ଆଡ଼େ ଚାହିଁ କହିଲା, "ଠିଆ ହୋଇ ରହିଲେ କାହିଁକି—ପ୍ଲିଜ୍..."

ଟ୍ରକ୍‌ରେ ଉଠନ୍ତୁ ।

ସମସ୍ତେ ସେଠୁ ଚାଲିଗଲେ ନୀରବରେ—ବିଶ୍ୱବନ୍ଧୁ ଚାହିଁଲା ଲଜ୍ଜିତ ମୁହଁରେ ଚଇଁ ଜେନାକୁ—ମୁହଁ ତଳକୁ କରି ଚଇଁ ଜେନା କହିଲା—କ୍ଷୀଣ ସ୍ୱରରେ···

"ମୁଁ ଜାଣିଥିଲି ତମେ ଠକେଇଦବ—ହଉ, ଯାଅ ।"

ବିଶ୍ୱବନ୍ଧୁ ମୁଣ୍ଡ ପୋତି ପୋତି ଟ୍ରକ୍ ଆଡ଼େ ଆଗେଇ ଚାଲିଲା । ଟ୍ରକ୍ ପାଖକୁ ଯାଇ ଫେରି ଚାହିଁଲା—

ଦେଖିଲା—ଚଇଁ ଜେନା ସେଠି ନିଶ୍ଚଳ ଭାବରେ ବସିଛି, ଗୋଟିଏ ଅସ୍ପଷ୍ଟ କଳା ମୂର୍ତ୍ତିଟିଏ ଭଳି ।

ନିଷ୍ଠୁର ପ୍ରେତାତ୍ମା ପୁଣି ସେ ଘଟ ପରିତ୍ୟାଗ କରିଛି ।

# ଅଦିନ ବଉଦ

## ନିତ୍ୟାନନ୍ଦ ମହାପାତ୍ର

ଖଞ୍ଜଣି ବଜାଇ ଗୀତ ଗାଇ ଦୁଆରେ ସେ ଭିକ ମାଗି ବୁଲେ । ସକାଳୁ ଯାଏ ଯେ ଖରା ଲେଉଟିଲେ ଯାଇଁ ଆମ ଗାଁ ସେ ପଟରେ ଯେଉଁ ଜାଗିଦିଆ ବରଗଛଟା ନାହିଁ, ତା'ର ମୂଳରେ ଆସି ବସେ । ଅଳପ ଦୂରକୁ ଯେଉଁ ମହାଦେବ ମନ୍ଦିର, ସେଇଟା ତା'ର ବରଷା କାଳର ନିଠୁର ଦରଦୀ । ଆଉ ଖରାଦିନେ କି ଦିନ କି ରାତ ସବୁବେଳେ ସେଇ ଗଛମୂଳ । ସେଇଠି ବସି ସେ ମନ୍ଦିର ଦକ୍ଷିଣକୁ ଯେଉଁ ଜୁଆଖଣ୍ଡିକ ଅଛି, ଅନେକ ସମୟରେ ତାକୁ ହିଁ ଚାହିଁ ବସେ । ସୂର୍ଯ୍ୟକିରଣରେ ଯେମିତି ସେ ଜୁଆ-ଖଣ୍ଡିକରୁ ଧୂଆଁ ଭଳି ହୋଇ ଧୀରେ ଧୀରେ ପାଣିର ପ୍ରାଣ ବାହାରିଯାଉଥାଏ ସେମିତି—ଠିକ୍ ସେମିତି, ସକାଳୁ ବେଳବୁଡ଼ଯାଏ ତାର ସିକ୍ତ କଣ୍ଠର ରକ୍ତ ରାଗିଣୀ ଗୋଟାଏ ଅଜଣା ରାଇଜର ଅସୀମ ସରଣୀରେ ଲୀନ ହୋଇଯାଏ । ସେ ବୁଝେ ବୁଝୁ ଭିତର ତା'ର ପଟୁଭୂଇଁର ମାଟି ପରି ଚଡ଼ଚଡ଼ ହୋଇ ଫାଟିପଡ଼େ ।

ବାରମିଶା ଚାଉଳରୁ ଗଣ୍ଡେ ଏଣ୍ଡୁଭେଣ୍ଡୁ କରି ଫୁଟାଇ ମାଗିଥିଲା ପୋକା-ବାଇଗଣର ଭରତା ଦେଇ ସେଦିନ ସେ ଉଦୁଉଦିଆ ଦି'ପହରବେଳେ ଖାଉଛି । ମନଟା ବିନା କାରଣରେ ଯେମିତି ଫୁଟିଲା ପେଜ ପରି ଟକମକ କରି ଉଠିଲା । ଗୋଟାଏ ଅନାଗତ ଆନନ୍ଦର ଉତ୍କଣ୍ଠାରେ ସେ ଆକଣ୍ଠ ଭୋଜନ କରି ଧରିବସିଲା ତାର ଖଞ୍ଜଣି; ତାର ମନେହେଲା, ସେମିତି ଗୀତ ସେ ଯେମିତି ଗାଇ ନଥିଲା କେବେ ।

ଗୀତରେ କୁଆଡ଼େ ବାଘ ଭାଲୁ ବଶ ହୋଇଯାନ୍ତି; କିନ୍ତୁ ବାଘ ଭାଲୁ ଜାଗା ସେ ନୁହେଁ । ମୃଗ କୁଆଡ଼େ ଅପଲକ ନୟନରେ ଆସି ଶୁଣେ । ଆମ ଗାଁରେ କେହି କେବେ ମୃଗ ଦେଖିଥିବ ଯଦି ସେ କୋଉଏ କୋଶ ଦୂରରେ । ସାପ ବି ଭଲ ଗୀତ ଶୁଣିଲେ ଆସି ଖେଳେ; କିନ୍ତୁ ତା ଗୀତରେ ସାପ ବିଲରୁ ବାହାରି ଆସି ନ ଥିଲା । ବାହାରି ଆସିଥିଲା ଗୋଟେ ମଣିଷଚୁଆ—ବିଲରୁ ନୁହେଁ, ଘରୁ ।

ସେଇଦିନ ପାଖରୁ ଲତା ନିତି ଆସି ସୁରଥର ଖଞ୍ଜଣି ଗୀତ ଶୁଣେ । କେତେବେଳେ ବସି, କେତେବେଳେ ଶୋଇ, କେତେବେଳେ ହାମୁଡ଼େଇ, କେତେବେଳେ ଓହଳକୁ

ଧରି, କେତେବେଳେ ବା ଗଛଡାଳରେ ଜହ୍ନଟି ରଖି ଗୋଲପି ଗୁଲୁଗୁଲିଆ ଗାଲକୁ ତାର କଅଁଳ ଟିକି ଟିକି ହାତରେ ଉଷୁମଦେଇ ଅନିମେଷ ନୟନରେ ସୁରଥକୁ ଚାହିଁ ରହେ । ସୁରଥ ଗୀତ ଗାଇ ପୁଣି ଡାକ ମାରି ବାହାରେ—ଲତା ଫେରେ ଘରକୁ !

ଏମିତି କେତେ ଖରା ଚାଲିଗଲା । ଦିନେ ଆଉ ଲତା ଆସିଲା ନାହିଁ । ଦିନେ ଦୁଇନେ, ଲଗ ଲଗ ତିନିଦିନ ଆସିଲା ନାହିଁ । ସୁରଥ ଆକୁଳ ହୋଇ ଉଠିଲା । ଦିନ ଦିନକୁ ଦିନ ସପ୍ତା ଗଲା, ଲତାର ଆଉ ଦେଖାନାହିଁ । ସେ ଲତା ଘରକୁ ଡାକ ମାରି ଯାଏ । ଛନ ଜଡ଼ ଗଲେ ଚଢ଼ିବେ ବୋଲି ସେ ସାତଦିନେ ଆଠଦିନେ ଥରେ ଯାଏ; କିନ୍ତୁ ଲତାକୁ ଆଉ ପାଏନାହିଁ ।

ସୁରଥ ଦେଖିଲା; ତା ଆଗରେ ଯେଉଁ ଜଳାଶୟ ଦେଖାଯାଉଥିଲା, ସେଇଟା ଗୋଟେ ମରୀଚିକା । ବେଳେ ବେଳେ ସେ ଭାବେ, ସେ ଯେମିତି ଗୋଟେ ଦୀର୍ଘ ସ୍ୱପ୍ନ ଦେଖୁ ଦେଖୁ ହଠାତ୍ ତାର ନିଦ ଭାଙ୍ଗି ଯାଇଛି ।

ସେ ବୁଝିପାରିଲା, ଲତାର ଆଉ ବାହାରକୁ ବାହାରିବାର ବୟସ ନାହିଁ; କିନ୍ତୁ ତା ବୋଲି ସେ ତାକୁ ଟିକିଏ ଦେଖା ବି ଦେବନାହିଁ ? ସୂର୍ଯ୍ୟ ଦେଖାଯାଉଛି, ଜହ୍ନ ଦେଖାଯାଉଛି, ଗ୍ରହ ତାରା ସମସ୍ତେ ଦେଖାଯାଉଛନ୍ତି; କିନ୍ତୁ ଲତା କଣ ମଝିରେ ଆସି ଦେଖା ଦେବନାହିଁ ?

ତାର ପିଲାଦିନ କଥା ମନେପଡ଼େ । ଯେଉଁଦିନ ସେ ବାପ ମା' ଦୁହିଁଙ୍କୁ ପ୍ରଥମ ଉହାଇଲ ପର ଜଣକୁ ଜଣକୁ ନିଆଁରେ ହରାଇ ଦେଇ ଆସିଲା, ଭିକ ମାଗି ପେଟ ପୋଷିବା ଛଡ଼ା ତା ଘରପାଖରେ ଆଉ କିଛି ବାଟ ଦିଶିଲା ନାହିଁ ତାକୁ—ସେଦିନ କଥା ଆଖି ଆଗରେ ଖରାବେଳର ଝିଲ୍ଲୀ ସଙ୍ଗୀତର ପୁରୁଣା ଛବି ପରି ଝାପସା ଝାପସା ଦେଖାଯାଏ—ଯେତେବେଳେ ମନେପଡ଼େ ସେତେବେଳେ ସେ ଦାଣ୍ଡରେ ଦଣ୍ଡେ ଠିଆ ହୋଇ ଚାରିଆଡ଼କୁ ଚାହେଁ । ସେଦିନ ଯେମିତି ଥିଲା, ଆଜି ବି ସେମିତି ଏକା… ଦୁନିଆରେ ସେ ଏକା ।

ଏମିତି କେତେ ଖରାର ନିଦମଡ଼ା ବାଟ ଉପରେ ଥରେ ଜୋର ଜୋର୍‌ରେ ଶୀତ ପଡ଼ିଲା । ସୁରଥ ଫେରିଲା ଅନେକ ରାତିରେ । ଗଛମୂଳରେ ଯାଇ ଥରି ହୋଇ ବସି-ପଡ଼ିଲା ସେଇ ଫୁଙ୍ଗା ଦେହରେ । ଗୋଟିଏ ଅଦିନ ବଉଦ କଳା ଭୂତ ପରି ହଠାତ୍ ମାଡ଼ିଆସିଲା । ବର୍ଷା ହେଲା, ତୋଫାନ ହେଲା, ପଥର ପଡ଼ିଲା, ଗଛପତ୍ର ଭାଙ୍ଗି-ପଡ଼ିବ ଯେମିତି ।

ଥରି ଥରି ସୁରଥ ସେଇ ଖଣ୍ଡିଆ ଦେଉଳ ପାଖକୁ ଗଲା । ଯାଇ ଦେଖିଲା, ଦେଉଳରେ ପଡ଼ିଛି ଚାବି । ବାଟ ନ ପାଇ ସେ ଦେଉଳ ବାରଣ୍ଡାରେ ଠିଆହେଲା, ପାଣି ଛିଟୁଆଏ

ସେମିତି । ଦେଖିଲା କାଠ ଭିତରେ ପବନ ପଶି ଗୋଟାଏ ରାକ୍ଷସ ନିଶ୍ୱାସ ଛାଡ଼ିଲା ପରି ଶବ୍ଦ ହେଉଥାଏ । ସେ ଦୁଇ ହାତକୁ ଗ୍ରନ୍ଥ ଉପରେ ରଖି, ପାପୁଲି ଦୁଇକୁ ବେକତଳେ ଗୁଞ୍ଜି ଦେଇ, କାନ୍ଥକୁ ଆଉଜି, ସେମିତି ଠିଆ ହୋଇ ହୋଇ ଆଉ ସହି ନ ପାରି ବସି-ପଡ଼ିଲା । ସେତିକିବେଳେ ତା ଆଖିରେ କେମିତି କେଜାଣି ଟିକିଏ ନିଦ ଆସିଲା ଅତି ଆଶ୍ଚର୍ଯ୍ୟ ଭାବରେ ।

ବାଉଳ ଖାଇଲା ପରି ସେ ହଠାତ୍ ଚମକି ପଡ଼ି ଦେଖିଲା, କିଏ ସେ ଜଣେ ଆସି ତା' ଦେହରେ ଖଣ୍ଡେ କମଳ ପକାଇ ଦେଇ ଖୁବ୍ ଜୋରରେ ପଳାଉଛି ।

ଲତା ! ଲତା ! —ସେ ଚିତ୍କାର କରି ଉଠିଲା; କିନ୍ତୁ ସେଠି ସେତେବେଳକୁ ଆଉ କେହି ନ ଥିଲେ ।

ସେ ସେହି ତୁଫାନରେ ଛୁଟିପରି ଲତା ଘରଯାଏ ଦଉଡ଼ିଗଲା; କିନ୍ତୁ ଏ କଣ ? ତାଙ୍କ ଘରେ କାନ୍ଦବୋବାଳି ପଡ଼ିଛି କାହିଁକି ?

ଲତା ମରିଗଲା ? ମିଛ କଥା । ସେ ପରା ତା ଦେହରେ କମଳ ଘୋଡ଼ାଇ ତା' ଆଗେ ଆଗେ ଆସିଲା ବାହାରି ! ସେ ମଲା କେତେବେଳେ ?

ତାର ଏ କଥାରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ସମସ୍ତଙ୍କୁ ଦେଖାଇଦେଲା, ହେଇଟି ଦେଖ ମୋ କମଳ, ମୋ ଲତା ମୋତେ ଦେଇଛି । ମିଛରେ ସମସ୍ତେ ଦେଖିଲେ କମଳ-ଫମଳ କିଛି ନାହିଁ; ସେ ଖାଲି ମିଛଟାରେ କମଳ ଘୋଡ଼ି ହୋଇଛି ବୋଲି କହୁଛି । ତା' ପର ଦିନଠୁ ସୁରଥର ଗୀତ ଆଉ ସେ ଗାଁରେ କେହି ଶୁଣିବାକୁ ପାଇଲେ ନାହିଁ—ଆଉ ତା' ଖଞ୍ଜଣି ବାଜିଲା ନାହିଁ ।

କିନ୍ତୁ ଆଉ ଗୋଟିଏ ଗାଁରେ ଠିକ୍ ତା ପରଦିନ ଗୋଟାଏ ଅଦ୍ଭୁତ ଲୋକର ଆବିର୍ଭାବ ହେଲା । ଲୋକଟା କଣିକଣିଆ କଣ୍ଠରେ ଖଞ୍ଜଣି ବଜାଇ ଗୀତ ଗାଇ ଖାଲି ଦେହରେ ବୁଲେ । ଦୟା କରି ତାକୁ କେହି ଘୋଡ଼ାଇ ଦେବାପାଇଁ ଚଦରିମିଦରି କରି ଖଣ୍ଡେଅଧେ ଲୁଗା ଯାଚିଲେ କହେ—ମୋ ଲତା ଯେଉଁ କମଳ ଦେଇଛି, ତା'ଠୁଁ କଅଣ ତୋ ଲୁଗା ବେଶି ଗରମ ?

# ୦୯

## ରାଜକିଶୋର ପଟ୍ଟନାୟକ

ଆଠଶହ ଟଙ୍କା ଗୁଣ୍ଠରେ ଜମି କିଣି ଘର କଲାବେଳେ ବାପପୁଅଙ୍କ ଭିତରେ ପ୍ରଧାନ ବିଷୟ ହୋଇଥିଲା—କେଉଁଠି ଘର ହେବ ? ପୁଅ କହୁଥିଲେ, ରାସ୍ତା ପାଖକୁ କରିବା । ତେବେ ରାସ୍ତାରୁ ଓହ୍ଲାଇଲେ ସୁବିଧାରେ ଘର ଭିତରକୁ ଯାଇ ହେବ । ବାପ କହୁଥିଲେ, ଏମିତ ମରୁଭୂମିରେ ଘର କେହି କରନ୍ତି ନାହିଁ । ଶୁଖିଲା ଠାଉ ଠାଉ ମାଟି ଉପରେ ଘର କଣ ମାନେ ?

—ଆଉ କଣ କରିବା, ବାପା ?

—ଏତକ ଜମି ଖାଲି ରଖିବା । ଗଛ ବୃଛ କରୁ...

—ବାପା ହଁ, ବଗିଚା କରିବା ।

—ଆଗ ଗଛ ଲଗାଇବା । ତା ପରେ ଯେତେ ବଗିଚା କରୁଛ କରୁଥା ।

—କି ଗଛ ?

—ଆମ୍ବଗଛ ଏଠି ପୋତିବା ।

କଲମି ଗଛ । ମୁଁ ଗୋଟାଏ କଲମି କରିଛି, ବଡବାଡି ବଗିଚାରେ । ଭଲ ଆମ୍ବ । ସେହି ଯେଉଁ ଭାଗଲପୁରରୁ ଲେଙ୍ଗଡ଼ା ମଗାଇଥିଲେଁ—ତୋର କଣ ମନେ ନାହିଁ ?

ଗୋପାଳ ମୁହଁ ଟେକି ସନ୍ଦେହରେ ଚାହିଁଲା ବାପାଙ୍କୁ । ବାପା କି କଲମି କରିଥିବେ କେଜାଣି । ଗଛ କଣ ଭଲ ହେବ ? ଫୁଲ ବଗିଚା କଲେ କେତେ ସୁନ୍ଦର ନ ହୁଅନ୍ତା ?

—ବାପା, ଫୁଲ ବଗିଚା କଲେ ଭଲ ହୁଅନ୍ତା ନାହିଁ ?

—ଏଠି ମାଟି ବାଲିଆ । ପାଣି ଦେବାର ସୁବିଧା ହେବନାହିଁ ।

—ବାପା, ମୁଁ ପାଣି ଦେବି ।

—ହଁ ରେ ପୁଅ, ତୁ ତ ନିଜ ହାତରେ ପାଣି କାଢ଼ି ଗାଧୋଇପାରୁନୁ ଯେ ତୋର ମା' ବୁକର ଖୋଜୁଛୁ । ତୁ କି ବଗିଚା କରିବୁ ?

—ନାହିଁ ବାପା !

—ହଉ, କଲେ କର । ଗୋଟିଏ ଆମ୍ବଗଛ ଏଠି ରହିବ । ତୁ ଯେତେ ଫୁଲଗଛ

ପୋତୁଛୁ ପୋତୁଅ ।

ଆମ୍ବଗଛଟିଏ ଆସିଥିଲା—ଗ୍ରେଟିଆ ହାଣ୍ଡି ଭିତରେ । କଳା ମାଟି ଉପରେ ହାତେ ଉଚ୍ଚ ଆମ୍ବଗଛ । ସବୁ ମିଶି ପନ୍ଦର ଆଠଗଣ୍ଡା ହେଲେ ହେବ ।

—କହିଲୁ ପୁଅ, କୋଉଠି ପୋତିବା ?

—ବାପା, ମଝିରେ ପୋତ । ନଇଲେ ଏଇ ଡାଳ ସବୁ ପାଚେରି ଡେଇଁ ବାହାରକୁ ଚାଲିଯିବ । ରାସ୍ତା ପିଲାଏ ଲଗିରହିଥିବେ । ଗଛ ପାଇଁ କଳି ଲାଗିବ । ଦାଣ୍ଡ-କଳି ଘରେ ପଶିବ ।

—ତୋର ସେଇ କଥା ଗଲାନାହିଁ ।

ବୁଝି ଗୋପାଳ ଚାଲିଗଲା ଘର ଭିତରକୁ—ମା' ଆଗରେ ଫେରାଦ ହେବ ।—ଦେଖିଲୁ ବୋଉ, ବାପା ଆମ୍ବଗଛକୁ ନେଇ ପାଚେରି ପାଖକୁ ପୋତୁଛନ୍ତି । ଆମ୍ବ ହେଲେ ପିଲାଏ ରଖିବେ ?

—ହେଇ ! ଆମ୍ବଗଛ ସେଠି କାହିଁକି ପୋତୁଛ ? ଗୋପାଳ ଚଢ଼ୁଚି ଏଣେ ।

—ଓଃ, ତମ ପୁଅ କିଛି କରିବ ନାହିଁ । ଏଇ ଆମ୍ବଗଛ ହେବ । ତା' ପରେ ପାଚେରି ଡେଇଁବ । ଗାଁ ପିଲାଏ କଳି କରିବେ । ଖୁବ୍ ହେଉଛି—ମା' ପୁଅଙ୍କର ଏକା ପରି ବୁଦ୍ଧି ।

—ହଁ, ହେଲେ ହେଲା । ସେଠି ଗଛ ପୋତାହେବ ନାହିଁ ।

—ହେବ କହୁଛି ? ମୋ ଜମିରେ ମୁଁ ଗଛ ଲଗାଇବି ।

—ଏଁ, ତମର ଜମି ? ଜମି ମୋର । ତମ ନାଁରେ ଅଛି ନା ?

—ଯା ପଳା କହୁଛି ।

ମା' ପୁଅ ଘର ଭିତରକୁ ପଳାଇଲେ ବିଶେଷ ଆଲୋଚନା କରିବା ପାଇଁ—ବାପା ସବୁ ଖରାପ କରିଦେଉଛନ୍ତି । ହାଉ କରୁଥାନ୍ତି ।

ଦିନ ଫଳରେ ଗଛ ପୁଞ୍ଜା ହେଲା ଦି' ହାତ ଭିତରକୁ । ପାଣି ଦିଆହେଲା । ଜନ୍ତୁ-ଙ୍କ ମୁହଁଠାରୁ ଆକଟ କରିବାକୁ ବାଉଁଶରେ ବାଡ଼ବନ୍ଧ ହେଲା ।

ସକାଳେ ଗୋପାଳ ଓ ଗୋପାଳ-ବୋଉ ଉଠି ପ୍ରଥମେ ଆସିଲେ ଆମ୍ବଗଛ ଦେଖିବାକୁ, ଗଛ ଝାଉଁଳୁଛି କି ନାହିଁ । ବେଶ୍ ତାଜା ଅଛି ।

ମା'ଙ୍କୁ ଗୋପାଳ ଚୁପ୍ ଚୁପ୍ କରି କହିଲା ଗଛଟାକୁ ଆଉ ଦି'ହାତ ଭିତରକୁ କରିଥିଲେ କେତେ ଭଲ ହୋଇଥାନ୍ତା ।

—ହଉ, ଏଇଠି ଥାଉ । ବାପା ତ ସେମିତି ଜିଦିଆ । କଣ କରିବା ?

—ବୋଉ, ମୁଁ ଏ ଗଛକୁ ମୋଟେ ଛୁଇଁବି ନାହିଁ ।

କେହି ହିଫାଜତ କରିବା ଦରକାର ହୋଇନାହିଁ । ଆପଣା ଚେଷ୍ଟାରେ ଗଛଟି ବଢ଼ିଛି । ବେଳେ ବେଳେ ମନେ ପଡ଼ିଗଲେ ଗୋପାଳ ଆସି ବାଉଁଶ ବାଡ଼ ଭିତରୁ କଲମି ଗଛକୁ ଚାହିଁ ଭାବେ—ଆହା, କଲମି ନ ହୋଇ ଦେଶୀ ଗଛଟିଏ ହୋଇଥିଲେ, କେତେ ଶୀଘ୍ର ବଢ଼ିଯାଆନ୍ତାଣି । ଗଛଛାଇରେ ବସି ହୁଅନ୍ତା ।

ଗଛଟି ଆପଣାଛାଏଁ ବଢ଼େ । ଯେତିକି ବଡ଼ ହେବା କଥା, ତହିଁରୁ ବଡ଼ ହୋଇଛି । ମା' ପୁଅଙ୍କର ବିଶ୍ୱାସ ପକ୍କେ ଯେ କଲମି ଠିକ୍ ହୋଇନାହିଁ । ଏଇ କଥା ବାପାଙ୍କୁ ଶୁଣାଇ ଉଭୟେ ଗାଳି ଶୁଣନ୍ତି ।

ସେଇ ଘରଟିର ନିଶାଣ ହେଲାଣି ଆମ୍ବଗଛ । କେହି ଗୋପାଳ ବାବୁଙ୍କୁ ତାଙ୍କର ଘର ଠିକଣା ପଚାରିଲେ ସେ ବୁଝାନ୍ତି—କାଠଯୋଡ଼ୀ କୂଳେ କୂଳେ ପୁଷ୍ପଘାଟ ଫାଣ୍ଡିରୁ ପଶ୍ଚିମକୁ ଗଲେ, ଯେଉଁଠି ପାଚେରୀ ଭିତରେ ଆମ୍ବଗଛ ଦେଖିବେ, ସେଇଠି ଆମ ଘର ।

ଏଇ ପୁଷ୍ଟ ଆମ୍ବଗଛଟା ବାରବୁଲା ଗୋପାଳ ବାବୁଙ୍କର ବହୁତ ବନ୍ଧୁଙ୍କ ପାଖରେ ତାଙ୍କର ସହଜ ପରିଚୟ ହୁଏ । ଗଛ ଆପଣାଛାଏଁ ବଢ଼ୁଛି । ଆଲୁଅ, ପବନ ଓ ମାଟିରୁ ସେ ତାହାର ଆହାର ଯୋଗାଡ଼ କରି ଘରର ଜଗୁଆଳି ପରି ଠିଆ-ହୋଇଛି ।

ନଈକୂଳିଆ ଖରାଦିନର ତତଲା ପବନକୁ ସେ ତାହାର ଶାଗୁଆ ଛତା ଦେଖାଇ ଅଟକାଏ । କାଠଯୋଡ଼ୀ ନଈରୁ ଖରାଦିନେ ଧାଇଁ ଆସୁଥିବା ତତଲା ବାଲିକୁ ନିଜ ଦେହରେ ସମ୍ଭାଳିନିଏ । ସବୁଦିନେ ସମସ୍ତଙ୍କଠାରୁ ମାଡ଼ ଖାଇ ଖାଇ ସେ ତାର ଚୁପ୍ ହୋଇ ଠିଆହୋଇଥାଏ ।

ଗୋପାଳ ତାହାର ବନ୍ଧୁମାନଙ୍କୁ ଆଣି ସେହି ଆମ୍ବଗଛ ମୂଳେ ବସାଏ । ସମସ୍ତେ ତାରିଫ୍ କରନ୍ତି, କହନ୍ତି ଯେ ଏମିତି ଜାଗାରେ ଏମିତି ଆମ୍ବଗଛ ମୂଳେ ବସିଥିଲେ, ଗଦା ଗଦା ବହି ଲେଖିହେବ । ଗୋପାଳ ଖୁସି ହୋଇ ସେମାନଙ୍କୁ କହେ ଯେ ଏଇଟା ପୋଷା ଗଛ; ସେଥିପାଇଁ ଏଡ଼େ ସୁନ୍ଦର ହୋଇଛି । ଗଛ ପୋତାହେଲା ବେଳର ଇତିହାସ ଗୋପାଳର ପାସୋର ଯାଇଥାଏ ।

ସହର ଜାଗା । ବହୁତ ଦୂରରୁ ଲୋକେ ସେଇ ଆମ୍ବଗଛଟିକୁ ମନେ ପକାନ୍ତି । ପୂଜା ହେବ । ବାହାଘର ହେବ । ସବୁ କାମରେ ଗୋପାଳବାବୁଙ୍କ ପାଖରେ ଅନୁରୋଧ ପହଞ୍ଚେ, ଆମ୍ବପତ୍ର ପାଇଁ ।

କେହି ମାଗିବାକୁ ଆସିଲେ, ଗୋପାଳବାବୁ ନିଜେ ଆସି ଗଛ ପାଖରେ ଠିଆ ହୋଇଯାନ୍ତି । —କଅଁଳ ପତ୍ର ନିଅନା, ଯେତିକି ହୋଇଥାଉ, ଏତେ ପତ୍ର ଗଲେ

ଗଛରେ ଆଉ କଣ ଫଳ ହେବ ? କେତେ ଲୋକ ଆସିବେ ଯେ । ସେତକ ହୋଇଥାଉ ।

ଅଶେଷ ଆଗ୍ରହରେ ଗୋପାଳ ସେଇ ଡାଳପତ୍ର ବାଣ୍ଟେ । ପୋଷା ଆମ୍ବଗଛଟିର ସତେ ଯେପରି ପତ୍ରଗୁଡ଼ିକ ଗଣା ହୋଇଛି । ଘରର ସମସ୍ତଙ୍କର ଗୋଟିଏ ଚିନ୍ତା—ଗଛ କେବେ ଫଳିବ ?

—ଆରେ ଦେଖିଛ, ଆମ ଆମ୍ବ ବଉଳିଛି !

—ବାଃ, ଭଲ ବଉଳ ହୋଇଛି, ସବୁ ଡାଳରେ ! ଆହା, ବଉଳ ମୋଟେ ନ ଝଡ଼ନ୍ତା କି, କେତେ ଆମ୍ବ ହୁଅନ୍ତା ।

—କେମିତକା ଆମ୍ବ ହେବ ଦେଖିବା !

—ଜାଢ ଆମ୍ବ ।

—କେଜାଣି, ବାପା ତ ନିଜେ କଲମି କରିଛନ୍ତି । ଭଲ କଲମି ଗଛ ଫାର୍ମରୁ ଆଣିଥିଲେ କଣ ହେଇ ନ ଥାନ୍ତା ? ନିଜେ କଲମି କରିଛନ୍ତି ।

– ହେ, ଆମେ ସେ ଆମ୍ବ ଖାଇବୁ ନାହିଁ ।

– ବାପା, ଆମେ ତମ ଆମ୍ବଗଛରୁ ମୋଟେ ଖାଇବୁ ନାହିଁ । ବୋଉ କହୁଛି, ଭଲ ଆମ୍ବ ନୁହେଁ ।

—ହଉ ନ ଖାଅ । ଗଛ ତ କାନ୍ଦିବ ତମେ ନ ଖାଇଲେ ।

କାଲି ସକାଳେ ସମସ୍ତଙ୍କ ମୁହଁରେ ଉଦ୍‌ବେଗ । କୁହୁଡ଼ି ହୋଇଛି । ଆମ୍ବ ବଉଳ ପୋଡ଼ିଯିବ—ହେଇ, ପବନରେ ଚଣା ଖସିପଡ଼ୁଛି । ପିମ୍ପୁଡ଼ି ନିଆଁ ଲଗା ସବୁ ଖାଇଗଲେ ।

—ଆଚ୍ଛା, ଡ଼ି. ଡ଼ି. ଟି. ପକାଇବା । ପିମ୍ପୁଡ଼ି ମରିଯିବେ ।

—ଆରେ, ଆମ୍ବ ହେଲାଣି ! ବଉଁଶଯାକ ଲାଗି ଗଣନ୍ତି । ବହୁତ ଥର ଗଣାହୁଏ । ପତ୍ର ଭିତରେ କେଉଁଠି ପୁଣି ଗୋଟିଏ ଲୁଚିଯାଏ । ହିସାବ ଭୁଲ ହୁଏ । —ଦେଖ ପିଲେ, ଗଣିଆ । ଦେଖିବା କେଇଟା ଆମ୍ବ ହେଉଛି, ଏତକ କଷିରୁ ।

ସାଇପିଲାଙ୍କୁ ଦିଶିଯାଏ । ଢୁଲ୍ ଢାଲ୍ ଟେକା ମାରନ୍ତି ।

—ଆରେ, ଜଗ ଏ ଚୁଆଙ୍କୁ । ଆମ୍ବ ହେଲେ ତ କଏ ହେଲେ ଖାଇବେ । ଜାମ ହେଲା ଖରାବେଳେ ଜଗିବା । ପ୍ରତ୍ୟେକଟି ଆମ୍ବ ଗୋଟିଏ ଗୋଟିଏ ଅମୂଲ୍ୟ ସମ୍ପଦ ।

ପହିଲି ଆମ୍ବ ଠାକୁରଙ୍କ ପାଖରେ ଭୋଗ ହେଲା, ସେଇଟା ଗୋଟାଏ ଉତ୍ସବ । ପାଚିଲେ ବି ଆମ୍ବର ଉପର ନେଳିଆ ରହୁଛି । ଭିତରର ରଙ୍ଗ ହଳଦିଆ ନ ହୋଇ ଧାଉଆ ଦିଶୁଛି । ଖଟା ନ ଥିଲେ ବି ମିଠା ହେଉନାହିଁ । ସମସ୍ତେ ଚକୁଳାଏ ଚକୁଳାଏ ଖାଇ

ଆମ୍ବର ତାରଫ୍ କରନ୍ତୁ—ଯେମିତ ହୁଣ୍ଡା ପୁଅକୁ ସମସ୍ତେ ଆଉଁଷନ୍ତି ।

—ଆମ ଆମ୍ବ ଖୁଣ୍ଟୁଣିରେ ତୋଳାହେବ । ଜଗି ରଖି ତୋଳିଲେ ଆମ୍ବ ତଳେ ପଡ଼ି ମାଡ଼ ଖାଇବ ନାହିଁ । ବହୁତ ଯତ୍ନରେ ବଉଁଶପାଳ ଲଗି ଆମ୍ବକୁ ତୋଳାନ୍ତି ।

—ଆରେ ଦେଖ । ଭଲ କରି ଦେଖ । ଗୁଣ୍ଡୁଚ ବାଦୁଡ଼ିଙ୍କୁ ସବୁ ଧଣୁଛୁ । ଆମେ ଏତେ ଲୋକ ଲଗି ଆମ୍ବ ପାରୁନେଲୁ, ତେବେ ବ ପ୍ରତଦନ କାଉ, ବାଦୁଡ଼ି, ଗୁଣ୍ଡୁଚ ···ଅଇଁଠା ଆମ୍ବ କୁଆଡ଼ୁ ଝଡ଼ୁଛୁ କେଜାଣି ? ପିମ୍ପୁଡ଼ି ମରନାହାନ୍ତି; ଖଣ୍ଡିଆ ଆମ୍ବରେ ଘେର ରହୁଛନ୍ତି ।

ଏତେ ଯତ୍ନରେ ଯେତକ ଆମ୍ବ ଅମଲ ହୁଏ, ସେଥିରୁ ପୁଞ୍ଜେ ଅଧେ ଗଣା ହୋଇ ବଣ୍ଟାହୁଏ ସବୁ ବନ୍ଧୁ ଆତ୍ମୀୟଙ୍କ ଭିତରେ । ଆମ୍ବଗଛଟି ଘର ସାଙ୍ଗରେ ଏକାବେଳକେ ମିଶିଯାଇ ପରିବାରର ଲୋକଟିଏ ପରି ହୋଇଛି । ଖାଲି ତାର ନାଁ ଦିଆହୋଇନାହିଁ । ଏତକ ପ୍ରଭେଦ ।

ଆମ୍ବଗଛଟି ଉପରେ ଗୋଟିଏ ବିପଦ ଯୁଦ୍ଧବେଳେ ଚାଲିଯାଇଛି । ଉଡ଼ାଜାହାଜରୁ ବୋମା ପଡ଼ିଲେ ରକ୍ଷା ପାଇବାକୁ ସରକାରୀ ଲୋକେ ଟ୍ରେଞ୍ଚ୍ ଖୋଳିଥିଲେ ସେ ଆମ୍ବଗଛ ମୂଳପାଏ । ସେଇଦିନୁ ଗଛ ଅଣେଇ ହୋଇ ପଡ଼ିଛି ପୂର୍ବ ଦିଗକୁ; ଯେତେ ଠିଆ ଦେଲେ ସଳଖ ହେଉନାହିଁ ।

କଣ କରାଯିବ ? ପିଲାଟି ଯେମିତ ପିଲାବେଳେ ଟାଇଫଏଡ଼୍ ହୋଇଥିବାରୁ ଚିରଦିନ ରୋଗୀଣା, ଯେମିତ ବୋମା ପଡ଼ିଲା ତ ନାହିଁ, ଟ୍ରେଞ୍ଚ୍ ଖୋଳି ଗଛଟାକୁ ମାଇଲେ ।

ଖାଲିଆ ମଣିଷକୁ ବାଡ଼ ଦିଆହେବା ପରି ନଇଁପଡ଼ିଥିବା ଆମ୍ବଗଛକୁ ଗୋଟାଏ ପିଜୁଳି ଦୋ'କନା ଠିଆ ଦିଆହୋଇଥାଏ । ପିମ୍ପୁଡ଼ି, ଗୁଣ୍ଡୁଚ ସେଇ ବାଟେ ଆଉ ଗୋଟିଏ ରାସ୍ତା ଖୋଲି ଗଛ ଉପରକୁ ଯା-ଆସ ହୁଅନ୍ତି । ଗାଁ ଅଇଲା ଲୋକ ସେଇଠି ଯାଇକେଲ ରଖେ ।

ପ୍ରତିବର୍ଷ ସେଇ ଗୋଟିଏ ପ୍ରଶ୍ନ—ଏ ବର୍ଷ କେତେ ଆମ୍ବ ଫଳିବ ? ତିନି ବର୍ଷରେ ଥରେ ଆମ୍ବ ଭଲ ଫଳେ । ଆରବର୍ଷ ହୋଇଥିଲା ଶହେରୁ ପାଞ୍ଚୋଟି କମ୍ । ଏଥର ଦେଖିବା ।

ଜାହାର ଦସ୍ତା ଆସିଗଲେ କଏ ଆଣି ଦ' ଲଣ୍ଡା ଗୋବର, ନ ହେଲେ ଡାଲେ ପାଣି ଢାଳିଦିଏ ଗଛମୂଳେ । ସମସ୍ତଙ୍କର ଆଖି ରହେ ଗଛର ପତ୍ର ଉପରେ । ଏ ବର୍ଷ ଜାହାକୁ ପତ୍ର ଦିଆଯିବ ନାହିଁ । ଗଛ ହାଲିଆ ହୋଇଯିବ, ଫଳିବ ନାହିଁ ।

—ବୋଉ, ଗଛଟା ବାଟରେ ଅଜାଡ଼ ହୋଇ ପଡ଼ିଲା ପରି ହୋଇଛି । ଗଲା ଅଇଲା

ଟେକେଲେ ମୁଣ୍ଡରେ ବାଜୁଛୁ, ବର୍ଷା ବେଳେ ଓଦା ପତ୍ରରୁ ପାଣି ପଡ଼ି ଦେହ ଥଣ୍ଡା କରୁଛୁ । ଟିକିଏ ଛେଦିଦେବା କେଉଁଟା ଡାଳ ?

— ଦେଖ୍ ଗୋପାଳ, ଆମ୍ବଗଛରେ ହାତ ଦେଲେ ଲାଗିବ କଲ ଚୋର ମୋର ।

ଏତେ ଡାକରୁ ଭିତରେ ଗୋପାଳ ଲୁଚେଇ ଲୁଚେଇ ଥୋଡ଼ାଏ ପତ୍ର ଛୁଣ୍ଡେଇ ଦିଏ । ତାକୁ ନେଇ ପଦାରେ ଫିଙ୍ଗିଦିଏ । ବୋଉ ନ ଜାଣୁ । ଗପ୍ପ ସଙ୍ଗ ହୋଇଗଲେ ଗଲା ।

ତଥାପି ଗଛଟାର କେଡ଼େ ମାୟା । ତା'ର ପତ୍ରଗହଳ ଭିତରେ ସବୁ କ୍ଷତଚିହ୍ନ ସେ ଲୁଚେଇ ଦିଏ । ଗୋପାଳ-ବୋଉର ଆଖି ବାରି ପାରେନାହିଁ । ଗୋପାଳ ଯାଇ ଆଉଁଷିଦିଏ ଗଛଟିକୁ । ଠିକ୍ ବନ୍ଧୁ ପରି ସେ ସବୁ କଥା ଲୁଚେଇ ଦେଇଛୁ ।

ସେହି ଘରର ଅଙ୍ଗ ସେଇ ଗଛଟି, ପଦା ଲୋକଙ୍କୁ ବାଟ ଦେଖାଇବା ପାଇଁ ବାହାର ଆଲୁଅ ଜଳାଇଲେ, ଗଛ ଲୁଚେଇ ଦିଏ ସେହି ବିଜୁଳିବତିକୁ । ଭିତରର କଥା ଲୁଚାଏ ବାହାରର ଲୋକଙ୍କୁ । ବାହାର ଲୋକଙ୍କୁ ରଖିଦିଏ ନିଜର ଆଢ଼ୁଆଳ ଆର ପାଖେ ।

କେତେ ଝଡ଼ ବର୍ଷା ଯାଇଛୁ । ପ୍ରତିବର୍ଷ ସେତେ ପତ୍ର, ଫଳ, ବଉଳ ଫୋପାଡ଼ି ଦେଇଛୁ, ପୁଣି ସେତିକ ଆଣି ଥୋଇଛୁ । ଗୋପାଳ ବଡ଼ ହୋଇ ବୁଢ଼ା ହେବାକୁ ବାହାରିଲାଣି, ଗୋପାଳର ବାପା ବୋଉ, ଭାଇ, ଭଉଣୀ, ଭଣଜା, ପୁରୁଷ ସମସ୍ତେ ଆଗେଇ ଗ୍ଲାଲିଛନ୍ତି । ବୟସରେ ଗଛଟି ଆଉ ବଢ଼ୁନାହିଁ । ହୋଇଥିଲା ପାଖ କୋଠାର ଉଚ୍ଚ । ଯେତିକ ମାଡ଼ିଥିଲା, ସେମିତି ଠିଆ ହୋଇଥାଏ । ଦେଖୁଥାଏ—ମଣିଷପିଲାଏ ପିଲାରୁ ବଡ଼ ହେଉଛନ୍ତି; ବଡ଼ରୁ ବୁଢ଼ା ହେଉଛନ୍ତି ।

ପ୍ରତି ବର୍ଷ କାଉ ବସା କରେ । ବର୍ଷାଦିନେ ହଳଦିବସନ୍ତ ବସେ । ଗ୍ରୀଷ୍ମରେ ବାହାର-ଚଣ୍ଢୀ ପେଚ୍ଚ ବୋବାଏ, ପ୍ରତିଦିନ ଗୁଣ୍ଡୁଚି ଖେଳେ । ଘରର ପୋଷା କୁକୁର ପ୍ରତିଦିନ ଆମ୍ବଗଛ ମୂଳେ ମୁତେ । ପ୍ରତିବର୍ଷ ପିଲାଏ ଦୋଳି ବାନ୍ଧନ୍ତି । ତାଙ୍କର କଳରବ, କଲ୍ଲୋଳ, ତାଙ୍କର ଉତ୍ସାହ ଓ ଆନନ୍ଦ ସେଇ ଆମ୍ବଗଛଟିର ଗଣ୍ଡି ଉପରେ ଲୋଟିପଡ଼େ ।

ପ୍ରତି ବର୍ଷ ଝଡ଼ ବୋହୁଛୁ । ଆମ୍ବଗଛ ପ୍ରତିବର୍ଷ ଥରୁଛୁ । ତା' ଡାଳପତ୍ରରେ ପିମ୍ପୁଡ଼ି ଖେଳୁଛନ୍ତି । ଗଛମୂଳେ ପିମ୍ପୁଡ଼ି ଶିକାର କରିବା ପାଇଁ ପିମ୍ପୁଡ଼ି-ବାଘ ବାଲିଆ ମାଟି ଉପରେ ତା'ର କୂଅ ଖୋଳି ପିମ୍ପୁଡ଼ି ଧରିବା ପାଇଁ ଗୁହିଁ ବସିଛୁ । ପବନ ସେମିତି ଗଛକୁ ହଲାଇ, ଡାଳକୁ ଅରାଇ ବୋହିଯାଇଛୁ । ସେ ଗଛ ଅଜର । ଘରର ସ୍ତ୍ରୀଶିଷ ମରିବା ପରେ, ଗୋପାଳର ମରିବାବେଳେ ବ ଠିଆ ହୋଇଥିବ ସାକ୍ଷୀ ପରି ।

ଗୋପାଳ ବହୁତ ଥର ଭାବୁଛି, ସେଇ ଆମ୍ବଗଛରେ ଦଉଡ଼ି ଦେଇ ଝୁଲିବ । ଯେଉଁ ରସିରେ ପିଲାଏ ଦୋଳି ଖେଳୁଛନ୍ତି, ସେଥିରେ ନିଜେ ଫାଶି ଝୁଲିବ ।

ଗଛ ଜାଣେ ନାହିଁ, ବୁଝେ ନାହିଁ । ତାକୁ ଉପଲକ୍ଷ୍ୟ କରି ଯେ ଯାହା କରନ୍ତି, ଯେ ଯାହା ଭାବନ୍ତି, ସେଥିରେ ସେ ନିର୍ବିକାର । ଦୋଳି ଖସିପଡ଼ିବ ବୋଲି ଗଛ ଦେହରେ ଭଅଁର ହୋଇ ମୋଟା ପେଚକଣ୍ଡା ଅଣ୍ଡାହୋଇଥିଲି । ମଣିଷ ଓ ଗଛ ଜୀବନର ବିଭିନ୍ନ ସୃଷ୍ଟି । ଉଭୟେ ପୋଷା ମାନନ୍ତି । ପୋଷା ମଣିଷ କାମବେଳେ କୃତଘ୍ନ ହୁଏ । ପୋଷା ଗଛ ସବୁବେଳେ କାମରେ କୃତଜ୍ଞ ଓ ବାଧ ।

ଝଡ଼ ଆସେ, ଆସିବ । ସେଥିରେ ଭାବିବାର କିଛି ନାହିଁ ।

ସକାଳୁ ଘରେ ପାଟିଗୋଳ—ଆରେ ଦେଖିଛ, କାଲି ରାତିରେ ଆମ ଆମ୍ବ-ଗଛ ଭାଙ୍ଗି ଯାଇଛି । ଭାଇ, ଉଠ ! ଆରେ ଗୋପାଳ, 'ଉଠ୍ ! ଆମ୍ବଗଛ ଦେଖିଲୁଣି ?

ସମସ୍ତେ ଧାଇଁଗଲେ ଆମ୍ବଗଛ ପାଖକୁ । ଗୋପାଳ ଦେଖିଲା, ଆମ୍ବଗଛ ଶୋଇରହିଛି ମାଟି ଉପରେ ମଲା ହାତୀ ପରି । ତା'ର ଦୋଳିବନ୍ଧା ଦଉଡ଼ି ଚିପି ହୋଇ ରହିଛି ଡାଳ ତଳେ ମଲା ମଣିଷର ପିନ୍ଧା ଲୁଗା ପରି । ଠିଆ ହେଲାବେଳେ ଯେତିକି ଉଚ୍ଚ ଥିଲା, ପଡ଼ିଗଲାବେଳେ ବି ଡାଳପତ୍ର ସେତିକି ଉଚ୍ଚରେ ଅଛି ।

ଗୋପାଳ ବୁଲି ବୁଲି ଦେଖିଲା—ଗଛଟିର ଗୋଟିଏ ପାଖ ଉଇ ଅଧେ ଖାଇ-ଯାଇଛନ୍ତି । ପାପୁରି ହୋଇଛି । ଆଉ ଅଧକ ଭାଙ୍ଗି ଯାଇଛି ।

—କିରେ ଗୋପାଳ, ଔଷଧ ପକେଇ ପିମ୍ପୁଡ଼ି ମାରୁଥିଲୁ ପରା ? ପିମ୍ପୁଡ଼ି ଥିଲେ ଉଇ ନ ଆନ୍ତେ । ସେମାନେ ଏଡ଼େ ବଡ଼ ଗଛଟାକୁ ଖାଇଗଲେ ? ଗଲା !

—ପିମ୍ପୁଡ଼ି ତ ମୋଟେ ରହିଲେ ନାହିଁ । ଉଇଙ୍କର ରାଜତ୍ୱ ହେଲା । କଞ୍ଚା ଗଛଟାକୁ ଭୋଜି କରିଦେଲେ ।

ଗୁଣ୍ଡୁଚିମାନେ ଦୂରରେ ବୁଲୁଥିଲେ ।

—ଆଉ କଣ ଖାଇବରେ ଗୁଣ୍ଡୁଚି ? ଆମ ଆମ୍ବଗଛ ମରିଗଲା ।

ନଈକୂଳେ ଗାଧୋଇ ଗଲା ଅଇଲା ଲୋକେ, ବୁଲୁଥିବା ବାଟୋଇ ଠିଆ ହୋଇ କଥା ହୁଅନ୍ତି—କେତେ ଝଡ଼ ନ ହୋଇଥିଲା—ଏଡ଼େ ବଡ଼ ଫଳନ୍ତ ଗଛଟା ଉପୁଡ଼ିଗଲା ! ଆହା ! ଆହା !

ଗଛଟା କେଡ଼େ ଭଲ । ପଡ଼ିଯାଇଛି ଯେ, ଘର ଉପରେ ପଡ଼ିନାହିଁ । ଘର ଉପରେ ଥିବା କଙ୍କୁଳ ଆଳୁଅଟା ଭାଙ୍ଗି ନାହିଁ । ଧନରେ ପଡ଼ିନାହିଁ । ଡାଳରେ ବସା ବାନ୍ଧିଥିବା କାଉ ବସା ସେମିତି ରହିଛି । କଳା ଚୁଆଗୁଡ଼ାକ ଉଡ଼ି ଶିଖିନାହାନ୍ତି । ଚେଁ ଚେଁ ହେଉଛନ୍ତି ।

ଆଉ ତ ଗଛ ନାହିଁ । ସେ ଗଛ ଖର ବୁଢ଼ିଆ । ସେ ହୃଦସ୍ୱବାନ୍ ଆମ୍ବ-ଗଛଟି ଆଉ ବଞ୍ଚ କରି ନାହିଁ । ମୂଲିଆ ଆସି କୁରାଢ଼ିରେ ପଗ ପଗ କରି କାଟିଦେଇ ଗଲା । ଚଢ଼େଇବସା ଥିବା ଡାଳଟି ଆଉ ଗୋଟିଏ ଗଛରେ ଡେରିଦେଲା ।

ଖବରକାଗଜ ଲେଖିଥିଲା—'କଟକରେ ରାତି ଅଧରେ ଭୀଷଣ ଝଡ଼ ଓ ବର୍ଷା । ସହର ଭିତରେ ପୁରୀଘାଟରେ ଆମ୍ବଗଛ ଓଲଟି ପଡ଼ିଛି ।' ଗଛଟି ତା'ର ମରଣ ଖବର, ଖବରକାଗଜରେ ଦେବାର ବ୍ୟବସ୍ଥା କରିଛି । କେଡ଼େ କପାଳିଆ ?

ଦୁଇ ଦିନ ପରେ ଗୋଟିଏ ସନ୍ଧ୍ୟାବେଳେ ଗୋପାଳବାବୁ ଜଣେ ଲୋକଙ୍କୁ ନିଜର ଘର ଚହ୍ନଟ ଦେଲାବେଳେ କହୁଥିଲେ—ପୁରୀଘାଟ ଥାଣ୍ଡରୁ ପଶ୍ଚିମ ଦିଗକୁ ଗଲେ ଯେଉଁଠି ପ୍ରଥମ ଆମ୍ବଗଛ ପାଇବେ—ନା, ନା, ଭୁଲ କହିଲି, ସେ ଆମ୍ବଗଛଟି ପଡ଼ିଯାଇଛି ଏଇ ଝଡ଼ରେ··· ।

ଆଷାଢ଼ର ଧୂମାଳ ନିଜର ପରାକ୍ରମ ଦେଖାଇବାକୁ ଲୁଟିନେଇଛି ଗୋଟିଏ ନିରୀହ ନିରପରାଧ ଆମ୍ବଗଛ । ସେ ପୁଣି ଦୁର୍ବଳ ଥିଲା, ଭଲ ଖାଇଯାଇଥିଲେ; କିନ୍ତୁ ସେଇ ଘରର ଓ ସେଇ ମଣିଷଙ୍କର ଗୋଟିଏ ବନ୍ଧୁ ଠକି ଦେଇ ଚାଲିଯାଇଛି—ସେଇ ଝଡ଼ ରାତିରେ ।

# ଝଡ଼୍‌ପା

## ଗୋପୀନାଥ ମହାନ୍ତି

ଝଡ଼୍‌ପା ତା ନାଁ । ସବୁ ନାଁ ପରି ସେ ବି ଗୋଟିଏ ପ୍ରତୀକ, ସେତିକି ତା'ର ସାର୍ଥକତା । ନହେଲେ ସେ ନାଁ ଶୁଣି କିଛି ବୁଝିହୁଅନ୍ତା ନାହିଁ ।

ଏପରି ବି ସମ୍ଭବ ଯେ ଭାଷାର ନିୟମ ପ୍ରକାରେ ସେ ଶବ୍ଦର ବି କିଛି ଅର୍ଥ ଥିବ; କିନ୍ତୁ ନାଁର ଅର୍ଥ ମଣିଷର ବ୍ୟକ୍ତିତ୍ୱ ସଙ୍ଗେ ସମ୍ପର୍କ ରଖେ ନାହିଁ । ତାର ସମ୍ପର୍କ ନାଁ ଦେବା ଲୋକମାନଙ୍କ ସଙ୍ଗେ । ଏଠି ତାର ଆଲୋଚନା ବି କାମରେ ଲାଗିବ ନାହିଁ । କାରଣ ଝଡ଼୍‌ପା ଲୋକଟି ଓଡ଼ିଶାର ବାସିନ୍ଦା ହେଲେ ବି ତା' ଭାଷା ଓଡ଼ିଆ ନୁହେଁ, କନ୍ଧ । ଆଉ ତାଙ୍କ ସମାଜରେ ବାପ ମା' ମନ ଇଚ୍ଛା ବି ନାଁ ଦେଇପାରନ୍ତି ନାହିଁ । ଗାଁ ଲୋକେ ଉତ୍ସୁକ ହୋଇ ରୁଣ୍ଡି ଆନ୍ତି । ପୁରୋହିତ ଗୁଡ଼ାଏ ନାଁର ତାଲିକା ଗାଉଥାନ୍ତି । ପୂଜା ଚାଲିଥାଏ । ଭୂଇଁରେ ପଡ଼ିଥାଏ ସଦ୍ୟ ବଳି ପଡ଼ିଥିବା କୁକୁଡ଼ାର ରକ୍ତ, ଅରୁଆ ଚାଉଳ; ମୁରୁଜ, ଝୁଣାଧୂଆଁ ଉଠୁଥାଏ । କାଳିସୀ ବୁଢ଼ୀ ମନ୍ତ୍ର ପଢ଼ି ପଢ଼ି ପାଣିହାଣ୍ଡିରେ ଗୋଟିକ ପରେ ଗୋଟିଏ ଚାଉଳ ପକାଉଥାଏ । ଯେଉଁ ନାଁ କହୁ କହୁ ଚାଉଳଟା ସିଧା ଠିଆ ହୁଏ ବୋଲି କାଳିସୀ ଆଖିକି ଦେଖାଯାଏ, ସେଇ ରହେ ନାଁ । ଝଡ଼୍‌ପାର ଆରମ୍ଭ ଅନୁମାନ କରିହୁଏ । ଅର୍ଥ ନୁହେଁ ।

ସେଥିପାଇଁ ପୁଣି ଅଣ୍ଡାଳି ଅଣ୍ଡାଳି ଚାଲିଯିବାକୁ ପଡ଼ିବ ଉଜାଣି, କେଉଁ ନାଁ ଜଣା ନାହିଁ ଅତୀତକୁ, ଯେତେବେଳେ ନାଁର ମାଳିକା ତିଆରି ହେଲା । କିଏ କଲା ? କାହିଁକି କଲା ?

ନିୟମଗିରି ପର୍ବତର ଡଙ୍ଗରିଆ କନ୍ଧଙ୍କୁ ପଚାରିଦେଲେ ମାତ୍ରେ ଅନ୍ୟାନ୍ୟ ଗବେଷଣା ଭଳି ଏ ଗବେଷଣାର ବି ସହଜ ଉତ୍ତର ସଙ୍ଗେ ସଙ୍ଗେ ମିଳିଯାଏ—କିଏ କଲା ? ଆମେ ନା ତୁମେ ? ମାହାପୁରୁ କଲା । ସେ ତ ସବୁ କରିଚି । ଏ ଡଙ୍ଗର, ବଣ, ଝୁପର, ତଳ, ଧନଗଛ ସବୁ । ପିଲାଲୋକ ପରି କେତେ ପଚାରୁଛ ? ଜାଣିନାହଁ କି ସେ କଲା ବୋଲି ?

ତେଣୁ ବୁଝିହୁଏ, ଯେଉଁ ମହାପ୍ରଭୁ ଏ ସବୁ ସୃଷ୍ଟି କରିଛନ୍ତି, ତା ଭିତରେ ପୁଣି

କୋରାପୁଟ ଜିଲ୍ଲାରେ ପାଞ୍ଚ ହଜାର ଫୁଟ ଉଚ୍ଚତାକୁ ଚଢ଼ିଥିବା ନିୟମଗିରି ପର୍ବତ, ଆଉ ତା' ଉପରେ ବାସ କରି ରହୁଥିବା ଡଂଗ୍ରିଆ କନ୍ଧ, ଆଉ ତାଙ୍କର ସ୍ୱାତନ୍ତ୍ର୍ୟ, ଯିଏ ସେଇ ସୃଷ୍ଟି କରିଛନ୍ତି ଏଇ ସୁନ୍ଦର ନାଁଟି—'ଟଡ଼୍‌ପା' କି ଉଦ୍ଦେଶ୍ୟରେ ସେ ଜାଣନ୍ତି ଓ ତାଙ୍କର ଇଚ୍ଛା ଅନୁସାରେ ଏ ବ୍ୟକ୍ତି ପାଇଛି ସେ ନାଁ ।

ଗଡ଼ଗଡ଼ ଖଡ଼ଖାଡ଼ ଧଡ଼ଧାଡ଼ ପଥର ଗଛ ଉପରେ ଠକ୍‌ଠାକ୍ କୁରାଢ଼ ପାହାର ଆଉ ଗୋଟାଏ ଅଛିଣ୍ଡା ବସ୍ତୁତ । ସେ ଟଡ଼୍‌ପାର ନାଁ ସଙ୍ଗେ ସଙ୍ଗେ ମନେପଡ଼ିଯାଏ, କାହିଁ ପଚିଶ ମାଇଲ ଲମ୍ବ କୋଡ଼ିଏ ମାଇଲ ଓସାର ଥାକ ଥାକ ପର୍ବତ-ବିମାନଖଣ୍ଡା ଉଚ୍ଚ ମାଳଭୂମି, ଗଛ ହାଣି ହାଣି ସେ ଲଣ୍ଡା ହୋଇଛି । କେତେଠି ପର୍ବତଯାକ ଚାଷ କି ତୋଟା, କଦଳୀ ଲଗା ହୋଇଛି ତ କେଉଁ ପାହାଡ଼ର ଗୋଡ଼ଠୁଁ ମୁଣ୍ଡଯାକେ କମଳା ତୋଟା, ସପୁରି ତୋଟା, ପଣସ ତୋଟା ଲଗିରହିଛି ତ ମାଇଲ ମାଇଲ, ଆଉ କେଉଁଠି ଚାଷ କରୁ କରୁ ମାଟି ଧୋଇଯାଇ ଦିଶୁଛି ଖାଲି କଳାପଥର, ସେଠି ଘାସ୍ ବି ଗଜୁରେ ନାହିଁ, ଶିଉଳି ଲଗେ ଆଉ ସୁଖେ, ଆଉ କେଉଁଠି ଏବେ ବି ଭୀଷଣ ବଣ, ଲଟି ବଣ, ବାଉଁଶ ବଣ, ନାନା ଜାତି ଗଛର ବଣ, ତିନିକୋଶ ପାଞ୍ଚକୋଶ ଛାଡ଼ି କେଉଁଠି କେଉଁଠି ଗୋଟିଏ ଗାଁ, ସେଠି ପାଞ୍ଚ ଘର କି ପନ୍ଦର ଘର, ତା ପରେ ପୁଣି ଜଙ୍ଗଲ ।

ବାହାରୁ ଆସିଥିବା କର୍ମିଦଳ ଟଡ଼୍‌ପାକୁ ହାବୋଡ଼ିବା ଆଗରୁ ସେମିତି ଭୀଷଣ ବଣ ଭିତରେ ପାହାଡ଼ ଡାଲୁଏ ଡାଲୁଏ ଓହ୍ଲେଇ ଓହ୍ଲେଇ ଚାଲିଥିଲେ । ସେତେବେଳେ ରାତି ସାଢ଼େ ନଅଟା, ଅଘିଣର ଶେଷ । ସହଜେ ତ ନିୟମଗିରିରେ ଖରାଦିନେ ବି ଶୀତ । ପାଦରେ ଚାଲି ପାହାଡ଼ରୁ ଓହ୍ଲେଇବାର ତାତିରେ ଦେହ ଭିତରେ ଉଷୁମ ଲାଗୁଥିଲେ ବି ଦେହକୁ ଡାଙ୍କି ରଖିଥାଏ ଶୀତ, କିନ୍ତୁ ସେଥିରେ କଷ୍ଟ ଲାଗୁ ନ ଥାଏ, ସେ ହୋଇ ଯାଇଥାଏ ଏକପ୍ରକାର ଦେହସହା । ଶୀତକୁ ଅନୁଭବ କରିବାକୁ ତାଙ୍କ ମନରେ ଫାଙ୍କା ଅବସର ବି ନ ଥାଏ । ସେମାନେ ସାତଜଣ ମଣିଷ, ଅନ୍ଧାର ବଣ ତଳେ ତଳେ ସଂକୀର୍ଣ୍ଣ ଢାଲାବାଟ ସରୁ ସୁଡ଼ଙ୍ଗ ପରି ଗୋଡ଼ି ପଥର ଖାଲ ଢିପ ଉପରେ ବଙ୍କେଇ ବଙ୍କେଇ ଓହ୍ଲେଇ ଯାଇଛି । ସେ ବାଟରେ ତୋଡ଼ ଚପି ଚପି ଜଣକ ପିଛା ଜଣେ । ବାଟ କରେ କରେ ଗଭୀର ଗହଳ ଉହାଡ଼ରେ ପାତାଳ ପରି ଖୋଲା ଭିତରେ ଝରଣା ବହିଯାଉଛି, ତାର ଜଳପ୍ରପାତମାନଙ୍କର ଶବ୍ଦ ଶୁଭେ, ସବୁବେଳେ ଡର, ଟିକିଏ ଅଣଚ୍ଛସିଆର ହେଲେ, ଝୁଣ୍ଟି ପଡ଼ିଲେ କାଳେ ସେଇ ଖୋଲା ଭିତରକୁ । ଆଗରେ ଗୋଟିଏ ବୋଲ୍ ସାନ ଟର୍ଚ୍ଚଲାଇଟ, ସାତଦିନ ନିୟମଗିରି ଗସ୍ତ ପରେ ତା ବ୍ୟାଟେରୀ ଦୁର୍ବଳ ହୋଇ ଯାଇଛି । ରଖି-ଥୋଇ ବ୍ୟବହାର କରିବାକୁ ପଡ଼େ; କିନ୍ତୁ ସବୁବେଳେ ଆଶଙ୍କା ଥାଏ,

କାଲେ କେତେବେଳେ ବାଁ ପାଖ ପାହାଡ଼-ଢାଲୁର ଘଞ୍ଚ ବଣ ଭିତରୁ ହଠାତ୍ ମହାବଳ ବାଘ ଉଆଁ ଝାଏ ମାରିବ, ନ ହେଲେ ସାମ୍ନାରେ ଆସି ଠିଆ ହୋଇଯିବ । ତେଣୁ ସେମାନେ ବେଳେବେଳେ କଥାଭାଷା ହେଲେ ବି ସାଧାରଣତଃ ତୁନତାନ ଚାଲିଥାନ୍ତି । ଆଉ ବେଳେ ବେଳେ ଯେଉଁଠି ବାଁ ପାଖରେ ବଣଗହଳରେ ଟିକିଏ ଫାଙ୍କା ଫାଙ୍କା ଥାଏ ସେମିତି ନିଃଶ୍ୱାସ ମାରିବା ଜାଗା, ଅନ୍ଧାର ଭିତରେ ହଠାତ୍ ସେମାନେ ଦେଖନ୍ତି ଜହ୍ନ ରାତି, ପାହାଡ଼ୀ ନଈର କଳା ପାଣିରେ ଶହ ଶହ ଜହ୍ନ ଭାସିଯାଉଥାନ୍ତି । ଯେ କରେ ଚାଷ ହୋଇଥିବା ପାହାଡ଼ ଉପରେ ବାଜ୍ରା, ଗାଣ୍ଡିଆ, ମକା, ସୁଆଁ, ମାଣ୍ଡିଆ ଫସଲ ଏକାଠି ଆଉଟି ହୋଇଯାଇଥାଏ ଜହ୍ନ ଆଲୁଅ ଝାଲୁ ଝାଲୁ କୁହୁଡ଼ି ଭିତରେ । ଆଖି ଆଗରେ ଝୁଲୁଥାଏ କାହିଁ ଦିଗ ଶେଷକୁ ଲମ୍ବିଥିବା ସ୍ୱପ୍ନ ପରି ଛବି । ନାନା ମାୟାରୂପ କେତେ ପର୍ବତ, କେତେ ଉପତ୍ୟକା, କେତେ ଢିପ ଢାଲୁ ଗଛ କି ପଥର ତା ତଳେ ଖପିଯାଆନ୍ତି । ଆଲୁଅ ଅନ୍ଧାର ନିଦାପଣ ଆଉ ଲୁଚିମିଶା ନାନା ରୂପ ଚୂପ୍‌ରୂପ ।

ସେମାନେ ଟିକିଏ ଅଟକିଯାଇ ସେ ଦୃଶ୍ୟକୁ ଅନାଇ ରହନ୍ତି । ଯେମିତି ସେହି କ୍ଷଣକ ସେମାନେ ଆପଣାକୁ ଭୁଲିଯାଇ ତା' ସହିତ ହୁଅନ୍ତି ଏକା । ସେମିତି ନିଚ୍ଛାଟିଆ ଶୂନ୍‌ଶାନ୍ । ପୁଣି ସେମିତି ପୂର୍ଣ୍ଣ, ସେମିତି ସ୍ଥିର, ଆଉ ସମସ୍ୱୟସ୍ୱାନ, ଯେମିତି ହଜିଲା, ହଜିଲା ।

ଆଉ ସେମିତି ଥାଇ ନ ଥିଲାପରି—ମାୟା ସୃଷ୍ଟି ।

ତା'ପରେ ପୁଣି ଅନ୍ଧାରଗୁମ୍ପା ଭିତରକୁ ଗଡ଼ାଣି ଗାଡ଼ି ବଣସନ୍ଧିରେ ସରୁ ଚଲାବାଟରେ ଓହ୍ଲେଇ ଯାଆନ୍ତି । ଗ୍ରୁଡ଼ ଗୁଉଁ କରେ । ଜଣା ନାହିଁ କେତେବେଳେ ଯେ ବାଟ ସରିବ । ବଣଜନ୍ତୁ ଅନିହୂତ କଚଡ଼ା ଓ ଅଜଣା ବିପଦର ଆଶଙ୍କାରେ ବେଳେ-ବେଳେ ନିଶ୍ୱାସ ରୁନ୍ଧ ହୋଇଯାଏ ।

ସେମାନେ ନିୟମଗିରି ପର୍ବତର ଡଙ୍ଗ୍ରିଆ କନ୍ଧ ଗାଁ ବୁଲି ଦେଖି ଆସିଥିଲେ ଶୁଭ ଉଦ୍ଦେଶ୍ୟ ଘେନି । ଆଗରେ ଉନ୍ନୟନ କର୍ମଗୃଷ୍ଠ ପରଶୁରାମ, ସରୁ, ଡେଙ୍ଗା ଦାଢ଼ିବୁଢ଼ା ପୁରୁଖା କର୍ମଗୃଷ୍ଠ, ବଣ ପାହାଡ଼ରେ ରହୁଥିବା ଜଙ୍ଗଲୀ ଲୋକଙ୍କ ଆର୍ଥିକ ଉନ୍ନୟନ ପନ୍ଥା ଚିନ୍ତା କରୁ କରୁ ବହୁତ ମାଳ ବୁଲିଛନ୍ତି, ଆସିଛନ୍ତି ଭୁବନେଶ୍ୱର ରାଜଧାନୀରୁ । ତାଙ୍କ ପଛରେ ନୃତତ୍ତ୍ୱବିତ୍ ଅଧ୍ୟାପକ ଭରତ, ନାନା ଜାତି, ନାନା ଶ୍ରେଣୀର ଲୋକଙ୍କ ସାମାଜିକ ଅବସ୍ଥା ସେ ଅଧ୍ୟୟନ କରିଛନ୍ତି । କିଛି ଲେଖା ଛପାଇଛନ୍ତି, ଆହୁରି ଦେଖିବା ଜାଣିବା ପାଇଁ ତାଙ୍କର ବହୁତ ଆଗ୍ରହ । ଆକାରରେ ସାନ, ଗୋଲ-ଗାଲ, ଉତ୍ସାହୀ, ବୟସ ଚାଳିଶି । ତାଙ୍କ ପଛରେ ସ୍ଥାନୀୟ କର୍ମଗୃଷ୍ଠ ହରି ପାଣି, ପାହାଡ଼ ତଳେ ତାଙ୍କର ଉନ୍ନୟନ କାମ; କିନ୍ତୁ ଏଣିକି ସେ ନିୟମଗିରି ମାଳରେ ବି କାମ ହେବ

ବୋଲି ପରିକଳ୍ପନା ହେଲାଣି, ତେଣୁ ଦେଖିବାକୁ ଆସିଛନ୍ତି, ତିରିଶ ବର୍ଷ ବୟସର ଛେଳ୍ପିଟା କଳାମୁଗୁନି ଦେହ । ତାଙ୍କ ପଛରେ ଜଙ୍ଗଲ ଗାର୍ଡ ମଧୁସୂଦନ, ବୟସ ଅଠାବନ ପାଖ, ବାଙ୍ଗର ବୁଢ଼ା, ଶୀର୍ଣ୍ଣ ଦେହ, ନିୟମଗିରି ମାଳରେ ସେ ବହୁତ ବର୍ଷ ବୁଲିଥିବାରୁ ସେଠି ତାଙ୍କର ଚହ୍ଲାଜଣା ଅଛି, ସେ ଆସିଥିଲେ ଏ ବାବୁମାନଙ୍କୁ ସାଙ୍ଗ ଦେଇ ବୁଲେଇ ନେବାକୁ । ତାଙ୍କ ପଛେ ପଛେ ତିନି ଜଣ ଚପରାଶି, ମକର, ନନ୍ଦରୁ, ଗ୍ରାମାସୁ—ଏମିତି ସାତଜଣ ।

ବିଷମକଟକ ରେଲଷ୍ଟେସନରୁ ବାହାରି ନିୟମଗିରି ପର୍ବତମାଳକୁ ଚଢ଼ି କେତେ ଗାଁରେ ରହି ରହି ସେମାନେ ଓହ୍ଲେଇ ପଡ଼ୁଛନ୍ତି ମୁନିଗୁଡ଼ା ରେଲଷ୍ଟେସନରେ ବାହାରିବେ ବୋଲି । ସିଧା ବାଟରେ ଏଇ ଦୁଇ ଷ୍ଟେସନ ପନ୍ଦର ମାଇଲ ଛଡ଼ା; କିନ୍ତୁ ଠାଏ ପର୍ବତ-ଚଢ଼ା ଆଉ ଠାଏ ଓହ୍ଲାଇଲା ବେଳକୁ ପ୍ରାୟ ପଇଁତ୍ରିଶ ମାଇଲ । ସେଇ ମାଳରେ ସାତଦିନ ବିତିଛି । ଚାଲିବାକୁ ସଡ଼କ ନାହିଁ, ଝୋଲା-ନଈ ଦାଢ଼େ ଦାଢ଼େ ଗଛଖ ସରୁ ବାଟ । ଘଣ୍ଟାଏ ଚଢ଼ାଣି, ଦେଢ଼ ହଜାର ଫୁଟ ଉଚ୍ଚତାରୁ ପାଖ ପାଖ ପାଞ୍ଚ ହଜାର ଫୁଟଯାକେ, ମୁଣ୍ଡବୁଲା ଗଡ଼ାଣି, ବାଟେ ବାଟେ ଆଜ ଆଜ ପରସ୍ତ ପରସ୍ତ ପାହାଡ଼କୁ ଚଢ଼ିବା ଓହ୍ଲେଇବା । ରହିବାକୁ ଘର ନାହିଁ, ଡଂଗ୍ରିଆ କନ୍ଧର ଆଡଅପୃଚା ଘେନି ତାର ଟିକି ଟିକି ଗୁମ୍ପା ପରି ଚାଲ କୁଡ଼ିଆର ସଙ୍କୀର୍ଣ୍ଣ ଅନ୍ଧାର ପିଣ୍ଡାରେ ବାସ, ପିଇବାକୁ ପାହାଡ଼ିଆ ନଈର ପାଣି, ସେଥିରେ ଭସିଆସେ ଉପରମୁଣ୍ଡର ଗାଁର ଧୂଆଧୋଇ ଯେତେ ପ୍ରକାର, କନ୍ଧ ଗାଁରେ ଢ଼' ଦିନ ଦିନ ଗୁଡ଼ ମଇଁଷି ହଣାହୁଏ, ଝରଣାରେ ମାଉଁସ ଧୁଆହୁଏ, ସେଥିରେ ତା ପୂଟା ଆଉ ବ ଫୋପଡ଼ା ହୁଏ । ସେଠି ଡାକ୍ତରଖାନା ନାହିଁ, ଡାକଘର ନାହିଁ, ଦୋକାନ ବଜାର ନାହିଁ, ପୁଲିସ୍ ଥାନା ନାହିଁ । କୋଠାଘର ତ ଦୂରର କଥା, ଖପରି ଘର ନାହିଁ । କୂଅ ପୋଖରୀ ନାହିଁ, ସଭ୍ୟତାର ଚହ୍ଲବର୍ଣ୍ଣ ବ ନାହିଁ । ଖାଲି ପର୍ବତ, ଜଙ୍ଗଲ । ପର୍ବତଯାକ ନାନା ସ୍ଥାନରେ ଫସଲ, ଆଉ ଫଳତୋଟା । ଆଉ ଆଦିମ ଅଧିବାସୀ, ଯାହାଙ୍କ ନାଁ ଡଂଗ୍ରିଆ କନ୍ଧ, ତାଙ୍କ ସାଙ୍ଗରେ କିଛି ଡମ୍ବ ଜାତିର ଲୋକ, ସେମାନେ କାଳକ୍ରମେ ତଳୁ ଉଠିଯାଇଛନ୍ତି ଜୀବିକା ଅର୍ଜନ ଉଦ୍ଦେଶ୍ୟରେ । କନ୍ଧକୁ ମଦ ଦେଇ, କିଛି କିଛି ଟଙ୍କା ଦେଇ ତା ଫଳଗଛତକ ବନ୍ଧା ନିଅନ୍ତି । ଥରେ ବୋତଲେ ମଦ ଦେଲେ ବର୍ଷକ ପାଇଁ ଗୋଟେ କମଳା ଗଛ କି ସ୍ଵଗଟା ପଣସ ଗଛ, ଦୁଇଟା ଟଙ୍କା ଦେଲେ ବର୍ଷକ ପାଇଁ ଏକ ପ୍ରକାଣ୍ଡ କଦଳୀବାଡ଼, କୋଡ଼ିଏଟା ଟଙ୍କା ଦେଲେ ମାଣେ ଆବାଦ୍ରର ସପୁରିବଣ, ସେହିପରି ଉପାୟରେ ହଳଦୀ, ହଳଡ଼, ଜଡ଼ା, ନାନା ଫସଲ । କନ୍ଧ ତା ହାତରେ କୋଡ଼ି କୋଡ଼ି ବର୍ଷକଯାକ ଫସଲ ଲଗାଏ । ଗ୍ରୀଷ୍ମରେ ଶୀତ କାକରରେ ପନ୍ଦରହି ମିରଗ ସମ୍ବର ଦାଉରୁ ଫସଲ ଜଗେ, ତା'ପରେ ଡମ୍ବ ସେ ଫସଲତକ

ନେଇଯାଏ । ପାହାଡ଼ରୁ ବୋହି ଆଣି ହାଟରେ ବିକେ, ଧନ ଅର୍ଜନ କରେ । ଡମ୍ବ ଆଉ କନ୍ଧ ନିଜ ନିଜ ସମାଜର ଚଳଣି ଅନୁସାରେ ଚଳନ୍ତି । ଡମ୍ବର ବଡ଼ ବଡ଼ ମେଳ ଫରଦ ଘର, ଓସାର ପିଣ୍ଡା, ସଫା, ଲିପାପୋଛା, କିଛି କାରୁକାର୍ଯ୍ୟ ଥାଇ କାଠ କବାଟ । ତଳର ଲୋକଙ୍କପରି ସ୍ତ୍ରୀ ପୁରୁଷ ପରିଷ୍କୃତ ଲୁଗାପଟା ପିନ୍ଧନ୍ତି । କୋଟ, କାମିଜ, ଶାଢ଼ି, ବ୍ଲାଉଜ, ଘୋଡ଼ହେଲ, ସବୁ ବ୍ୟବହାର କରନ୍ତି । ବଡ଼ସକାଳୁ ତା ଘର ଦୁଆରମୁହଁ ଓଳିଆ-ପୋଳଆ ହୋଇ ସେଠି ଗୋବରପାଣି ଛିଞ୍ଚାହୁଏ, ତା ପିଲାଏ ଦି' ଅକ୍ଷର ପଢ଼ନ୍ତି ବି । କେବେ କେବେ ସେ ପୁରାଣ ବୋଲେ, କେହି କେହି ଲୁଗା ବୁଣନ୍ତି । ନ ହେଲେ ଜିନିଷ ବୋହି ହାଟକୁ ନେବା ତାର ପ୍ରଧାନ ବୃତ୍ତି, ସେ ବୃତ୍ତିରେ ସ୍ତ୍ରୀ ପୁରୁଷ ଉଭୟେ ଲାଗନ୍ତି । ସେହି ବେପାର ପାଇଁ ଜିନିଷ ସଂଗ୍ରହ କରିବା ସକାଶେ ଆଉ କେତୋଟି ବେପାରୀ ବି କେହି କେହି କରନ୍ତି, ଗ୍ରାମରେ ମଦ ରାନ୍ଧିବା ବା ସଂଗ୍ରହ କରିବା, ମାଉଁସ ହେବାକୁ ଗୋରୁ ମଇଁଷି ଆଣି କନ୍ଧଙ୍କୁ ବିକିବା । ଆଉ କେତେ ସନ୍ଧ ବା ସନ୍ଧା ବୃତ୍ତି ଓ ବେପାର ଭିତରେ ସବୁ ଖପିଯାଏ । ଡଙ୍ଗ୍ରିଆ କନ୍ଧ ରହେ ଅବଙ୍କି । ଧୂଳିଧୂସରିଆ ଚଳଣି ତାର । ପୁରୁଷ ପିନ୍ଧେ କୌପୁନି, ସ୍ତ୍ରୀ ତା ଫେରରେ କମକୁଟ ବୁଣି ତାକୁ ମୁନ୍ଦିବା କରେ ! ସ୍ତ୍ରୀ ତା ଅଣ୍ଟାରେ ଗୁଡ଼ାଏ ଖଣ୍ଡେ ଚଉହାତ ମୋଟା କନା, ପଦାକୁ ବାହାରିଲେ ଆଉ ସେଇକି ଖଣ୍ଡେ ଆଗପଟୁ ଅଣ୍ଟାଠୁ ବେକଯାଏ ଘୋଡ଼ାଇ ପକାଏ । ଭାରି ସାଧାରଣ ପରିଧେୟ କୋଚଟ ମଇଳା, ମୁଣ୍ଡବାଳ ଫୁରୁଫୁରୁ । ପୁରୁଷ ନାକରେ ବି ମୁଦି ନାଏ, କାନରେ ନାଏ ଶାମୁକା ଓ କାଚଟଙ୍କର ଫାଶିଆ, ମୁଣ୍ଡରେ କପାଳ ଉପରକୁ ଗୋଲକରି ଖିଅର ହୋଇ ପାନିଆ ଖୋଷି ଜୁଡ଼ା ବାନ୍ଧେ, ବେକରେ ରଙ୍ଗ ରଙ୍ଗର କାଚମାଳି ପକାଏ, କାନ୍ଧରେ ଟାଙ୍ଗିଆ ପକାଏ, ଅଣ୍ଟାରେ ଗୋଟାଏ ଗୁଞ୍ଜିଖଣ୍ଡେ ଲମ୍ବର ଛୁରୀ ଓହଳାଏ; ହାତରେ ଧରେ ଚାମଣା କାଠର ଗୋଳିଆ ବାଡ଼ି, ତା ଉପର ଭାଗକ କମକୃତ ହୋଇ କଟାହୋଇଥାଏ । ସ୍ତ୍ରୀ ନାଏ ସରୁ ସରୁ ରଙ୍ଗ ରଙ୍ଗର କାଚମାଳି, ମୁଦି, ଗିଲଟିର କଂସା ପିତଳର ନାନା ଅଳଙ୍କାର । ପୁରୁଷ ମଦ ପ୍ରତି ବହୁତ ଆସକ୍ତ । ମିଳିଲେ ଶଲପ ଗଛରେ ଚଢ଼ି ପେଟପୂରା ରସ ପିଏ, କିଣିବାକୁ ମହୁଲ ମଦ ମିଳିଲେ ସବୁ ଅର୍ଜନ ସେଇଠି ଅଜାଡ଼ି ଦିଏ, ମାତେ ନିଶାରେ, ବେହୋସ୍ ହୁଏ । ଗାଁରେ ଲାଗିରହିଥାଏ ଯାନି-ଯାତରା ପୂଜା । ସେଥିରେ ମଇଁଷି ହାଣି ଦେବତାଙ୍କୁ ବଳି ଭୋଗଦେଇ ବାଣ୍ଟି ନେଇ ମାଉଁସ କରି ଖାଇବା ଓ ବନ୍ଧୁ କୁଟୁମ୍ବଙ୍କୁ ଭୋଜି ଦେବା । ବର୍ଷଯାକ ଖଟି ଖଟି ଏତେ ଫସଲ ଉପୁଜାଇ, ଏତେ ମୂଲ୍ୟବାନ ସପୁରି, କମଳା, ପାଚିଲା କଦଳୀ, ରଙ୍ଗହଳଦୀ, ପଣସ, ହରଡ଼, ଜଡ଼ା ନାନା ଫସଲ ଏତେ ବିପୁଳ ପରିମାଣରେ ଉପୁଜାଇ ତଥାପି ଡଙ୍ଗ୍ରିଆ କନ୍ଧ ଯେଉଁ ଗରିବକୁ ସେହି ଗରିବ । ବର୍ଷକେ ଚାରିମାସ ବର୍ଷା, ଘରେ ଶସ୍ୟ

ଅଣ୍ଡାବ ପଡ଼େ । ଆମ୍ବ କୋଇଲି, ଶାଗ, ବାଉଁଶକରଡ଼ି, ଶଳପ କାଠର ଧୂଳି, କେତେ ପ୍ରକାର କଣ ଡହିଁରେ କେବେ କଚ୍ଛୁ ସୁଆଁ, ମାଣ୍ଡିଆ ଥିଲେ ମିଶାଇ ସେଦନ ବତାଇଦଏ ।

ସେମାନେ ଦେଖି ଦେଖି ଆସିଥିଲେ ସେହି ଚଲଣି, କର୍ମଗୁରୁ ପରଶୁରାମ, ଅଧ୍ୟାପକ ଭରତ, କର୍ମଗୁରୁ ହର ପାଣି । ଜଙ୍ଗଲ ଗାର୍ଡ ମଧୁସୂଦନ ଯେତକ ବୁଝିପାରେ କହିପାରେ ଡଂଗ୍ରିଆ କନ୍ଧର ଭାଷା । ତାର ସୁବିଧା ନେଇ ଡଂଗ୍ରିଆ କନ୍ଧଙ୍କୁ ନାନା ପ୍ରଶ୍ନ ପଚାରି ନାନା ସମ୍ବାଦ ସେମାନେ ତାଙ୍କ ଟିପା ଖାତାରେ ଟିପିଥିଲେ । ସାତଦନ କାଳ ଡଂଗ୍ରିଆ କନ୍ଧର ଉପକାର ପାଇଁ ସେମାନେ ବହୁତ ଆଲୋଚନା କରିଥିଲେ, ଧନ୍ଦି ହୋଇଥିଲେ । ତାଙ୍କଠି ଆନ୍ତରିକତା ଏପରି ପ୍ରବଳ ହୋଇ ଫୁଟିଉଠିଥିଲା, ଯଜେ ଯେପରି ସେହି ସାତଦନ କାଳ ସେମାନେ ମନୁଷ୍ୟ ଜାତି କହିଲେ ଭାବିପାରୁଥିଲେ କେବଳ ଡଂଗ୍ରିଆ କନ୍ଧଙ୍କୁ, ସ୍ଥାନ କହିଲେ ନିୟମଗିରି ପର୍ବତର ମାଳଭୂମିକୁ । ସେହି ଚନ୍ଦନର ଦଶାରେ ସେମାନେ ବାଟରେ ଓ ତାଙ୍କ ରହିଣି ଗାଁମାନଙ୍କରେ ବହୁତ ବୁଲି ବୁଲି ଦଗା କରୁଥିଲେ, ସେହି କାରଣରୁ ସେଦନ ମୁଣ୍ଡାଗୁଣିରୁ ବାହାରୁ ବାହାରୁ ତାଙ୍କୁ ଡେରି ବାଜଯାଇଥିଲା । ତାଙ୍କର ଜନଷବୁହା ଭାରୁଆ ପାଞ୍ଚଜଣ ତାର ଘଣ୍ଟାକ ଆଗରୁ ବାହାରି ସାରିଥିଲେ । ସେମାନେ ଡେରି ପାଇଁ ଚିନ୍ତିତ ନ ଥିଲେ, କାରଣ ମଧୁସୂଦନ ତାଙ୍କୁ କହିଥିଲେ ମୁଣ୍ଡାଗୁଣିରୁ ମୁନିଗୁଡ଼ା ପର୍ବତ ଓହ୍ଲାଣିବାଟ ଘନକୋଶରୁ ଟିକିଏ ବେଶି, ଯଦଚ ସେ ଦୂରତା ପ୍ରାୟ ପନ୍ଦର ମାଇଲ । ତା ପରେ ବାଟରେ ଯାଉ ଯାଉ ଦୃଶ୍ୟ ଦେଖି ଦେଖି ଡଂଗ୍ରିଆ କନ୍ଧଙ୍କ ବିଷୟରେ ସେମାନେ ଆଲୋଚନା କରନ୍ତି, ଅଧ୍ୟାପକ ଭରତ ବହୁତ ଫଟୋ ଉଠାଇସାରିଥିଲେ, ଆହୁରି ଫଟୋ ଉଠାନ୍ତି, ଡେରି ହେଲା ।

ସମସ୍ୟା ତ ଜଣେଇ ଜଣା, ସମାଧାନ କଣ ? ତାହାର ଉତ୍ତର ଖୋଜୁ ଖୋଜୁ ବାଟ କଟିଯାଏ । ପଚାରିବାରୁ ଜଙ୍ଗଲ ଗାର୍ଡ ମଧୁସୂଦନ ତା ମତ ବ୍ୟକ୍ତ କଲା ।

"ମୁଁ ଦେଖି ଦେଖି ବୁଢ଼ା ହେଲି ଆଜ୍ଞା, ସ୍ୱାଙ୍କୁ ଯେମିତ ଦେଖିଥିଲି, ସେ ସେମିତ ଅଛନ୍ତି । ଏଡ଼େ ଭଲ ବରବନ୍ତ ମଣିଷ ଏ ଦୁନିଆରେ ନଥିବେ, ଅନ୍ୟାୟ କ ମିଛର ପାଖ ପଶିବେ ନାହିଁ, ଯାହା ଦେବେ କ କରିବେ ବୋଲି କଥା ଦେଇଥିବେ, ସେଥିରୁ ଟଳେହେଲେ ଏକର ସେକର ହେବେ ନାହିଁ ସିନା, ମାତ୍ର ବଦଳିବାକୁ କହିଲେ ବଦଳିବେ ନାହିଁ । ଦାନ୍ତ ଘଷିବେ ନାହିଁ, ଛୁଆଁହେବେ ନାହିଁ, ପାଠ ପଢ଼ିବେ ନାହିଁ, ମଦ ଛାଡ଼ିବେ ନାହିଁ, ଆମେ ଯେତେ ଉପଦେଶ ଦେଲେ ଭଲବାଟ ବତେଇଲେ ଶୁଣିବେ ନାହିଁ, କହିବେ ପୂର୍ବରୁ ତ ଚଳିନାହିଁ ।

ହର ପାଣି ତାଙ୍କ ମତ ଉପରେ ଜୋର ଦେଲେ, "ସବୁ ବଦଳି ପାରିବ ଆଜ୍ଞା,

ଏମାନେ ଗାଆଁକୁ ଗାଆଁ ବଦଳିବେ । ଆଗ ଦରକାର ପକ୍କା ସଡ଼କ, ନଦ୍ୟୁମଗିରେ ଅନ୍ଧସନ୍ଧି ଯେମିତି ଖୁଲିହେବ । ସଡ଼କ ମଣ୍ଡି ଅନ୍ଧାରି ବଣ ଖୋଲିଗଲେ ଆଗେ ସଭ୍ୟତା ପଶିଆସେ । ବାହାରୁ କିଏ ଆସିଲେ, ତାଙ୍କର ରହିବା ପାଇଁ ଘର ଦରକାର, ପିଇବାକୁ ପାଣି ଦରକାର, ଅନ୍ୟାନ୍ୟ ସୁବିଧା ଦରକାର । ଯୁଆଙ୍କ ଭିତରେ କାମ କରିବାକୁ ବହୁତ କର୍ମଚାରୀ ଦରକାର । ସେ କାମ ଏକାଠି କୋଡ଼ିଏ ପଚିଶି ଲକ୍ଷ ଟଙ୍କାରେ ଆରମ୍ଭ କରିବାକୁ ପଡ଼ିବ, କୃଷି ଆଉ ଫଳବଗିଚା କାମ, ଛେଳି ଘୁଷୁରି, କୁକୁଡ଼ା କାମ, ଇସ୍କୁଲ, ଡାକ୍ତରଖାନା, କଣ କିଛି ଫ୍ୟାକ୍ଟେରି, ସବୁ ପ୍ରକାର ! ଏତେ କଥା କଣ, ଏଠି ଖୋଜୁ ଖୋଜୁ ଯଦି ଗୋଟାଏ ଖଣି ବାହାରିପଡ଼ନ୍ତା, ବସିଯାଆନ୍ତା ଗୋଟାଏ ରାଉରକେଲା, ଏମାନେ ବଦଳିବାକୁ ବେଳ ଲାଗନ୍ତା ନାହିଁ ।

ଭରତ କହିଲେ, "ଏମାନଙ୍କୁ ଖାଲି ବଦଳେଇବା ପାଇଁ ପରିଶ୍ରମ କରିବା ତ ଉଦ୍ଦେଶ୍ୟ ରହିବା ଉଚିତ ନୁହେଁ, ଭାବିବାକୁ ପଡ଼ିବ କଣ କଲେ ଯୁଆଙ୍କର ଭଲ ହେବ । ଶୋଷଣ ଚାଲିଥିବାଯାକେ ଯେତେ କମେଇଲେ ହାତରେ କିଛି ରହିବ ନାହିଁ । ଯେ ଶୋଷଣ କରିଥିଲି, ଯେ ଶୋଷଣ କରୁଛନ୍ତି, ତାଙ୍କୁ କଣ ଏଠୁ ଘଉଡ଼େଇ ଦେଇ ହେବ ? ସେମାନେ ବି ଏ ଦେଶର ନାଗରିକ; କିନ୍ତୁ ଶୋଷଣ ହୁଏ କାହିଁକି ? ସେ କଣ ଖାଲି ଶୋଷକର ଆକ୍ରମଣ ଯୋଗୁଁ ନା ଶୋଷିତର ଶୋଷଣ ଲାଗି ନିହିତ ପ୍ରବଣତା ଯୋଗୁଁ ? ଉଭୟେ ଦାୟୀ । ଏଇ ଯେଉଁ ପ୍ରବଣତା ଆମେ ଜଂଗ୍ରିଆ କନ୍ଧଠି ଦେଖି ଆସିଲେ, ସେ ଏକାଦିନକେ ଗଢ଼ା ହୋଇନାହିଁ, ସେ ଯେମିତି ବଢ଼ିଛି, ମଣିଷ ହୋଇଛି ଯେତେ ରୁଚି ରୀତିନୀତି ବିଶ୍ୱାସ ଆବୋରି ଧରିଚି, ଜୀବନ ପ୍ରତି ତାର ଯେଉଁ ଦୃଷ୍ଟିଭଙ୍ଗୀ, ଏ ସବୁ ତାକୁ କରିଛି ଏମିତିଆ । ସେ ତା' ଦେବତାମାନଙ୍କୁ ତୁଷ୍ଟ କରିବାକୁ, ତା ପିତୃ-ପୁରୁଷ କି ମଲା-ହଜିଲାଙ୍କୁ ତୁଷ୍ଟ କରିବାକୁ ମଇଁଷି ବଳି ଦେବ, ମଦ ଭୋଜି ଦେବ, ଏଥିରୁ ତାକୁ ନିରସ୍ତ କରିବ କିଏ ? ସେ ଶୀତକାଳରେ ପାହାଡ଼ରେ ରହେ, କାମ କରେ, ଲୁଙ୍ଗାରେ ଚଳେ, ତେଣୁ ତା ଦେହ ଉଷୁମେଇବାକୁ ମଦପାଣି ଖାଇବ । ତା ପାଇଁ ଅନ୍ୟ ମଉଜ ନାହିଁ, ତେଣୁ ମଦର ମଉଜ ତାକୁ ବଡ଼ । ମଦ ମଇଁଷି ଚାଲିଥିବା-ଯାକେ ସେ ପଇସା ଫୋପାଡ଼ୁଥିବ, ଶୋଷଣକାରୀକୁ ଡାକି ଆଣୁଥିବ । ଶିକ୍ଷିତ ହେଲେ ତା ରୁଚି ବଦଳନ୍ତା; କିନ୍ତୁ ତାର ଆଶଙ୍କା ତାର ପିଲା ପାଠ ପଢ଼ିଲେ ପାହାଡ଼ରେ ଫଳଚାଷ କି ଫସଲଚାଷ କରିବ ନାହିଁ, ସେ ଆଶଙ୍କା ବି ଅମୂଳକ ନୁହେଁ, ତେଣୁ ଇସ୍କୁଲ ଖୋଲିଲେ ସେ ପାଠ ପଢ଼ିବାକୁ ନାମଙ୍ଗ । ବଣ ପାହାଡ଼ ଚାଷ ନ କଲେ, ବଣ ପାହାଡ଼ରେ ତା'ପାଇଁ ଅନ୍ୟ ଜୀବିକା ନାହିଁ, ତା ହେଲେ ତାକୁ ଏଠୁ ଚାଲିଯିବାକୁ ପଡ଼ିବ । ମୋଟ ଉପରେ ଶିକ୍ଷିତ ନ ହେଲେ ସଂଯମ ଓ ନୂଆ ଦୃଷ୍ଟିଭଙ୍ଗୀ ନ

ଧରିଲେ, ତା ଅବସ୍ଥାରେ ବିଶେଷ ପରିବର୍ତ୍ତନ ହେଲା ଭଳି ମତେ ଦିଶୁନାହିଁ, ସେଥିପାଇଁ ବହୁତ ଖର୍ଚ୍ଚ, ବହୁତ କର୍ମୀ, ବହୁତ ବ୍ୟବସ୍ଥା ତ ନିଶ୍ଚୟ ଲୋଡ଼ା, ଆହୁରି ଦରକାର ବହୁତ ସମୟ ! ତା ମନକୁ ନ ଗଢ଼ି ହଠାତ୍ ତା ଉପରେ ପରିବର୍ତ୍ତନର ତୋଫାନ ଚାଳିଦେଲେ ଆମେ ଭଲ କରୁ କରୁ ତାର ମନ୍ଦ ହେବ, ଯେ ଲଣ୍ଡଭଣ୍ଡ ହୋଇଯିବ ।"

ଆଉ ପରଶୁରାମ କହିଲେ—

"ତା ହେଲେ କ'ଣ ନିରାଶ ହୋଇ ଆମେ ଖାଲି ଅନେଇଁ ରହିଥିବା ? କେବେ ଲକ୍ଷ ଲକ୍ଷ ଟଙ୍କା ମିଳିବ, ବିରାଟ ବିରାଟ ଅନୁଷ୍ଠାନ ଗଢ଼ାହେବ, କେବେ କେତେ ବର୍ଷ ପରେ ଡଂଗ୍ରିଆ କନ୍ଧର ଆଜି ଯେଉଁ ପିଲି ଜନ୍ମ ହେଉଛନ୍ତି, ସେମାନେ ପାଠ ପଢ଼ି ନୂଆ ମଣିଷ ହୋଇ ନୂଆ ସମାଜ ଗଢ଼ିବେ, ସେ ପର୍ଯ୍ୟନ୍ତ ଆମେ ଚୁପଚାପ୍ ବସିଥିବା, ଆଉ ସେ ଏମିତି ଅଜ୍ଞାନ, ଅଶିକ୍ଷା, ଦାରିଦ୍ର୍ୟ, ଶୋଷଣ ଭିତରେ ନୁହେଁ—ମଣିଷ ନୁହେଁ—ଜନ୍ତୁ ହୋଇ ଦିନ କାଟୁଥିବ ? ତାହାହେଲେ ତା ବିଷୟରେ ଏତେ ସେତେ ଆମେ ଜାଣି ମଧ୍ୟ ଲାଭ କଣ ? ଖାଲି ଆମର କୁତୂହଳ ମେଣ୍ଟାଇବା ଆଉ ଜ୍ଞାନ ବଢ଼ାଇ ସାଇତି ରଖିବା ? ଏତିକି ? ନା, ତା' ଅପେକ୍ଷା ଆମେ କିଛି କାମ ଆରମ୍ଭ କରିଦେଉଁ । ସବୁ ଗାଁ ନ ହେଉ, କେତେ ଖଣ୍ଡି ଗାଁ ନିଆଯାଉ । ଘର ଘର ବୁଲି ସେମାନଙ୍କ ସଙ୍ଗେ ସମ୍ପର୍କ ରଖାହେଉ । ତାଙ୍କୁ କୁହାପୋଛା କରି ମଙ୍ଗାଯାଉ । ସେ ଯାହା ବିକିବେ ସରକାରକୁ ବିକନ୍ତୁ, ଯାହା କିଣିବେ ସରକାରଠୁଁ କିଣନ୍ତୁ । ସେଥିପାଇଁ ଗୋଟିଏ ଦୁଇଟି ଦୋକାନ କରାଯାଉ । ତାଙ୍କୁ ତାଙ୍କ ଆବଶ୍ୟକ ମାନିଆ ସରକାରଠୁଁ ଋଣବାଡ଼ି ଦିଆଯାଉ, ଯେମିତି ସେମାନେ ଆଉ କାହା କବଳରେ ନ ପଡ଼ିବେ । ତାଙ୍କୁ ଭଲ ବୁଦ୍ଧି ଦେବାପାଇଁ ତାଙ୍କ ଭିତରେ କର୍ମକେନ୍ଦ୍ର ଖୋଲାଯାଉ । ଇସ୍କୁଲଟିଏ ବସୁ । ସେମାନେ ଯେମିତି ଦେଖିବେ ଯେ ସେ ନୂଆ ବାଟରେ ତାଙ୍କର ରୋଜଗାର ବଢ଼ୁଛି, କ୍ରମେ ତାକୁ ହିଁ ଆଗ୍ରା କରିବେ । ବାହାରର ଶିକ୍ଷିତ ଲୋକଙ୍କର ଅଧିକରୁ ଅଧିକ ସଂସ୍ପର୍ଶରେ ଆସୁ ଆସୁ ତାଙ୍କର ରୁଚି ଓ ସ୍ୱଭାବ ବି ବଦଳିବ । ଏହାରି ସଙ୍ଗେ ସଙ୍ଗେ ଚାଲୁ ତାଙ୍କୁ ଆହୁରି ଭଲ ଫଳଚାଷୀ କରି ତାଲିମ କରାଇବା କାମ, ଆହୁରି ଫଳଗଛ ଲଗାଇବା କାମ । କ୍ରମେ ହାଓ୍ୱା ଖେଳି-ଯିବ, ଅନ୍ଧାର ଭିତରେ ଟିକିଏ ଆଲୁଅ, ଆଉ ଟିକିଏ, ସେଇଠୁ ଆହୁରି ।"

ଅଧ୍ୟାପକ ଭରତ କହିଲେ, "ଏତିକିରେ ଯଦି ସମସ୍ୟାର ସମାଧାନ ହୋଇ-ଯାଆନ୍ତା; କିନ୍ତୁ କଣ ହୋଇପାରିବ ? ସେମାନେ ପଇସା ଅରଜି ଶିଖିବେ; କିନ୍ତୁ ତାକୁ ସାଇତିବା କି ଖର୍ଚ୍ଚ କରି ଶିଖିବାପାଇଁ ଯୁଗ ପାହିଯିବ । ଯେ ତାଙ୍କ ଫସଲ ବୋହିନେଉଛି, ଠକିଠାକି ହାତକଲି ଉପରୁ ସେ ଫସଲକୁ ପାହାଡ଼ର ତଳକୁ ଆଣିବାପାଇଁ ପରିଶ୍ରମ କରୁଛି, ଆଉ ତାକୁ ବିକି ପଇସା କମେଇବାପାଇଁ ବୁଦ୍ଧି ଖଟାଉଛି,

ସେ ଫସଲ ନ ନେଇ ଆହୁରି ସହଜରେ ଫସଲର ବିକି ଧନକୁ ମଦ ଠେକ ଦେଖାଇ ହାତକୁ ନେଇ ଯାଇ ପାରିବ, ସେ ନ ନେଲେ ତା'ପରି ଆଉ କିଏ ଜଣେ ନେଇ-ଯିବ । ପଇସାଲୋଭ ନୂଆ ଅନର୍ଥ ଶିଖାଇବ । ତାଙ୍କ ସରଳତା, ସାଧୁତା ଯିବ । ବାହାର ଲୋକଙ୍କ ସମ୍ପର୍କରେ ବେଶି ବେଶି ଆସି ସେମାନେ ଟାଉଟସ୍ତ ଶିଖିବେ । ଏ ସମ୍ପର୍କରେ ପ୍ରଭାବର ବିଶିଷ୍ଟତା ଏଇଆ ଯେ ଆଗ ଖରାପ ଗୁଣମାନ ଚଞ୍ଚଳ ଶିଖି-ହୋଇଯାଏ । ସେମାନେ ସୁବିଧାବାଦୀ ହେବେ, କରଜ ନେଇ ବୁଡ଼େଇବେ, କରଜ ଶୁଝିବାରୁ ଡରି ନିଜ ଜମିକୁ ପରକୁ ଲୁଚେଇ ଗୁହ୍ଲେଇ ବିକିବେ, ପଇସା ଥିଲେ ହାଟରେ କିଣିବେ, କାଲି ଖାଇବାକୁ ମନକଲେ ସରକାରୀ ଦୋକାନକୁ ଆସିବେ, ବାରମ୍ବାର ନୂଆ ନୂଆ ଶୋଷଣରେ ପଡ଼ିବେ । ଏ ଅଘଟଣଗୁଡ଼ାକ ବି ତ ଘଟିପାରେ । ଯେ ଆଜି ଏତେ ଅଶିକ୍ଷିତ ଥାଇ ମଦପାଣିରେ ବୁଡ଼ି ଆପଣାର ଦେହର କ୍ଷୁଧା ମେଣ୍ଟେଇବାକୁ ବଡ଼ ବୋଲି ଭାବୁଛି, ଯାହା ମନରେ ନାନା ଅନ୍ଧବିଶ୍ୱାସରୁ ଭୟ ସନ୍ଦେହ ପୂରିରହିଛି, ସେ ଯେ ଏତେ ସତ୍ୟବାଦୀ, ସତ୍ୟନିଷ୍ଠ ହୋଇ ରହିଛି ତା କଣ ତାର ଉନ୍ନତ ମନ ଯୋଗୁଁ, ନା ତାର ଆଖି ଖୋଲିନାହିଁ ବୋଲି ! ଜାଣିଶୁଣି ସତ୍ୟାଶ୍ରୟୀ ହୁଏ ଜ୍ଞାନୀ, ଯେ ବୁଝେ ଭୋଗଠୁ ତ୍ୟାଗ ବଡ଼, ଯେ ସଂଯମ ଶିଖିଛି, ଜୀବନକୁ ସାଧନା ବୋଲି ଘେନିଛି, ଆଦର୍ଶକୁ ବୁଝି ସ୍ଥିର କରି ଆଖି ଆଗରେ ଧରି ରଖିଛି । ସେଭଳି ଲୋକ ବି ଟଳିଟଳି ହୁଏ, ଝୁଣ୍ଟେ । କେତେବେଳେ ତା ଆତ୍ମବିଶ୍ୱାସ ହଜେ, କେତେବେଳେ ସେ ଆପଣାର ତ୍ୟାଗ ତପସ୍ୟା ପାଇଁ ଆପେ ଅନୁତାପ କରେ । ଆଉ ଏଠି ତ ସେ ଜ୍ଞାନ କି ସଂସ୍କୃତିର କିଛି ଦିଶୁନାହିଁ । ଆପଣାର ମଦ, ମାଂସ, ଫୂର୍ତ୍ତି ଛଡ଼ା ଆଉ କିଛି ନାହିଁ । ସେ ତ କହୁଛି, ଏଇଥିପାଇଁ ଯେ ମିଛ ଫାନ୍ଦ ଚଳେଇନେଲା ଭଳି ତାଠିଁ ବୁଦ୍ଧି ନାହିଁ ତା ନୁହେଁ, ଆଉ ତା ମନରେ ଅନେକ ଅଜଣା ଭୟ ଅଛି । ଯେମିତି ସେ ବାଗ ପାଇଯିବ, ସେ ବି ହେବ ମିଛୁଆ, ପେଞ୍ଚୁଆ, ଠକ, ଶୋଷକ । ତାର ଦୁର୍ଦ୍ଦଶା ଦେଖି ମୁଁ ଅତି ଦୁଃଖିତ; କିନ୍ତୁ ସେ ଦୁର୍ଦ୍ଦଶା ଖାଲି ତା ପେଟ-ପିଠିର ନୁହେଁ, ତାହୁଁ ବଳି ତା ମନର । ଏତେ ଦୁର୍ଦ୍ଦଶାରେ ପଡ଼ି ତଥାପି ତାଠି ଭଲ ଗୁଣ ଅଛି, କି ଉପାୟ କଲେ ଥିବା ଭଲ ଗୁଣତକ ନଷ୍ଟ ହେବ ନାହିଁ, ଅଥଚ ନ ଥିବା ଭଲ ଗୁଣ ଆମଦାନୀ ହେବ, ମନ୍ଦ ଗୁଣ ମନ୍ଦ ବୁଳି ଆସିବ ନାହିଁ, ସେହି ଉପାୟ ଦରକାର; କିନ୍ତୁ ଯେତେ ଭାବୁଛି ଖାଲି ଭାବୁଛି ହିଁ, ବାଟ ପଇଟୁ ନାହିଁ ।"

ପରଶୁରାମ କହିଲେ, "ମନର ସେ ସମସ୍ୟା ଖାଲି ଡଂଗ୍ରିଆ କନ୍ଧର ନୁହେଁ, ପୃଥିବୀଯାକର ସବୁ ମଣିଷଙ୍କ ସମସ୍ୟା, କାହାଠି ବେଶି, କାହାଠି କମ୍ । ସେ ସମସ୍ୟା ଦୂର ହୋଇପାରିଲେ ଯୁଦ୍ଧ, ହିଂସା, ମିଛ, ସ୍ୱାର୍ଥ, ଅଶାନ୍ତି, ଅମଙ୍ଗଳ ସବୁ ଦୂର ହୋଇ-

ଯାଆନ୍ତି । ତାର ବାଟ କାଢ଼ୁଛନ୍ତି ବହୁତ ଭାବିବା ଜାଣିବା ମଣିଷ, ହଜାର ହଜାର ବର୍ଷ ହେଲା କାଢ଼ିଆସୁଛନ୍ତି, ହେଉ ନାହିଁ; କିନ୍ତୁ ତା ବୋଲି କଣ କିଛି କରାହେବନାହିଁ ? ଏମିତି ନିରାଶ୍ରୟ ନିମୀଖା ହୋଇ ପାହାଡ଼ରେ ସେ ବିଚରା ପଡ଼ିଥିବ ! ଯାହା କମାଉ-ଥିବ, ତାକୁ ଭୂତ ଖାଉଥିବେ । ତାର ଆର୍ଥିକ ଉନ୍ନତି କରିବାକୁ ହିଁ ପଡ଼ିବ, ସେଇଆ କରୁ କରୁ କ୍ରମେ ତାର ମାନସିକ, ସାମାଜିକ ସବୁ ଉନ୍ନତି ହେବ । ସେଇ କାମକୁ ମନେ ମନେ ଚିନ୍ତା କରୁଛି, ସମସ୍ୟା ଏତେ ପ୍ରକାର ଯେ ସେଥିପାଇଁ ଧନ୍ଦି ହେଉଛି । ଦେଖନ୍ତୁ, ଭାବନ୍ତୁ ସମସ୍ତେ । କିଛି ଗୋଟାଏ କରିବାକୁ ହିଁ ହେବ । ନ ହେଲେ ଆମର ଭାଇ ଭଉଣୀ ଏମାନେ ଏବେ ବି ପଡ଼ିରହିଥିବେ ପଶୁ ପରି, ଏତେ ଦୁଃଖ ସହୁଥିବେ, ଦୁନିଆରେ କିଏ କଣ ହେଲେଣି ଆଉ ଏମାନେ ସତେ କି କେଉଁ ଶହ ଶହ ବର୍ଷ ତଳର ଅତୀତ ଯୁଗର । ୟାଙ୍କ ପାଇଁ କିଛି ନ କରି ଖାଲି ତାତ୍ତ୍ୱିକ ଆଲୋଚନା କରୁଥିଲେ ଆହୁରି ବିତିଯିବ ଶହ ଶହ ବର୍ଷ । ଏମାନେ ଏମିତି ଥିବେ, ନ ହେଲେ ହଠାତ୍ ଭୁଷ୍‌କରି ପଶିଆସିବ କେତେ କଣ ଉତ୍କଟ ପ୍ରଭାବ ଯେ ଏମାନେ ମାଟି କାମୁଡ଼ି ପଡ଼ି ରହିପାରିବେ ବି ନାହିଁ ।”

ମଧୁସୂଦନ କହିଲେ, “ବଡ଼ ଦୁଃଖ କାଳୁଣି ଅଞ୍ଚଳ ମୁଁ ଦେଖିଛି ।”

ହରି ପାଣି କହିଲେ, “ସେଥିରେ ଆଉ ସନ୍ଦେହ କଣ ! ଦୁଃଖ ବୋଲି ଦୁଃଖ ! କିଏ କଣ କରିବ ରାସ୍ତା ଆଦିର ସୁବିଧା ନ ହେବାଯାକେ ସେ ତାଙ୍କ ମନକୁ ଆମ ପାଖକୁ ଆସିବେ ନା ଏତେ ପାହାଡ଼ ଚଢ଼ି ଚଢ଼ି ୟାଙ୍କ ପାଖକୁ ଆମେ ସବୁବେଳେ ଯାଇ ପାରିବା ! ଯେ ଆସୁ ପଛେ, ସେ ତ ମଣିଷ ! ରୋଗ, ବାଧିକା, ବିପଦ, ଅସୁବିଧା ଅମାନୁଷିକ ପରିସ୍ଥିତି, ୟା ଭିତରେ ସେ କାମ କରିବ କଣ ! ଆଗ ଦରକାର କାମ କଲା ଭଳି ସୁବିଧା । ତା ନଥିବାଯାକେ ତୁଣ୍ଡରେ ସମସ୍ତେ ହୋଇ ହୋଇ କରିବେ, କାମ କଲାବେଳକୁ ଭିନ୍ନେ ରୂପ; କିନ୍ତୁ କିଛି ଗୋଟାଏ କରିବାକୁ ପଡ଼ିବ । ଆଜିକାଲି ଯୁଗରେ ଥୋଡ଼ାଏ ଲୋକ ସେ ଅବସ୍ଥାରେ ପଡ଼ିରହିଥିବା ସମଷ୍ଟିଙ୍କ ପକ୍ଷରେ ଗୋଟାଏ କଳଙ୍କ ।”

ସେମାନେ ମନ ଖୋଲି ମନକଥା କୁହାକୁହି ହୋଇଥିଲେ, କଥା କହୁ କହୁ ଆପଣାକୁ ଚିହ୍ନ କରୁଥିଲେ । ତା’ ପରେ ସେମାନେ ତୁନି ହୋଇଥିଲେ । ମନେ ମନେ ସେହି ସମସ୍ୟା ବିଷୟରେ ବହୁତ ଭାବୁଥିଲେ । ଆଉ ଯେତେବେଳେ ଭାବୁଥିଲେ ସେତେବେଳଯାକେ ବାଟ କଟିଯାଉଥିଲା, ଭୟ ଓ ଶରୀରର ଦୁଃଖ ବି ଭୁଲି ହେଉଥିଲା । ପରର ଦୁଃଖ-ସୁଖରେ ମନ ମଜାଇ ଦେଲେ ନିଜର ଦୁଶ୍ଚିନ୍ତା ଯେମିତି ପାସୋରି ହୁଏ ସେହିପରି । ପୁଣି ସେ ଭାବନା ଶିଥିଳ ମନେପଡ଼ୁଥିଲା—ପରିସ୍ଥିତି, ଭୀତ, କ୍ଳାନ୍ତ । କ୍ରମେ ସେହି ଚେତନା ତାଙ୍କ ଉପରେ ମାଡ଼ି ବସୁଥିଲା, ସମସ୍ୟା ବିଷୟରେ ମୁଣ୍ଡ

ଖେଳାଇବା ଆଡୁର ପଛକୁ ପଡ଼ିଯାଉଥିଲା ।

ଏତକବେଳେ ଠାଏ ନିବିଡ଼ ଜଙ୍ଗଲ ଭିତରେ ଆଗରେ ଦିଶିଲା ଗୋଟିଏ ଛାଇ । ସେ ହଲୁଥିଲା, ସ୍ଥିର ହେଲା । ପଛରେ ଦଳ ଅଟକିଲେ । ପରଶୁରାମ ଟର୍ଚ୍ଚ ଲାଇଟ୍ ପକାଇଲେ । ଦିଶିଲା, ଜଣେ ଲୋକ । ଫୁଙ୍ଗା ଦେହ, କୌପୁନି ପିନ୍ଧିଛି, କାନ୍ଧରେ ଟାଙ୍ଗିଆ, ବୟସ କୋଡ଼ିଏ କି ପଚିଶ ହେବ । ଡଂଗ୍ରିଆ କନ୍ଧ ।

"କିଏ ତୁମେ ?" ପରଶୁରାମ ଡାକିଲେ ।

"ଆଇଲୁ କି ବାବୁ ? ଯାଉଚ୍ଚ ?" ସେ କହିଲା, "ମୁଁ ଟେଡ଼୍‌ପା ।"

ଦଳକଯାକ ତା ପାଖକୁ ଆସିଲେ । ସେ ଆଗ ଅଳି କଲା, "ବିଡ଼ି ଖଣ୍ଡେ ଦେ ।" ମଧୁସୂଦନ ବିଡ଼ି ବାହାର କଲା, ପରଶୁରାମ ଦେଲେ ଡିଆସିଲି । ସେ ବିଡ଼ି ଲଗାଇଲା । ତା' ପରେ ଡିଆସିଲିଟି ମୁଠେଇଧରି କହିଲା, "ଏଇଟା ମୁଁ ନେଲି, ଆଉ ଦେବି ନାହିଁ ।"

"ଆରେ ଡିଆସିଲି ନେଲେ ଆମର ଅସୁବିଧା ହେବରେ !" ହରି ପାଣି କହିଲେ ।

"ସେ କଥା ମୁଁ ଶୁଣିବି ନାହିଁ । ବାପା-ମା'ଠୁଁ ନ ନେଲେ କାହାଠୁ ନେବି ?"

"ହଉ ନଉ ନଉ ।" ପରଶୁରାମ କହିଲେ, "ଭରତବାବୁଙ୍କ ପାଖରେ ଆଉ ଗୋଟାଏ ଥିବ ।"

"ଅଛି ।" ଭରତ କହିଲେ ।

ଟେଡ଼୍‌ପା ଖୁସି ହେଲା । କହିଲା, "ଆସୁଥିଲି ସେଇ ଯେଉଁଠି ଚଟାଣ ତଳେ ଜଳ-ପ୍ରପାତଟା ଅଛି, ସେଠି ଟିକିଏ ବସି ଧୂଆଁ ପିଇଲି । ସେଇଠୁ ଜାଣିଲି ତୁମେ ସବୁ ଆସୁଛ । ଅପେକ୍ଷା କଲି, ତୁମେ ଅଳସ କଲ । ବୁଝିଲି ତୁମେ ଚାଲିପାରୁନା । ବଣ ତ, ବାଟ ବି ଭୁଲି ଯାଇ ବଣା ହୋଇପାର ! ଏତେ ରାତିରେ ତୁମ ପରି ଲୋକ ଏ ବାଟେ କେବେ ତ ଦେଖା ନ ଥିଲା । ଅନୁମାନ ହେଲା ଏ ବଣକୁ ତୁମେ ଡରି ଡରି ଚାଲୁଚ । ଭାବିଲି ମୁଁ ଥିଲେ ତୁମର ଆଉ ଡର ନ ଥିବ । ତୁମେ ବାଟ ବି ବଣା ହେବ ନାହିଁ । ଆଗେ ଆଗେ ଧୀରେ ଧୀରେ ଚାଲୁଥିଲି । ହଉ ଆସ ।"

ହରି ପାଣି ପଚାରିଲେ, "ଏ ବଣରେ ବାଘ ଅଛି ଟେଡ଼୍‌ପା ?"

ଟେଡ଼୍‌ପା ହସିଲା, "କହିଲ ପଚାରୁନାହୁଁ, ପାଣିରେ ମୀନ ଅଛି ? ଆକାଶରେ ତାରା ଅଛି ? ବାଘ ତ ଥିବ, ଅଛି, ସେ ଯିବ କୁଆଡ଼େ ।"

"କାହାକୁ ଖାଇଥିଲା ?"

"ଖାଇଥିଲା ?" ଟେଡ଼୍‌ପା କହିଲା, "ତୋତେ ଭୋକ କଲେ ତୋ ଖାଦ୍ୟ ତୁ ଖାଇବୁ ନାହିଁ ? କେତେ ଲୋକକୁ ଖାଇଚ । ସେଇ ଯେଉଁଠି ଜଳପ୍ରପାତ ଅଛି, ସେଇଟା ତ

ତାର ବସା ।”

ଭରତ କହିଲେ, “ଆଉ ଏତେ ରାତିରେ ତୁ ଏକୁଟିଆ ଯାଉଚୁ ? ତତେ ଡର ମାଡ଼ୁନାହିଁ ?”

ଝଡ଼ୁପା କହିଲା, ‘‘ତୁ ଯେତେବେଳେ ରୋଟ୍ ବାଟେ ଗୁଲି ଗୁଲି ଯାଉଥାଉ, ତତେ ଡର ମାଡ଼େ ? ରୋଟ୍ ବାଟେ ଗୁଲୁ ଗୁଲୁ ମଟର ଗୁପାରେ ମଣିଷ ମରନ୍ତି କି ନାହିଁ ? ମୁଁ ଦେଖିଚି ତ ସେମିତିଆ । ସେଇଟା ତମ ରୋଟ୍, ଏଇଟା ଆମ ରୋଟ୍ । ମୋର କିଛି ଡର ନାହିଁ ।”

ପରଶୁରାମ କହିଲେ, “ତୁ ବାବୁ ଏ ରାତିଟାରେ ଏକୁଟିଆ ଏ ବଣରେ ଯାଉଚୁ କାହିଁକି ? ନ ଗଲେ ଚଳନ୍ତା ନାହିଁ ?’’

“କେମିତି ଚଳିବ ?’’ ଝଡ଼ୁପା ଆଶ୍ଚର୍ଯ୍ୟ ହେଲା ଯେ କେହି ଏପରି ଭାବି ମଧ୍ୟ ପାରେ ! ହସିଲା, କହିଲା. ‘‘ରାତିରେ ଫସଲ ଜଗିବାକୁ ତ ଡଂଗର ଚଢ଼େ, ରାତିରେ ଲୋଡ଼ା ପଡ଼ିଲେ ତ ବଣବାଟରେ ବାହାରେ, ଆଉ ଆଜି ଯେଉଁ ଲୋଡ଼ା ତା’ଠାରୁ ବଡ଼ କିଛି ଅଛି ? ତୁ କହ ?’’

“ଆରେ କାମଟା କଣ ?”

“କାମଟା ?” ପଲଟାଇ ପଚାରିବା ଯେପରିକି ତାର କଥା କହିବାର ଭଙ୍ଗୀ । ପଚାରି ଦେଇ ସେ ଟିକିଏ ଭାବିହେଲା, କହିଲା—

‘‘କାମ ତ କିଛି ନାହିଁ; ରାତିରେ କଣ ଜମିରେ କୋଡ଼୍ କି ପାରିବା, ନା ଗଛ ହାଣିବା, ନା ପଥର ଭାଙ୍ଗିବା ? କାମ ନାହିଁ—ତୁଚ୍ଛାଟା ।”

ମଧୁସୂଦନ ପଚାରିଲେ. ‘‘କହିଲୁ ପରା କଣ ଲୋଡ଼ା ଅଛି ?”

ଝଡ଼ୁପା ହୋ-ହୋ ହସିଲା, “ଲୋଡ଼ା । ହଁ ଧାଂଙ୍ଗ ବେଣ୍ଟ ବାବୁ ପେନୁବାଲ ଗାଁକୁ ଯାଉଚୁ ।” ମଧୁସୂଦନ ହସିଲେ । ବାହାରୁ ଆସିଥିବା ଲୋକେ ମୁହଁ ଚାହାଁଚାହିଁ ହେଲେ । ତାପରେ ମଧୁସୂଦନ କଥାଟା ବୁଝାଇ ଦେଲେ ଉତ୍ତାରୁ ସମସ୍ତେ ହସିଲେ । ତାର ସାରମର୍ମ ଏହିପରି—ଧାଂଙ୍ଗ ବେଣ୍ଟ ବୋଲନ୍ତେ କନିଆ ଶିକାର । ତାଙ୍କର ପ୍ରଥା ଅଛି ଯେ ଗୋଟିଏ ଗାଁର ଯୁବକମାନେ ଅନ୍ୟ ଗାଁର ଯୁବତୀମାନଙ୍କ ସଙ୍ଗେ ନାଚ କରିବାକୁ ତାଙ୍କ ଗାଁକୁ ଯାନ୍ତି । ସେମାନଙ୍କୁ ଅଭ୍ୟର୍ଥନା କରାଯାଏ, ଏକାଠି ଗୀତ ନାଚ ହୁଏ, ରାତିକ ରନ୍ଧି ପିଠାପଣା ଖାଇ ସକାଳକୁ ସେମାନେ ଲେଉଟି ଆସନ୍ତି । ଏଇ ନାଚ ଗୀତ ମିଳାମିଶା ଭିତରେ ଭବିଷ୍ୟତର ସ୍ୱାମୀ ସ୍ତ୍ରୀ ବଚ୍ଛାବଚ୍ଛି ହୁଏ, ଯୋନାଯୋନି ଲାଗେ, ତାର ପରିଣତି ଘଟେ ବାହାଘରରେ ।

“ଏତେ ହସୁଚ ବାବୁ ?’’ ଝଡ଼ୁପା ପରଶୁରାମଙ୍କୁ ପଚାରିଲା, ‘‘ଆଜି ସିନା ବୁଢ଼ା

ହେଲୁ, କେବେ ଧାଂଡ଼ା ହୋଇ ନ ଥିଲୁ କି ?"

"ଧାଂଡ଼ା ହେଇଥିଲି ସିନା, ଧାଂଡ଼ୀ ବେଣ୍ଟ କରି ନାହିଁ, ଆମ ଆଡ଼େ ଚଳେ ନାହିଁ ।"

ସେମାନେ ଠିଆ ହୋଇଥା'ନ୍ତି । ଉପରୁ ଓ ବାଁ କଡ଼ରୁ ଜହ୍ନ ଆଲୁଅ ଛୁଇଁକି ପଡ଼ୁଥାଏ । ଘରଆଡ଼େ ଓହଳିଥାଏ ନାନା ଆକାର ଓ ଆକୃତିର ଛାଇ । ତଳି ପାଣିରେ ଗଜ୍ ଗଜ୍ ଶୁଭୁଥାଏ ଯନ୍ତ୍ର-ସଙ୍ଗୀତରେ ଆଳାପର ପୂର୍ବାଭାସ ପରି ।

ଟଡ଼୍‌ପା ପରଶୁରାମଙ୍କ ମୁହଁକୁ ବଲବଲ କରି ଅନାଇଲା, ଟିକିଏ ରହି କହିଲା, "ଯେଉଁ ଦେଶରେ ଧାଂଡ଼ୀ ବେଣ୍ଟ ନାହିଁ, ସେ ଦେଶର ଲୋକେ ଜନ୍ତୁ କି ମଣିଷ ?"

ନୃତତ୍ତ୍ୱବିତ୍ ଭରତ ଚମକିପଡ଼ି ଆଗକୁ ମାଡ଼ିଗଲେ, କହିଲେ, "କାହିଁକି ?"

ଟଡ଼୍‌ପା କହିଲା, "ଦି ଜଣ କଥାବାର୍ତ୍ତା, ହସଖେଳ, ନାଚ ଗୀତ ହୋଇ ଚିହ୍ନା-ଜଣା ହୋଇ ମନ ମାନିଲେ ସିନା ଘର କରି ରହିବେ, ନଇଲେ କେମିତି ? ସେଥିପାଇଁ କହିଲି, ସେମାନେ ମଣିଷ ନୁହନ୍ତି, ଜନ୍ତୁ । ଚିହ୍ନା ହେବେ ନାହିଁ, ଶରଧା ହେବେ ନାହିଁ, ପୁଣି ଘର କରିବେ ! ହେଇ ସେ ତଳଦେଶର ଲୋକେ ଯେମିତି ।" ସେ ଅବଜ୍ଞାରେ ନାକ ଟେକିଲା । ତାର ନାକର ନୁଡ଼୍ ନୁଡ଼୍ ଫାଶିଆ ଦିନୋଟି ଜହ୍ନ ଆଲୁଅରେ ଚକ୍‌ଚକ୍ କଲା, "କହିଲି ଆମେ ସେମିତି ନୋହୁ, ଆମେ ଡଂଗ୍ରିଆ ।"

ମଧୁସୂଦନ କହିଲେ, "ଡଂଗ୍ରିଆ ଯେ ସ୍ୱେ ନିୟମଗିରିର ରାଜା ।"

ଟଡ଼୍‌ପା କହିଲା, "ସତେ ତ, ଜାଣିଛ ତ ସବୁ ।"

ଭରତ ପଚାରିଲେ, "ଆଚ୍ଛା ଏଇଟା କଣ ସତ ଯେ ତୁମର ଧାଂଡ଼ୀ ତୁମ କୋଡ଼ରେ ବସେ ନାହିଁ, ତୁମେ ଧାଂଡ଼ୀ କୋଡ଼ରେ ବସ ?"

ଟଡ଼୍‌ପାର ଆଗ୍ରହ ବଢ଼ିଲା । ମୁଣ୍ଡ ଝାଙ୍କି ଦେଇ ସେ କହିଲା, "ସତ—ସତ—ସତ । ଧାଂଡ଼ୀ କୋଡ଼ରେ ଆମେ ବସୁଁ ।" ସେ କହିଲା ନାହିଁ; ଲାଜ କଲା ନାହିଁ, ଖାଲି ତାର ଉତ୍ସାହ ବଢ଼ିଗଲା । କହିଲା, "ଦେ ବାବୁ, ଆଉ ବିଡ଼ିଖଣ୍ଡେ ।"

ଭରତ ତା ପାଟିରେ ସିଗାରେଟଟିଏ ଗୁଞ୍ଜିଦେଇ ଡିଆସିଲି ଲଗାଇ ଦେଲେ । ଏକାଦମ୍‌ରେ ପ୍ରାୟ ଅଧ ଇଞ୍ଚେ ସିଗାରେଟ ଜାଳି ଦେଇ ସେ ତାଙ୍କର ବେକ ଆପୁଡ଼େଇଲା, କାନ୍ଧ ଆପୁଡ଼େଇଲା । ପୁଣି ବାହାଦୂରୀ ଦେଖାଇଲା ପରି କହିଲା, "ହଁ; ଧାଂଡ଼ୀର କୋଡ଼ରେ ଆମେ ବସୁଁ । ତୁ ବସିନାହୁଁ କି ବାବୁ ?"

ଭରତ ସମସ୍ତଙ୍କୁ ହସ ରୋକିବାକୁ ସଙ୍କେତ ଦେଲେ । ତଥାପି ଗୁଡ଼ାଏ ହସ ମାଡ଼ି-ଗୁଡ଼ି ହୋଇ ଫାଟିଲା ପରି ଶବ୍ଦ ହେଲା ।

ହରି ପାଣି କହିଲେ, "ଆମେ ଜାଣୁ ମା' କୋଡ଼ରେ ପୁଅ ବସେ ।"

ଟଡ଼୍‌ପା ସିଗାରେଟଟାକୁ ଫୋପାଡ଼ି ଦେଲା, କହିଲା, "କିଛି କଡ଼ା ନାହିଁ । ବିଡ଼ି

ଥିଲେ ଦେ । ଏଁ, ମା କୋଡ଼ରେ ପୁଅ ବସେ । ଠିକ୍, ସେ ଧାଂଙ୍ଗୀଟା ମା' ନୁହେଁ କି ? କହ ତୁ ମା' ନା ମୁଁ ମା' ? ଆମେ ଯେ ପୁଅ । ଧାଂଙ୍ଗୀ ଯେ ମା' । ଆମେ ପିଲ ଥିଲବେଳେ ମା' କୋଡ଼ରେ ବସିବା । ବଡ଼ ହେଲେ, ଧାଂଙ୍ଗୀ ହେଲେ, ଯୋଉ ଧାଂଙ୍ଗୀ ଆମୁକୁ ଗ୍ରାଜ ହେବ ତା କୋଡ଼ରେ ବସିବା ।"

ହରି ପାଣି କହିଲେ, "ଆଉ ବୁଢ଼ା ହେଲେ କାହା କୋଡ଼ରେ ବସିବ ?"

ଟେଡ଼୍‌ପା କହିଲ, "ଅତି ବୁଢ଼ା ହୋଇ ଯେତେବେଳେ ପଡ଼ିଯିବ, ସେତେ-ବେଳେ ଆଉ ଗୋଟିଏ ମା' କୋଡ଼ରେ ଶୋଇବ । ସେ ମା' କିଏ ତୁ ଜାଣି ନାହୁଁ କି ?"

ହରି ପାଣି କହିଲେ, "କିଏ ?"

ଟେଡ଼୍‌ପା କହିଲ, "କିଏ ? ଏଇ ବସୁମତୀ, ଏଇ ଧରିତ୍ରୀ, ସେ ତ ସମସ୍ତଙ୍କର ମା, ଆଉ କିଏ ? ସେଇ ମା'ଟା ଜନମକଲା ମା' ଭିତରେ ଅଛୁ, ଧାଂଙ୍ଗୀ ଭିତରେ ଅଛୁ, ସବୁ ଗୋଟାଏ ।"

ଭରତ ପରଶୁରାମକୁ କହିଲେ, "ଏତେ କଥା ?"

ପରଶୁରାମ କହିଲେ, "ଆଶ୍ଚର୍ଯ୍ୟ !"

ସେମାନେ ବାଟ ଧରିଲେ ।

ପରଶୁରାମ ଟେଡ଼୍‌ପାକୁ କହିଲେ, "ତା ହେଲେ, ସେଇଥି ପାଇଁ ତୁ ଯାଉଚୁ ଧାଂଙ୍ଗୀଙ୍କ ସଙ୍ଗରେ ନାଚ ଗୀତ ଶିଖିଏ ପାଇଁ, ପାଞ୍ଚ ଛଅ କୋଶ ପାହାଡ଼ ଓହ୍ଲେଇ ଆସିଲୁଣି, ଆହୁରି ଓହ୍ଲେଇବୁ ତିନିଚାରି କୋଶ । ତୋ ଲୋଡ଼ା ଖୁବ୍ ଜବର ।"

ଟେଡ଼୍‌ପା ହସିଲ, କହିଲ, "ଗଲ ବୁଧବାର ହାଟରେ କଥା ଦେଇଥିଲି ଯିବି ବୋଲି, କଥା କେମିତି ଭାଙ୍ଗିବି ?"

ପଡ଼ିଲ ତୀକ୍ଷ୍ଣ ଗଡ଼ାଣି, ଅନ୍ଧାର ବଲ୍‌ବଲ୍ ବଣ । ଟେଡ଼୍‌ପା ଆଗେ ଆଗେ ଚାଲିଲା, କହିଲ, "ଡର ନାହିଁ, କିଛି ଭୟ ନାହିଁ, ମୋ ପଛେ ପଛେ ଆସ ।"

ପରଶୁରାମ କହିଲେ, "ଆରେ ରହ, ମୁଁ ଆଗରେ ଯାଏଁ, ଟର୍ଚ୍ଚ ଲାଇଟ୍ ପକାଏ ।"

ଟେଡ଼୍‌ପା କହିଲ, "ମୋର ଦରକାର ନାହିଁ । ଭେଣ୍ଡିଆ ଲୋକ, ମୋ ଆଖିକି ବାଟ ଦିଶୁଛି ।"

ଯେତେ ବୁଝାଇଲେ ସେ ମାନିଲ ନାହିଁ, ଏକା ଜିଦ, ସେ ଆଗେ ଆଗେ ଯିବ । କହିଲ, "ସେ ବଣ, ସେ ପାହାଡ଼ ଯେ ଆମର ଘର, ତୁମେ ଯେ ଆମର କୁଣିଆଁ । ମୁଁ ତୁମକୁ ବାଟ କଢ଼ାଇ ନେବି, ନା ତୁମେ ମତେ ବାଟ ଦେଖାଇବ ? ଆମ ଗାଁ ବଡ଼ଲୋକେ ଶୁଣିଲେ କଣ କହିବେ ? ଡାକ୍ତର ମଣ୍ଡଳ, ଲମ୍ବୁ, ବଣି ମାଝି ଶୁଣିଲେ

ଭଣ ଜାଣିବେ ? କହିବେ ଟେଡ଼୍‌ପା, ତୁ ଥିଲୁ, ଆଉ ଆମର ନାଁ ବୁଡ଼େଇଲୁ ?"

ଭରତ କହିଲେ, "ଆରେ ଜନ୍ତୁ ଥିବେ ରେ—"

"ବଣର ଜନ୍ତୁ ଆମର ଭାଇ ପୁଅ, ଆସିଲେ ଆସୁ । ତୁମର କିଛି ଡର ନାହିଁ ।"

ସେମାନେ ତଳକୁ ତଳକୁ ଓହ୍ଲାଇଗଲେ । ଆସିଲା ଶକଟା ନଈ ପଶା । ଓପାର ନଈ, ଫରଚ୍ଛ ବାଲି, ତଳକୁ ଓହ୍ଲାଇ ପଡ଼ ନଈ ପାହାଡ଼ ତଳେ ତଳେ ଯାଇଛି । ଟେଡ଼୍‌ପା ନଈରେ ପଶିବା ବାଟ ଦେଖାଇଲା । କହିଲା, "ସେଠି ନୁହେଁ ଏ ବାଟେ । ମୋ ପଛେ ପଛେ ଆସ, ସେଠି ବେଶି ପାଣି ।"

ପାଣି କାକର । ଆଣ୍ଠୁ ଏ ମୋଟେ ।

ଆର ପାଖେ ବଣ ପାତଳ, ଖୋଲା । ଟେଡ଼୍‌ପା କହିଲା, "ଏଥର ମୁଁ ବିଦା ହେବି । ତୁମର ଆଉ ଡର ନାହିଁ । ଆଉ ଟିକିଏ ଗଲେ ପଦାଟା । ସେଇଠି ମୋ ବାଟ ଡାହାଣକୁ, ତୁମ ବାଟ ବାଁକୁ । ମୁଁ ଯାଇ ଯାଇ ଚଢ଼ିବି ପାହାଡ଼, ଦ' କୋଶ ଚଢ଼ିଲେ ପେଲୁବାଲି । ତୁମର ଯେ ସିଧା ବାଟ । ବଣ ନାହିଁ, କ୍ଷେତ ପଦା, ସେଇଠୁ ଗାଁ, ସେଇଠୁ ରୋଡ୍‌କୁ ବାଟ । ହଉ, ମୁଁ ଯାଏ ।"

ସେମାନେ ଠିଆ ହେଲେ । ପରଶୁରାମ ବିନୀତ ହୋଇ ତାକୁ କହିଲେ, "ତତେ ଧନ୍ୟବାଦ ।" ଭରତ କହିଲେ, "ତୁ ଆମର କେଡ଼େ ଉପକାର କଲୁ ।" ସେମାନେ ଯେତେବେଳେ ତା ପ୍ରତି ସମ୍ମାନ ଓ କୃତଜ୍ଞତା ଜଣାଉଥାନ୍ତି, ସେ ହଠାତ୍ ପରଶୁରାମଙ୍କ ଆଗରେ ଠିଆ ହୋଇ କହିଲା, "ଦେଲୁ ପୁ'କାଏ, କଣ କିଣି ଖାଇବି ।"

ପରଶୁରାମ ଓ ଭରତ ହସିଲେ ।

ସେ ଅଳି କଲା, "ଦେ ଦେ, ମା' ବାପାଙ୍କଠୁଁ ନ ନେଲେ କାହାଠୁଁ ନେବି ? ଆଣ୍ ଦେ, କଣ କିଣି ଖାଇବି ।"

ପରଶୁରାମ ପକେଟରୁ ଦଟା ଦଶ ନୂଆ ପଇସି ବାହାର କଲେ । ଭରତଙ୍କ ପକେଟରୁ ବାହାରିଲା ଆଉ ଗୋଟାଏ । ଟେଡ଼୍‌ପା ହାତରେ ତାକୁ ଦଆଗଲା । ସେ ଜଣ ଜଣ କରି ପ୍ରତ୍ୟେକଙ୍କ ପାଖକୁ ଆସିଲା ଓ କହିଲା "ଯାଉଛୁ ଯାଉଛୁ ?" ପରଶୁରାମଙ୍କୁ କହିଲା, "ଯାଉଚି ବାପ-ମା ?" ତା ପରେ ଭୁଷ୍ ଭୁଷ୍ ହୋଇ ଆଗେ ଆଗେ ଗ୍ଲଲଗଲା । ଟିକିଏ ଦୂରରୁ ଶୁଭିଲା ତା ଗୀତ ।

ସେମାନେ ଆଗକୁ ଗ୍ଲଲେ । ତରତର ପାହୁଣ୍ଡ ପକାଇ ସେ କୁଆଡ଼େ ଅନ୍ତର୍ହିତ ହୋଇଯାଇଛି ।

ଖଣ୍ଡେ ଦୂରରେ ବାଟକରରେ କଣ ତଳେ ଜକ୍ ଜକ୍ ଦିଶିଲା । ଭରତ ନାଇଁପଡ଼ିଲେ । ଧୂଳି ଉପରେ ଗୋଟିଏ ଦଶ ନୂଆପଇସା ପଡ଼ିଛି । ସେହି କଡ଼ରେ

ସେହିପରି ଆଉ ଗୋଟିଏ । ସେମାନେ ଅଟକିଲେ । ସମସ୍ତେ କହିଲେ ଟଙ୍କ୍‌ପାର ମୁଠାରୁ ସେ ପଇସା ଖସିପଡ଼ିଛି ।

"ପଇସାକୁ ଲୋଭ ନାହିଁ, ଆଉ ସେ ଏତେ ଅଳି କରି ମାଗୁଥିଲା କାହିଁକି ?" ଭରତ ପଚାରିଲେ ।

ବୁଢ଼ା ମଧୁସୂଦନ ତାର ଉତ୍ତର ଦେଲେ, କହିଲେ, "ସେଇଟା ତାର ମର୍ଯ୍ୟାଦା ଆଜ୍ଞା ! ମା' ବାପ ବୋଲି ମାଗି ସେ ହଜୁରଙ୍କୁ ମର୍ଯ୍ୟାଦା କଲା । ଡଂଗ୍ରିଆ ତ ସେମିତିଆ । ଏତେ ଭୁଙ୍ଗେ ଆଇ ପିଲାଟାପରି । ଯେତେବେଳେ ଯୋ'ଟା ଲୋଡ଼ା ସେ'ଟା ଲୋଡ଼ା, ମିଳିଗଲେ ଗଲା । ପଇସା ତା ଆଖିରେ ଗୋଡ଼ିମାଟି ।"

ସେମାନେ ପଛକୁ ଅନାଇଁ ଠିଆ ହେଲେ । କୁହୁଡ଼ିଆ ଜହ୍ନରାତିରେ ଘୋଡ଼ି ହୋଇ ନିୟମଗିରି ଶୋଇ ରହିଛି, ଲାଗୁଛି ଯେମିତି ସେ ସତ ନୁହେଁ, ସ୍ୱପ୍ନଟିଏ ।

ପୁଣି ବାଟଚାଲି । ପରଶୁରାମ କହିଲେ, "ପଡ଼ୁ ଏଥର ଆଲୋଚନା । ଡଂଗ୍ରିଆ କନ୍ଧର ଉନ୍ନୟନ କି ଉପାୟରେ ହେବ ।"

ଆଲୋଚନା ଚାଲିଲା ।

# କାଠ-ଘୋଡ଼ା

## ସୁରେନ୍ଦ୍ର ମହାନ୍ତି

ଶୈଶବର ଗନ୍ଧ ଅଛି ? ତାହାହେଲେ ତାହା ହେଉଛି ଗୋବରଲିପା ମାଟିପିଣ୍ଡା ଆଉ ମଧୁମାଳତୀ ଫୁଲର ମିଶାମିଶି ଗୋଟାଏ ବାସନା ।

ବେଦନାର ଭାଷା ଅଛି ?··ତା' ହେଲେ ନିଛୁଟିଆ ଖରାବେଳ, ଦୂର ପ୍ରାନ୍ତରର ଆଡ଼ୁ କାହାର ବଂଶୀରେ ନାଗେଶ୍ୱରୀ ଆଳାପ !

ସ୍ମୃତିର ରଙ୍ଗ ଅଛି ?···ତା' ହେଲେ ତାହା ଦୂର ପର୍ବତର ନୀଳିମା !

ଅଶ୍ରୁର ରୂପ ଅଛି ?···ତା' ହେଲେ ତାହା ରାତି ଶେଷର ପୋଡ଼ା ଜହ୍ନ !

ଏହିପରି ବିଭିନ୍ନ ରୂପାଶ୍ରିତ ବସ୍ତୁର ଦ୍ରବ୍ୟଗୁଣ ନିର୍ଣ୍ଣୟ କରି, ସେ ସବୁ ଗୋଟିଏ ଅଭିଧାନରେ ଲିପିବଦ୍ଧ କରିବା ଏବେ ବିଜନବିହାରୀଙ୍କ "ହବି" ବା ଜୀବିକା-ବହିର୍ଭୂତ ପେଶା । ଏଥିରେ ଦୀର୍ଘ ପଞ୍ଚାବନ ବର୍ଷ ବିତାଇବା ପରେ ବାର୍ଦ୍ଧକ୍ୟର ଲମ୍ବା ହେମାଳିଆ ଛାଇ ତାଙ୍କ ଜୀବନର ଧୂସର ପ୍ରାନ୍ତର ଉପରେ କ୍ରମେ ଲମ୍ବି ଲମ୍ବି ଆସିଥିଲା ।

ବିଜନବିହାରୀ ସୁଦୂର କର୍ମକ୍ଷେତ୍ରରୁ ଅବସର ନେଇ, ବହୁ ବର୍ଷର ଅନୁପସ୍ଥିତି ପରେ ଆଦ୍ୟ ଯୌବନର ସେହି ଛୋଟ ସହରଟିକୁ ପୁଣି ଫେରିଆସିଥିଲେ ।

ଏହି ସହରରେ ଦିନେ ଆରମ୍ଭ ହୋଇଥିଲା···ତାଙ୍କ ଜୀବନରେ ଏ ସବୁ ଉତ୍ପୀଡ଼କ ଅନୁଶୀଳନ ଓ ଗବେଷଣା ମନ୍ଦିର, ଗୀର୍ଜା, ଟି' ରେସ୍ତୁରାଁଠାରୁ ଆରମ୍ଭ କରି ବେଶ୍ୟାବସ୍ତି ଓ ସେତେବେଳେ ଲୁଚିଛପି ରହିଥିବା ଗୋଟିଏ ଦୁଇଟି ବିଲାତି ମଦ ଦୋକାନର 'ବାର୍' ପ୍ରଭୃତି ନାନା ସ୍ଥାନ ଓ ଅସ୍ଥାନରେ ।

ତା'ପରେ ଚରିତ୍ରହୀନତା ଅପରାଧରେ କଲେଜରୁ ରଷ୍ଟିକେସନ, ସେହି ଘଟଣାକୁ କେନ୍ଦ୍ର କରି ସେଦିନର ଏହି ନମ୍ର, ମଧ୍ୟବିତ୍ତ ସହରର ଶିଷ୍ଟ ଓ ବିଶିଷ୍ଟ ସମାଜରେ ବିଜନବିହାରୀଙ୍କ ପ୍ରତି ଯେତେକ ନିନ୍ଦା ଓ ଧିକ୍କାରର ଝଡ଼ଠାରୁ ଆରମ୍ଭ କରି କଲେଜ ମାସୋହାରା ବନ୍ଦ ଓ ଅବଶେଷରେ ବିତାଡ଼ନ ପର୍ଯ୍ୟନ୍ତ ନାନା ଘଟଣା ଦୁର୍ଘଟଣା ।

ଏହାପରେ ଉତ୍ତର-ଭାରତର ନାନା ସହରରେ ନାନା ଫୁଟ୍‌ପାଥରେ ବୁଲି ବୁଲି, ଜୀବନ-ସଂଗ୍ରାମର ନାନା ଶିକ୍ଷାୟତନରେ ଶିକ୍ଷା ଲାଭ କରି କରି, ବିଜନବିହାରୀ

ମଣିଷ ହୋଇଛନ୍ତି ଅଥବା ହୋଇଥିଲେ ।

କିନ୍ତୁ ସବୁଠି ସେଇ ଅନୁସନ୍ଧାନ ଓ ସେଇ ଜିଜ୍ଞାସା ।

ପ୍ରଥମ ଚୁମ୍ବନର ରୂପ କିପରି ?···ବିଦ୍ୟୁତ୍‌ରେଖା ପରି ଅଙ୍କା ବଙ୍କା ? ମୃତ୍ୟୁର ବର୍ଣ୍ଣ କିଣ ? ନୀଳ ନାଁ ଘନକୃଷ୍ଣ ? ହେଉ, ମୋଟେ ସେଦିନ ତ ସେ, ଉତ୍ତର-ଭାରତର ସେହି ଦୂର ସହରରେ କର୍ମକ୍ଷେତ୍ରରୁ ବିଦାୟ ନେଇ, ଟ୍ରେନ୍‌ରେ ଚଢ଼ିବାବେଳେ ଯାଇଁ ଜାଣିଲେ, ବିଦାୟର ଯଦି ଧ୍ୱନି ଥାଏ, ତା ହେଲେ ତା ଟ୍ରେନ୍‌ର ହୁଇସିଲ୍ !

ଦୀର୍ଘ ପଚିଶ ବର୍ଷର କର୍ମକ୍ଷେତ୍ରରୁ ବିଦାୟ ନେଇ ଆସିବାବେଳେ, ସେଦିନ ଷ୍ଟେସନକୁ ଆସିଥିଲା, କେବଳ ତାଙ୍କର ଏକାଧାରରେ ଖାନ୍‌ସମା, ବବୁର୍ଚ୍ଚୀ, ବେହେରା ଓ ବନ୍ଧୁ ଜନ···କେରଳୀ ଖ୍ରୀଷ୍ଟିୟାନ···ଖଣ୍ଡେ ମଇଳା ରୁମାଲ ସେ ପ୍ରାଣପଣ ହଲାଉଥିଲି ସିଗ୍‌ନାଲ୍ ପୋଷ୍ଟ ବାହାରେ ଟ୍ରେନଟା ଅଦୃଶ୍ୟ ହେବା ପର୍ଯ୍ୟନ୍ତ ।

ବିଦାୟର ରୂପ କିଣ ?

ଲେସ୍‌କୋସ୍ ଖଣ୍ଡେ ମଇଳା ରୁମାଲ !

ଏଇ ସହରକୁ ଫେରିଆସି କିନ୍ତୁ ବିଜନବିହାରୀଙ୍କର ମନେହେଲା, ଏ ଯେପରି ଅନ୍ୟ ଏକ ସହର···ଏକଦା ସେହି ବହୁ ପରିଚିତ ସହର ନୁହେଁ, ଯାହାର ପଥେ ପଥେ ସେଦିନ ଆରମ୍ଭ ହୋଇଥିଲା, ବିଜନବିହାରୀଙ୍କ ଜୀବନ ଅନ୍ୱେଷଣ ।

ଏ ଅନ୍ୟ ଏକ ଅଜଣା ସହର । ଷ୍ଟେସନରେ ଓହ୍ଲାଇବା ମାତ୍ରେ, ବିଜନବିହାରୀ ତାହା ସ୍ପଷ୍ଟ ଅନୁଭବ କରିପାରିଥିଲେ । କାହିଁ ସେ ସବୁ କଙ୍କାଳସାର, ଘୋଡ଼ାଟଣା ବଗିଗାଡ଼ି; ଯାହାର କଚୁଆନ୍‌ମାନଙ୍କର ମଧ୍ୟଯୁଗୀୟ କୁର୍ଣ୍ଣିସ୍‌ରେ ଲାଗିରହିଥିଲା, ମ୍ୟୁଜିଅମ୍-ଲାଇବ୍ରେରୀର ପୁରୁଣା ବହିମାନଙ୍କର ଜୀର୍ଣ୍ଣଦଷ୍ଟ ହଳଦିଆ ପୃଷ୍ଠାର ବାସନା, ଅଥବା ଦରବାରୀ କାନଡ଼ାର ସ୍ପର୍ଶ !

ମିଟର ଲଗା ଟ୍ୟାକ୍‌ସୀ ଡ୍ରାଇଭରମାନଙ୍କଠାରେ କିନ୍ତୁ କୁର୍ଣ୍ଣିସ କରିବାର ସୌଜନ୍ୟ ନ ଥିଲା । ସେମାନଙ୍କ ଆଚରଣରେ ନିତାନ୍ତ ବ୍ୟବହାରବାଦୀ ରୁକ୍ଷତା । ଟ୍ୟାକ୍‌ସୀ ଚଳାଉଛନ୍ତି ସେମାନେ, ଟ୍ୟାକ୍‌ସୀରେ ବସୁଥିବା ଆରୋହୀମାନଙ୍କ ପରି ଜୀବିକାର୍ଜ୍ଜନ ତାଡ଼ନାରେ; କିନ୍ତୁ ସେ ଦିନର ସେଇ କଚୁଆନମାନଙ୍କ ପରି ଜୀବନଚର୍ଯ୍ୟାର ବିଳାସରେ ନୁହେଁ । ଜୀବନ ଓ ଜୀବିକା ମଧ୍ୟରେ ସେ ମଧ୍ୟଯୁଗୀୟ ଅଦ୍ୱୟତା ବିଦାୟ ନେବା ସଙ୍ଗେ ସଙ୍ଗେ, ବଞ୍ଚିବାରୁ ମଧ୍ୟ ବିଦାୟ ନେଇଥିଲି ଶାନ୍ତି ଓ ସୌନ୍ଦର୍ଯ୍ୟ ।

ଏ ଅନ୍ୟ ଏକ ଅଜଣା ସହର ।

ଏଠି ଥିଲି ନା ହର୍ଷବର୍ଦ୍ଧନ ମେସ୍ !

କିନ୍ତୁ ଡିପାର୍ଟମେଣ୍ଟାଲ୍ ଷ୍ଟୋରର କାଉଣ୍ଟରରେ ଠିଆ ହୋଇଥିବା, ଏକ ରକ୍ତ-

ଜବାଧସ୍ତ, ହ୍ରସ୍ୱକେଶୀ ସେଲସ୍ ଗାର୍ଲ ଜଣକ କେବେ କଣ ଜାଣିପାରିବେ । ଏଠି ଥିଲା ଦିନେ ହର୍ଷବର୍ଦ୍ଧନ ମେସ୍, ଯାହାର ମାନେଜର ଥିଲେ ବାବୁ ଗୋବର୍ଦ୍ଧନ ଦାସ, ଏକ ସରକାରୀ ଅଫିସରେ ବଡ଼ବାବୁ । ଅଫିସ ଆଉ ମେସ ହିସାବ, ତା ପରେ ଯେତିକି ସମୟ ମିଳେ, ସେଥିରେ ମେସ୍‌ର ଅନ୍ତେବାସୀମାନଙ୍କୁ ମେସ୍ ବାକିର ତାଗିଦା । ତା'ରି ଭିତରେ ପୁଣି ପୂଜାପାଠ । ନିର୍ଦ୍ୱନ୍ଦ୍ୱ ନିର୍ଝଞ୍ଜାଳ ଜୀବନ ।

"ଓଃ ଆପଣ ଶାଢ଼ିର ଭେରାଇଟି ଚାହାନ୍ତି ? ସେ କାଉଣ୍ଟରକୁ ଯାନ୍ତୁ । ବେଶ ୱାଇଡ଼୍-ରେଞ୍ଜ୍ ପାଇବେ ।"

"କସ୍‌ମେଟିକ୍‌ସ୍ ! ଏ କାଉଣ୍ଟରରେ ନୁହେଁ ।"

ଏଇଠି ସେଦିନ ଥିଲା ରୁମ୍ ନମ୍ବର ତିନି, ଗୋବର୍ଦ୍ଧନବାବୁଙ୍କ ଆସ୍ତାନା । କବାଟରେ ଚକ୍‌ଖଡ଼ିରେ ଲେଖା "ନୋ ଆଡ୍‌ମିସନ୍ ଫର୍ ପବ୍‌ଲିକ୍—" ଶାନ୍ତି ସଦନ । ଘର ଭିତରେ ଗୋଟିଏ ଅନ୍ଧାର କୋଣରେ ଖଣ୍ଡେ ମିରିଗଛାଲ, କମଣ୍ଡଳୁ, ଆଶାବାଡ଼ି ଆଉ ଧୂପାଧ ପ୍ରଭୃତି ନାନା ଆଧ୍ୟାତ୍ମିକ ସରଞ୍ଜାମ । ତା ପାଖରେ ଛୋଟ ତକ୍ତା ଖଣ୍ଡେ ଖଟୁଲି ଉପରେ ସରକାରୀ ଅଫିସର ଫାଇଲ୍, ଆଉ ମେସ୍ ହିସାବ ।

ମେସ୍ ଆଉ ନିଳୁ ସାହୁଙ୍କ ଆଦର୍ଶ ମିଷ୍ଟାନ୍ନ ଭଣ୍ଡାର ପ୍ରାୟ ଲାଗି ଲାଗି ଥିଲା ତ, ଆଉ କଣ ! ଦୋକାନ ଆଗରେ ଝୁଲୁଥିଲା, 'ଆଜି ନଗଦ କାଲି ବାକି'ର ଉଦ୍‌ଘୋଷଣା; କିନ୍ତୁ ସବୁ ଉଦ୍‌ଘୋଷଣା ପରି ଏ ଉଦ୍‌ଘୋଷଣାଟି ମଧ୍ୟ ପରିପାଳିତ ହେଉଥିଲା, ଅନୁଶୀଳନରେ ଯେତେ ନୁହେଁ, ଯେତେ ତାହାର ବ୍ୟତିକ୍ରମରେ; ମାତ୍ର ସେ ତ କେବଳ ଆମରି ପରି କେତେକ ଭକ୍ତଙ୍କ ପାଇଁ ସିନା !

କଲାଟ୍‌ରୁ ଆଉ ଅଲଣ୍ଡୁରେ ଆଲିବାବାର ଗହ୍ୱର ପରି ନିଳୁ ସାହୁଙ୍କ ଆଦର୍ଶ ମିଷ୍ଟାନ୍ନ ଭଣ୍ଡାରର ଅଭ୍ୟନ୍ତର···କାନ୍ଥଯାକ, ନାଗୁଆ ଗରାଖଙ୍କ ବାକି ହିସାବ; ଖଡ଼ିରେ ଲେଖି ପୁଣି ସେ ସବୁ ଲିଭାଇବାର ମୋଜାଇକ୍ ।

ଥରେ ଘଟଣା-ଚକ୍ରରେ ପଡ଼ି ସେକ୍ସପିୟରଙ୍କ କମ୍ପ୍ଲିଟ ୱାର୍କସ ବନ୍ଧା ରଖିବା ପାଇଁ ପଡ଼ିଥିଲା ସେଠି । ଟ୍ରାଜେଡ଼ିର ଅଧ୍ୟାପକ, କଲେଜରେ ସେକ୍ସପିୟରଙ୍କ ମହାନାଟକ-ଗୁଡ଼ିକୁ ଯେପରି ତିକ୍ତ ଓ ବିସ୍ୱାଦ କରି ଦେଇଥିଲେ, ନିଳୁ ସାହୁଙ୍କ ଆଦର୍ଶ ମିଷ୍ଟାନ୍ନ ଭଣ୍ଡାରରେ, ଜିଦାଜିଦିରେ ପୁରା ଦୁଇ ସେର ରସଗୋଲା ଉଡ଼ାଇ ଅବଶେଷରେ ମୂଲ୍ୟ ବାବଦକୁ ଗ୍ରନ୍ଥଟିକୁ ବନ୍ଧା ରଖିବା ପାଇଁ ପଡ଼ିଥିଲା ସେଦିନ । ନିଳୁ ସାହୁଙ୍କ କାନ୍ଥରେ ବିଜନବିହାରୀଙ୍କ ନାମରେ ଖଡ଼ିଲେଖା ବାକି ହିସାବ; କାନ୍ଥରୁ ଖସି ଖସି ସେତେବେଳକୁ ଚଟାଣ ପର୍ଯ୍ୟନ୍ତ ଓହ୍ଲାଇ ଆସିଥିଲା । ତେଣୁ ନିଳୁ ସାହୁଙ୍କ ସେ ବନ୍ଧନରୁ ସେକ୍ସପିୟର ଶେଷ ପର୍ଯ୍ୟନ୍ତ ବୋଧହୁଏ ଆଉ ମୁକୁଳି ନ ଥିଲେ; କିନ୍ତୁ ଏବେ ସେଠାରେ ଶୀତତାପ-

ଜଯ୍ନନ୍ତିତ ଗୋଟିଏ ସିନେମା ପାଲେସ୍ । ମାଟିମାରେ ଆମେରିକାନ୍ ଛବି । ଲଙ୍ଗୁଳି ଅଭିନେତ୍ରୀଟି ଅଣ୍ଟା ତଳେ ଖଣ୍ଡେ କୌପୀନର ଆବ୍ରୁ ସୁଦ୍ଧା ରଖିନାହିଁ ।

ତଥରେ ଅଭିନେତ୍ରୀର ରଙ୍ଗ ଘନକୃଷ୍ଣ ହୋଇଥିଲେ ବଜନବହାଦ୍ଧ ଦୁଇହାତ କପାଳରେ ଯୋଡ଼ି ପ୍ରାର୍ଥନା କରିଥାନ୍ତେ, "ହେ ହୁଲ୍ଲଙ୍ଗିମା, ମହାଭୟଙ୍କରୀ, ଆମକୁ ଟିକଏ ଲଜ୍ଜାଦିଅ । ସବୁ ଗ୍ରାସ କର ଆମର ଲଜ୍ଜାକୁ ଛାଡ଼ ।"

ଛବିର ନାମ 'ଦ ନାଇଟ୍ ଇଜ୍ ଡାର୍କ'—ରାତି ଅନ୍ଧକାର । ଫର୍ ଆଡ଼ଲ୍ଟ୍ସ ଓନ୍ଲି । ଦୁଇଜଣ ପଳିତ-କେଶ ବୃଦ୍ଧ ପ୍ରାଚୀରପତ୍ରର ସେହି ଛବି ଆଡ଼େ ଚାହିଁ ଦେଖୁଥିଲେ । ଚପା ପାଇଜାମା ପିନ୍ଧି କେତେଜଣ ବାଳକ ବାଳିକା ଆଇସ୍କ୍ରିମ ଚୁଷି ଚୁଷି ସେହି ବାଣ୍ଟପନକୁ ଯେତେ ଚାହିଁ ଦେଖିଲେ ସୁଦ୍ଧା ତଥାପି ଯେପରି ସେମାନଙ୍କର କ୍ଲାନ୍ତି ଆସୁ ନ ଥିଲା ।

ଏ ଯୁଗ ନପୁଂସକ କ୍ଳୀବତ୍ୱର ଯୁଗ ।

ସେଥିପାଇଁ ଯୌନଚର୍ଯାର ଏସବୁ ଉତ୍କଟ ଉତ୍ତେଜକ ବାଣ୍ଟପନ ନ ଦେଖିଲେ, ସୃଷ୍ଟି-କ୍ରିୟା ବୋଧହୁଏ ଅଚଳ ହୋଇପଡ଼ନ୍ତା ।

ସ୍ୱାଧୀନତାର ପରବର୍ତ୍ତିକାଳୀନ ପଞ୍ଚବାର୍ଷିକ ଯୋଜନାରେ ଲାଳିତ ଓ ପରିବର୍ଦ୍ଧିତ ବଣିକଜନଜନ ପରି ବହୁସ୍ଫୀତ ଏ ଅନ୍ୟ ଏକ ସହର । ବଜନବହାଦ୍ଧ ଏଠାରେ ସମ୍ପୂର୍ଣ୍ଣ ଅଜଣା ଆଗନ୍ତୁକ ।

କାହିଁ ରାସ୍ତାକଡ଼ର ସେଇସବୁ ଭୂତଆମ୍ବ ଆଉ ଗଉଡ଼ଗୋବନ୍ଦ ଫୁଲର ଜଙ୍ଗଲ ? କାହିଁ ସେ ସବୁ ବାଉଁଶଝାଡ଼, ଯେଉଁଠି ବଜନବହାଦ୍ଧ ପ୍ରତି ମଧ୍ୟାହ୍ନରେ ଶୁଣୁଥିଲେ କପୋତର ଘୁମୁରି, କୁମ୍ଭାଟୁଆର ବିଳାପ; ସେଠି ସବୁ ଏବେ ଆକାଶକୁ ମୁଣ୍ଡ ଟେକି ଠିଆହେଲଣି ପାଞ୍ଚ ମହଲା, ସାତ ମହଲା ଇମାରତମାନଙ୍କର କ୍ଷୁଧିତ ଲୌହ କଙ୍କାଳ, ପ୍ରାଗୈତିହାସିକ ରକ୍ତମୁଖା ଦେବତାମାନଙ୍କ ପରି । ସେମାନଙ୍କର ପାଦତଳେ ଶହ ଶହ କୁଲିଙ୍କ ଝୁପୁଡ଼ି, ଅଖା, ଟିଣ ଆଉ ବାଉଁଶତାଟିର ଜଞ୍ଜାଳ ।

ସେଦିନ ତେଣୁ ଏହି ଅଜଣା ଅନ୍ୟ ସହରରେ ବଜନବହାଦ୍ଧ ତାଙ୍କ ଚିହ୍ନାଜଣା ବନ ଆଉ ମଣିଷମାନଙ୍କର ସନ୍ଧି ଖୋଜି ହଇରାଣ ହେଉଥିବା ବେଳେ, ଗୋଟାଏ ଗଳିରାସ୍ତା ମୋଡ଼ରେ ଦୂର ଅତୀତର ସେହି ବହୁ ପରିଚିତ ଫୁଲବାଲାଟିକୁ ହଠାତ୍ ଦେଖିପାରି ଯେପରି ଅକୂଳରେ କୂଳ ପାଇଥିଲେ ।

ଗତ ତିରିଶ ବର୍ଷ ମଧ୍ୟରେ ସବୁ ଯୁଦ୍ଧ, ମଡ଼କ, ମହାମାରି ପରିବର୍ତ୍ତନ ଓ ବିବର୍ତ୍ତନ ମଧ୍ୟରେ ଏହି ଫୁଲବାଲାଟି ହିଁ ଯେପରି ଅପରିବର୍ତ୍ତିତ ରହିଯାଇଅଛି, ଅତଡ଼ାଖିଆ ଭରା-ନଦୀକୂଳରେ କୋଉ କାଳର ଗୋଟାଏ ବୁଢ଼ା ଶିମ୍ବିଷ ଗଛପରି ।

ବିଜନବିହାରୀଙ୍କୁ ସେ ଚିହ୍ନିପାରିଲ ତ ? ଚଷମାର ଲେନ୍ସ ତଳେ ତାର ଆଖି ଦୁଇଟା ଦିଶୁଥିଲା ମଲା ମାଛର ଆଖି ପରି ଶେତା ଓ ପ୍ରାଣହୀନ । ପାଚିଲା କୁଣ୍ଡଳୀ-ବୂଲ ଦାଣରେ ଲାଗିରହିଥିଲା ପୁରାତନ ପୃଥିବୀର ସ୍ପର୍ଶ । ତିରିଶ ବର୍ଷ ତଳେ, ଏଇଠାରେ ଯେପରି ଖଣ୍ଡେ କାଠିରେ ମଲ୍ଲୀ ଓ ବଉଳର ମାଳା ଝୁଲାଇ ପ୍ରତି ସନ୍ଧ୍ୟାରେ ଠିଆହେଉଥିଲା ସେ ।

"ଗୋଟିଏ ମଲ୍ଲୀମାଳ ଦିଅ, ନାଁ ଦୁଇଟା ! ଏଁ ବାରଅଣା ? ମାନେ ପଞ୍ଚସ୍ତରି ପଇସା ?"

"ମଣିଷ ଜୀବନ ଛଡ଼ା ଆଉ ସବୁ ଜିନିଷର ଦର ବଢ଼ିଛି ଆଜି—ପଞ୍ଚସ୍ତରି ପଇସାରୁ ପଇସାଟିଏ ବି କମ୍ ନୁହେଁ ।"

"ରେଜା ନାହିଁ ? ଆଚ୍ଛା, ସେ ଟଙ୍କାଟା ରଖ...ଚିହ୍ନିପାରୁଚଟି ? ମନେପଡ଼ୁ ନାହିଁ...ଭଲ କରି ମନେପକାଅ...କିଶୋରୀ ବାଈ ଘର ଥିଲାଟି, ଏଇ ଗଳିରେ ?"

ଫୁଲବାଲା ବୁଢ଼ାର ରେଖା-କୁଞ୍ଚିତ ମୁହଁ କୌଣସି ଚିହ୍ନା ମଣିଷକୁ ବହୁବର୍ଷ ପରେ ହଠାତ୍ ଖୋଜି ପାଇବାର ଆନନ୍ଦରେ ଢେଉଢେଉକା ପାଣି ଉପରେ ସୂର୍ଯ୍ୟକିରଣ ପରି ଝଲମଲ ହୋଇଉଠିଲା ।

"ନିଅ, ଟାଣ ଏ ସିଗାରେଟ" ଫୁଲବିକାଳି ବୁଢ଼ାକୁ ଅନ୍ତରଙ୍ଗ ବନ୍ଧୁରେ ପରିଣତ କରିଦେବା ପାଇଁ ବିଜନବିହାରୀଙ୍କୁ ମୁହୂର୍ତ୍ତେ ବିଳମ୍ବ ଲାଗି ନ ଥିଲା ।

ଚୈତ୍ର ମଲ୍ଲୀର ବାସନାର ମଧ୍ୟ ଗୋଟାଏ ରୂପ ଅଛି...ନୂଆ ସକାଳର, ଶୁଚିତାର, ସ୍ନିଗ୍ଧତାର, ଅପାପବିଦ୍ଧ କୈଶୋରର ରୂପ ।

ପ୍ରତ୍ୟେକ ସନ୍ଧ୍ୟାରେ ଅନ୍ୟ ସହରର ସେଇ ବୁଢ଼ାଠାରୁ ମଲ୍ଲୀମାଳ କିଣିବା କ୍ରମେ ବିଜନବିହାରୀଙ୍କର ଏକ ନିତ୍ୟକର୍ମରେ ପରିଣତ ହୋଇ ଉଠିଲା ।

ସେହି ଅବକାଶରେ ଏହି ଅଜଣା ସହରରେ, ଫୁଲବାଲା ବୁଢ଼ା ବ୍ୟତୀତ ଆଉ ଯେଉଁ ଦ୍ୱିତୀୟ ବ୍ୟକ୍ତି ସହିତ ବିଜନବିହାରୀଙ୍କର ସୂକ୍ଷ୍ମ ପରିଚୟ ଘଟିଥିଲା, ସେ ଜଣେ ପଚିଶ ଛବିଶ ବର୍ଷର ଯୁବକ । ସେ ମଧ୍ୟ ଫୁଲ କିଣିବା ପାଇଁ ପ୍ରତିଦିନ ସେଠାକୁ ଆସୁଥିଲା ଗୋଟିଏ ସ୍କୁଟରରେ ।

ନୀଳ ଟ୍ରାଉଜର, ଟେରେଲିନ ସାର୍ଟ, ମୁଣ୍ଡବାଲ ଅଧା ବାବୁରି, ବେକରେ ନାଲି ସିଲକ୍ ରୁମାଲ । ଅନ୍ୟ ସହରର କୌଣସି ବିଟ୍‌ନିକ୍ ।

କିନ୍ତୁ ଦଣ୍ଡେ ଠିଆ ନ ହେଲେ କି ଆଳାପ ଜମେ ? ବିଜନବିହାରୀ ସେହି ବିଟ୍‌ନିକ୍ ସହିତ ଆଳାପ ପାଇଁ ପ୍ରସ୍ତୁତ ହେବାବେଳକୁ ନନୁ ସ୍କୁଟର ହୁଙ୍କି ଗର୍ଜନ କରି ସେଇ 'ସ୍ପଟି ହୋଟେଲ' ମୋଡ଼ରେ ଅଦୃଶ୍ୟ ହୋଇଯାଏ ।

"ଏ ବାବୁଜଣକ କିଏ ? ସେ ତ ତମର ନିତିଦିନିଆ ଗରାଖ ।" —ବିଜନବିହାରୀ ଦିନେ ପଚାରିଲେ ।

ଫୁଲବିକାଳି ବୁଢ଼ା ଉତ୍ତର ଦେଲା, "ଏ ଦୁନିଆ ଟଙ୍କାର ଦୁନିଆ ବାବୁ ! ପଇସା ଛଡ଼ା ଏଠି କିଏ ଆଉ କାହାକୁ ଚିହ୍ନୁଛି ?"

ବୁଢ଼ା ଜଣକ ଅନ୍ୟ ସହରର ଦାର୍ଶନିକ ।

"ନିଅ, ଟାଣ ଏ ସିଗାରେଟ୍ । ତମ ନାଁ କଣ'ଟି ?"

"ବନଓ୍ୱାରୀ, ବନଓ୍ୱାରୀ, ବନଓ୍ୱାରୀଲାଲ୍ ନାଁଟା ତା'ହେଲେ ଭୁଲିଗଲ ?" ନିଜର ନାମଟା କହି ଫୁଲବିକାଳି ବୁଢ଼ା ଅକାରଣରେ ହସିଉଠିଲା । କାହିଁକି କେଜାଣି ?

"କଣୋଗ୍ରି ବାଈ ଘରେ ଆଜକାଲି କେଉଁମାନେ ରହୁଛନ୍ତି"···ବିଜନବିହାରୀ ପଚାରିଲେ ।

ବନଓ୍ୱାରୀ ଥିଲା ସେଦିନ ଏହି ଗଳିର ଚଳନ୍ତି ଗେଜେଟ୍, ଅଥବା ଙ୍କ-ବୋର୍ଡ଼ । କାହା ଘରକୁ କିଏ ଆସିଛି ଅଥବା କିଏ ଆସିବ; କାହା ଘର ଆଜି ଖାଲି, ଗଳିମୁଣ୍ଡରେ ବନଓ୍ୱାରୀଲାଲଠାରୁ ମିଳୁଥିଲା ସେ ସବୁ ବୃତ୍ତାନ୍ତ ।

ଏଥିପାଇଁ କିନ୍ତୁ ମଲ୍ଲୀ, ଚମ୍ପା ଅଥବା ବଉଳମାଳାର ଉଚିତ୍ ମୂଲ୍ୟଠାରୁ ଅଧିକା ମୂଲ୍ୟ ନେବାପାଇଁ ବନଓ୍ୱାରୀର କୌଣସି ଉଦ୍ୟମ ଅଥବା ଅଭିପ୍ରାୟ ନ ଥିଲା ।

ବନଓ୍ୱାରୀଲାଲ ସେହି ସବୁ ଦିନର ସ୍ମୃତି ବହୁକାଳରୁ ଭିଜା ହୋଇ ପଡ଼ିଥିବା ଗୋଟାଏ ଭଙ୍ଗା ଉଜୁଡ଼ା କୂଅ ଭିତରେ ଭୁଡ଼ ଉଣ୍ଡାଳି ହେଲା ପରି ଉଣ୍ଡାଳି ହେଉଥିଲା । ବିଜନବିହାରୀ ପଚାରିଲେ, ପୁଣି ସେହି ଅବାନ୍ତର ପ୍ରଶ୍ନ, ନିତାନ୍ତ ଅକାରଣରେ··· "କଣୋଗ୍ରି ବାଈ ଖବର ଆଉ କଣ ?"

ବନଓ୍ୱାରୀ କଳେ ଧୂଆଁ ଛାଡ଼ି କହିଲା, "କଣୋଗ୍ରି ବାଈମାନଙ୍କର ବ୍ୟବସାୟ ଏବେ ଅଚଳ । ଘରେ ଘରେ ଠାକୁରବାଡ଼ି··· ।" ବନଓ୍ୱାରୀଲାଲର ବେପରୁଆ ହସରେ ବିଜନବିହାରୀ ଅପ୍ରତିଭ ହୋଇପଡ଼ିଲେ, ଯେପରି ଏ ପ୍ରଶ୍ନଟା ପଚାରିବା ଉଚିତ ହୋଇନାହିଁ ।

କଣୋଗ୍ରି ବାଈର ଆଖଡ଼ାରେ ବହୁବାର ଶୁଣା ଗୀତ ଚଉପଦୀ ସବୁ ହଠାତ୍ ଯେପରି ମୂର୍ଚ୍ଛିତ ହୋଇ ଉଠୁଥିଲା, "ବନ୍ଧୁ ମାଗୁଣି ଏତିକିରେ"···"ଜାନ ଖାଓ ମେରେ ପରଦେଶୀୟା"···ଭୈରବୀ, ଠୁଙ୍ଗ୍ରୀ ।

ବନଓ୍ୱାରୀ କହିଲା, "ମ୍ୟୁନିସପାଲିଟିବାଲା ସହରକୁ ନିର୍ମଳ କରିବା ପାଇଁ କେବଠାରୁ ସେମାନଙ୍କୁ ଏଠାରୁ ତଡ଼ିଦେଲେଣି । ଜଣେ କଣୋଗ୍ରିବାଈ ସ୍ଥାନରେ ଏବେ ଯେ ଶହ ଶହ କଣୋଗ୍ରି ବାଈ ।"

ବନଓ୍ୱାରୀ ପୁଣି ସେପରି ଅଟ୍ଟହାସ୍ୟ କରି ଉଠିଲା । ସେଥିରେ ଏକଦା କୁଖ୍ୟାତ ଏଇ ଗଳିମୋଡ଼ରେ ବିଜନବିହାରୀଙ୍କୁ କେହି ଦେଖିଲା କି ଆଶଙ୍କାରେ ଯେ ଈଷତ୍ ଚଞ୍ଚଳ ହୋଇ ଉଠିଲେ···ଅବଚେତନରେ ଅଳନ୍ଧୁ ପରି ତଥାପି ଝୁଲି ରହିଥିଲା ସେ ସବୁ ଆଶଙ୍କା ।

ଗୋଟାଏ ଦାମୀ ମୋଟରଗାଡ଼ି ମସୃଣ ସାମ୍ତାଳ୍ୟରେ ଦେହ ନଚାଇ ନଚାଇ ସେହି ଗଳି ଭିତରକୁ ପଶିଗଲା । ବିଜନବିହାରୀ ପଚାରିଲେ, "ଏ ଗଳିରେ ଏବେ ଆଉ କେଉଁମାନେ ରହୁଛନ୍ତି ବନଓ୍ୱାରୀ ! କମଳା, ରାଧା, ଭୁବନମୋହିନୀର ଦଳ ସବୁ ଗଲେ କୁଆଡ଼େ ?"

ବନଓ୍ୱାରୀ ଜିଭ କାମୁଡ଼ି ଉତ୍ତର ଦେଲା, "ଏ ଗଳି କଣ ଆଉ ସେ ଗଳି ହୋଇ ଅଛି ? ଏ ବର୍ତ୍ତମାନ ଏକ ରୋଡ଼···ଜଣେ ନେତାଙ୍କ ନାଁରେ : କିଶୋରୀ ବାଈ ଡ଼ିଅରେ ଏବେ ଓକିଲଙ୍କ କୋଠା, ଘର ନାମଜାଦା । ଭୁବନମୋହିନୀର ଚଉତର ଆଉ ବଉଳଗଛ ଯେଉଁଠି ଥିଲା, ସେଠି ଏବେ ନେତାଙ୍କ ଆସ୍ଥାନା; ତା' ସେପାଖକୁ ରହନ୍ତି ଖବରକାଗଜବାଲା; ଜଣେ ବଡ଼ବାବୁ । ଏସବୁ ଏବେ ବଡ଼ ବଡ଼ ଭଦ୍ର-ଲୋକଙ୍କ ପେଣ୍ଠ ।"

କିଶୋରୀ ବାଈ ଦଳର ଦେହ ଥିଲା ପଣ୍ୟ; ମାତ୍ର ସେମାନଙ୍କ ପ୍ରାଣ ଥିଲା ଶୀତ୍କାର ଝଙ୍କୃତିରେ; କିନ୍ତୁ ଏ ନୂଆ କିଶୋରୀ ବାଈମାନଙ୍କର ଦେହ ସହିତ ଆତ୍ମା ମଧ୍ୟ ଆଜି ପଣ୍ୟ । ଉତ୍ତର-ଭାରତର ସେହି ସହରରେ ବିଜନବିହାରୀ ବହୁ ଅକ୍ଷତ ଦେହ ଦେଖିଥିଲେ ସିନା, ଅକ୍ଷତ ଆତ୍ମାର ସନ୍ଧାନ ପାଇ ନ ଥିଲେ କେଉଁଠି ।

ଯମୁନା କଥା ମନେପଡ଼ିଲା ।

ରିଟ୍‌ଜ ହୋଟେଲର ରିସେପ୍‌ସନିଷ୍ଟ···ଓଠରେ ଗୋଲାପି ଲିପ୍‌ଷ୍ଟିକ୍ । ଗାଲରେ ରୁଜ୍ । ପିଠିପଟେ ବ୍ଲାଉଜର ଓଲଟ ତ୍ରିକୋଣଟି ବେଶ୍ ଗଭୀର ଓ ରେଖାଙ୍କିତ, ବେକରେ ନକଲି ପାର୍ଲର ଗୋଟାଏ ମାଳା । ମୁଣ୍ଡରେ ବାଳ ବବ୍‌ଡ଼୍ । ରିଟ୍‌ଜ୍ ହୋଟେଲର ରିସେପ୍‌ସନ କାଉଣ୍ଟର ପାଖରେ ଯମୁନା ବସେ, ଫୁଲଦାନରେ କେନାଫୁଲର ଗନ୍ଧହୀନ ମ୍ଳାନ ସ୍ତବକ ପରି । ଶସ୍ତା ଷ୍ଟେସନାରିର ଏଇ ଲୋଭନୀୟ ବିଜ୍ଞାପନରେ ଆକୃଷ୍ଟ ହୋଇ ବିଜନବିହାରୀ ସେଦିନ ଏଇଠାକୁ ଆସିଥିଲେ ଦରଦୀ ଆତ୍ମାର ସନ୍ଧାନରେ, ମାତ୍ର ପାଇଥିଲେ ଏକ ମସୃଣ, ଲୋଭନୀୟ ଦେହତଳେ ଗୋଟିଏ କୀଟଦଷ୍ଟ ଆତ୍ମା ।

"ତୁମେ ପ୍ରେମରେ ବିଶ୍ୱାସ କର ଯମୁନା ?"

ପାଲମ୍ ବିମାନଘାଟୀକୁ ରାସ୍ତା କଡ଼ରେ ନିର୍ଜନ, କଙ୍କରିଳ, ପ୍ରସ୍ତର-ଦନ୍ତୁରିତ

ଗୋଟାଏ ଆଦମ ଭ୍ରାନ୍ତିର । ଆକାଶରେ କଣୋଗ୍ଭ ଶୁକ୍ଳାତଥିର ଗୋଟାଏ ଲଜ୍ଜାବତୀ ଜହ୍ନ ମେଘର ରେଶମୀ ଓଢ଼ଣା ଉଡ଼ାଲରେ ଥରେ ଥରେ ମୁହଁ ଦେଖାଇ, ପୁଣି ଲୁଚଯାଉଥିଲା ନଜକୁ ଯେପର ଆହୁର ଆକର୍ଷଣୀୟ କରବା ପାଇଁ । ଯମୁନା ସେଦନ ସନ୍ଧ୍ୟାରେ ପିନ୍ଧଥିଲ, ମଷ୍ଟର୍ଡ୍ ରଙ୍ଗର ଖଣ୍ଡେ ଶାଢ଼ି । କଣୋଗ୍ଭ ଜ୍ୟୋତ୍ସ୍ନାର ଆଲୋକ ସହତ ତାହାର ଥିଲା ଅଦ୍ଭୁତ ସିମ୍ୟାନ । ଯମୁନା ଦଶୁଥିଲା ଅଶଗ୍ଭଗ୍ଭ ସ୍ୱପ୍ନ-ନାୟିକା ପର; କନ୍ତୁ ତାର ଆଖି ଦୁଇଟାରେ ସନ୍ତାପ୍ତପର ଯେଉଁ କ୍ଷୁଧିତ ବହ୍ନିଶିଖା ଜଳିଥିଲା, ତାହା ଯେପର ପରବେଶ ସହତ ଆଦୌ ଖାପ୍ ଖାଉ ନ ଥିଲା । ଯମୁନା, ଗୋଟିଏ ଦୀର୍ଘଶ୍ୱାସ ପକାଇ ଉତ୍ତର ଦେଇଥିଲା—

"ମୁଁ ବଶ୍ୱାସ କରେ ପ୍ରୟୋଜନରେ ।"

ବନଓ୍ୱାରୀଲାଲର କଥାରେ ବଜନବହାଗ୍ଭଙ୍କ ସ୍ମୃତଚ୍ଚାରଣରେ ବାଧା ପଡ଼ିଗଲା । ବନଓ୍ୱାରୀଲାଲ ବଙ୍ଗଜନୋଚତ ଗାମ୍ଭୀର୍ଯ୍ୟରେ କହୁଥିଲା, "କଣୋଗ୍ଭ ବାଉର ଦଳ ଆଜ ଏ ସହରରେ ଥିଲେ, ସେମାନଙ୍କର ପେଟପୋଷା ଦାୟ ହୁଅନ୍ତାଣି ।" ପୁଣି ସେଇ ପ୍ରାଣଖୋଲା ହସ ।

ବଜନବହାଗ୍ଭ ଓ ବନଓ୍ୱାଗ୍ଭ ମଧ୍ୟରେ ସେହ ସବୁ ପୁରୁଣା ଦନର ସ୍ମୃତ ରୋମନ୍ଥନ, ହଠାତ୍ ସେହ ସ୍କୁଟରଚଢ଼ା ବଟନକ୍-ଗଗ୍ଭଖର ସ୍କୁଟର ଶବ୍ଦରେ ବାଧା ପାଇ ଅଟକଗଲା । ସ୍କୁଟର ଆରୋହୀ ଜଣକ ବନଓ୍ୱାଗ୍ଭଠାରୁ ପଚ୍ଚଶ ପଇସା ମୂଲ୍ୟ ଦେଇ ମଲ୍ଲୀମାଳଟିଏ ଧର ଗ୍ଭଲଯାଉଥିଲା । ବଜନବହାଗ୍ଭ ତା ସହତ ଆଳାପ କରବା ଉଦ୍ଦେଶ୍ୟରେ କହଲେ, "ଏଇ ଯେ । ତୁମର ଆଜ ଡେର ହେବା ଦେଖି ମୁଁ ଭାବୁଥିଲ, ତୁମେ ଆଜ ଆଉ ଆସିବ ନାହିଁ ପଗ୍ଭ !"

ଆରୋହୀ ଜଣକର ଆଖିରେ ମୁହଁରେ ଯେଉଁ ଭାବ ଫୁଟିଉଠିଲା, ସେଥିରେ ସୁସ୍ପଷ୍ଟ ଥିଲା, ଅନ୍ୟର କଥାରେ ଏ ନାସିକା ପ୍ରବେଶ କାହିଁକି ? ହୁଃ । ସ୍କୁଟର ଗୋଟାଏ କ୍ରୁଦ୍ଧ ଗର୍ଜନ ଛାଡ଼ି ଗଳମୋଡ଼ରେ ଅଦୃଶ୍ୟ ହୋଇଗଲା । ବନଓ୍ୱାଗ୍ଭର ଶେଷ ମାଳାଟି ବକି ସରଥିଲା । ସେ ମଧ୍ୟ କ୍ଳାନ୍ତ ଭାବରେ ଗୋଟାଏ ହାଇ ମାର ତା ବାଟରେ ବାହାରଗଲା ।

ମାତ୍ର ଆଜ ସେ ଲୋକଟାକୁ ଯେଉଁଠି ହେଲେ ଧର ତା'ଠାରୁ ବୁଝିବା ପାଇଁ ପଡ଼ିବ, ମଲ୍ଲୀଫୁଲର ଗନ୍ଧ ତାକୁ ଆଣିଦେଇଥାଏ କେଉଁ ବସ୍ମୃତ ଅଥଚ ଅବସ୍ମରଣୀୟ ଅତୀତର ସ୍ମୃତ, ଯାହାର ଆକର୍ଷଣରେ ସେ ପ୍ରତଦନ ଧାଇଁଆସେ ବନଓ୍ୱାଗ୍ଭଠାରୁ ମଲ୍ଲୀମାଳା କଣିବା ପାଇଁ ? ବଜନବହାଗ୍ଭ ସ୍କୁଟର ପଛେ ପଛେ ଗୋଟାଏ ସାଇକଲ୍-ରକ୍ସା ଉପରେ ଉଠି ବସିଲେ ।

ଷ୍ଟ୍ରେଟ ସହରଟି ହଠାତ୍ ଯେତେ ଅଚଞ୍ଚଳା ହୋଇଉଠିଥିଲେ ସୁଦ୍ଧା ବହୁ ଗଳ

ଉପଗଲରେ ଅତ୍ୟନ୍ତ ବଜନବହାଗଙ୍କୁ ବଲମ୍ବ ଲଗିଲ ନାହିଁ, ସେହି ସ୍କୁଟରଚଢ଼ାଲ ଜଣକୁ ଖୋଜ ବାହାର କରବା ପାଇଁ, ଟେଲିଫୋନ ଏକ୍ସଚେଞ୍ଜ ଗଲର ସେଇ ବାର୍ ଭିତରେ ।

ବାର୍ ଭିତରୁ ଗ୍ରୁପ୍ସାମୃତି ପର ବାହାର ଯାଉଥିବା ଜଣେ ଜଣେ ଗରାଖଙ୍କ ହାକୁଡ଼ ଅଥବା ହ୍ରେଷାରବ ବ୍ୟତୀତ ଅନ୍ୟ କୌଣସି ଶବ୍ଦ ନଥିଲ । ବାର୍ ସାମନାର ଗଲରାସ୍ତା କମେ ନିସ୍ତଟିଆ ହୋଇଆସୁଥିଲ ।

ବାର୍ ସାମନାରେ ସେହି ସ୍କୁଟରଟି ଠିଆ ହୋଇଥିଲ ଗୋଟାଏ କାଠ-ଘୋଡ଼ା ପର । ବଜନବହାଗ୍ର ପକେଟବୁକ୍‌ରେ ଲେଖାଥିବା ନମ୍ବର ସହିତ ସ୍କୁଟରର ନମ୍ବର ମିଳାଇ ଦେଖିଲେ, ଆକାଶୀ ରଙ୍ଗର ସେହି ବନ୍ଧୁ ପରଚତ ସ୍କୁଟର । ବଜନ ବହାଗ୍ରଙ୍କୁ ଫାଙ୍କି ଦେବା କଣ ସହଜ । ସ୍କୁଟରଚଢ଼ାଲ ଜଣକ ପଢ଼ି ପାରୁଥାଏ ଜେମସ୍-ବଣ୍ଡସ୍-ଗୋୟେନ୍ଦା ଉପନ୍ୟାସ ସିରଜ; ମାତ୍ର ତାଙ୍କ ଦନେ ବଜନବହାଗ୍ର ମଧ୍ୟ କମ୍ ପଢ଼ି ନ ଥିଲେ, ଏଡ଼ଗାର୍ ଓ୍ୟାଲେସ୍ ଆଉ ଆଗାଥା କ୍ରୀସ୍ଟି ।

ବାର୍ ଭିତରେ ଗରାଖମାନଙ୍କର ଭିଡ଼ ନଥିଲ । ଗୋଟିଏ ଗୋଲ ଟେବୁଲ୍ ଗ୍ରୁପଟେ ଚାରଜଣ କଏ ଶୋକସଭାରେ ବସିବା ପର ନୀରବରେ ତଳକୁ ମୁଣ୍ଡ ନୁଆଁଇ ବସିଥିଲେ । ଆସ୍‌ଟ୍ରେ ଭିତରୁ ପୋଡ଼ା ସିଗାରେଟ୍‌ର ଧୂଆଁ କୁଣ୍ଡଳୀ ମୋଡ଼ି ଉପକୁ ଉଠୁଥିଲ ।

ବାର୍-କାଉଣ୍ଟରଠାରୁ ଅଳ୍ପ ଛଡ଼ାରେ ସ୍କୁଟର୍-ଚଢ଼ାଲ ସେଇ ଦ୍ରଟନକ୍ ଏକୁଟିଆ ବସିଥିଲ ସାମନାରେ ଗୋଟାଏ ଖାଲି ଗ୍ଲାସ ରଖି । ଗ୍ଲାସ ଭିତରକୁ ଚାହିଁ ସେ କଣ ଭାବୁଥିଲ କେଜାଣି ? ସନ୍ଧ୍ୟାରେ ବନଓ୍ୱାଗ୍ରଲଲଠାରୁ କଣା ସେଇ ମଲ୍ଲୀମାଳଟି ଟେରେଲିନ ହାଓ୍ୱାଇ ସାର୍ଟର ଛାତି ପକେଟ ଭିତରୁ ବାହାରକୁ ଅଳ୍ପ ଟୁଲୁପଡ଼ିଥିଲ ।

ବଜନବହାଗ୍ର ତା ପାଖକୁ ଆସି ସୌଜନ୍ୟରେ ପଗ୍ରରଲେ, "ମୁଁ ଏଠାରେ ବସିପାରେ କ ?"

ବଜନବହାଗ୍ର ଆଡ଼େ କାଚ ଚଆର ଆଖି ପର ଦୁଇଟି ଅଭିବ୍ୟକ୍ତିହୀନ ଆଖିରେ ସେ କେତୋଟି ମୁହୂର୍ତ୍ତ ଚାହିଁଲ । ତା ପରେ ଯେଉଁ ଚଉକ ଉପରେ ବୁଟ୍ଲଡ୍ ମୁହାଁ ଯୋଡାପିନ୍ଧା ପାଦ ଦୁଇଟି ଲମ୍ବାଇ, ସେ ଜଣେ ପରାଜିତ ସେନାପତି ପର ବସିଥିଲ, ସେହି ଚଉକଟି ପାଦରେ ଠେଲି ଦେଇ କହିଲ, "ହଁ ବସି ପାରନ୍ତି କନ୍ତୁ ଆପଣଙ୍କ ବିଲ୍ ପଇସା ଆପଣଙ୍କର ।" କଣ୍ଠରେ ତାର ବ୍ୟବସାୟୀସୁଲଭ ଠୋକଠୋକ୍ କଥା ।

ବଜନବହାଗ୍ର ପ୍ରାଣଖୋଲ ହସ ହସି କହିଲେ, "ନିଶ୍ଚୟ, ନିଶ୍ଚୟ । ଖାଲି ମୋର

ନୁହେଁ, ଆପଣଙ୍କର ମଧ୍ୟ । ବସ୍ତୁ···ଆପଣଙ୍କର କଣ ଦରକାର ? ମୋର ଗୋଟାଏ ଜିନ୍ ହେଲେ ଚଳିବ, ଜିମ୍‌ଲେଟ୍ ।"

ଅସ୍ପୃଷ୍ଟ କଣ୍ଠରେ ସେ ଉତ୍ତର ଦେଲା, "ବସ୍ତୁ ଜାଣେ ମୋର ଯାହା ଦରକାର ।"

ବଜନବହାଗ୍ରା ପାଇଁ ଗୋଟାଏ ଜିମ୍‌ଲେଟ୍ ଆଉ ତା ପାଇଁ ଗୋଟାଏ ଗ୍ଲାସରେ ପ୍ରାୟ ଦୁଇ ପେଗ୍ ମାପରେ ଯେଉଁ ପାନୀୟ ଆଣି ବସ୍ତୁ ରଖିଦେଇଗଲା ତାହା ବୋଧହୁଏ ସ୍ୱଦେଶୀ । ତାହାର ଉତ୍କଟ ବାସନା ଏକ ଅଶ୍ଳୀଳତା ପରି ବଜନ-ବହାଗ୍ରାଙ୍କୁ ଚମକାଇ ଦେଲା । ସେ କିନ୍ତୁ ଏକା ଢୋକରେ ଗ୍ଲାସଟିକୁ ନିଃଶେଷ କରି ଅମ୍ଳାନ ବଦନକୁ ବାଁ ହାତପାପୁଲିରେ ପୋଛୁ ପୋଛୁ ଖଣ୍ଡେ ସିଗାରେଟ୍‌ରେ ନିଆଁ ଲଗାଇଲା ।

ବଜନବହାଗ୍ରା ଜିମ୍‌ଲେଟ୍ ଗ୍ଲାସଟିକୁ ଓଠ ପାଖକୁ ଆସ୍ତେ ଉଠାଇ ଧରି କହିଲେ, "ଆପଣ ମଲ୍ଲୀର ବଡ଼ ପ୍ରିୟ । ସେ କଥା ମୁଁ ବେଶ୍ ଲକ୍ଷ୍ୟ କରି ଦେଖିଛି; କିନ୍ତୁ ମଲ୍ଲୀର ଗନ୍ଧ ଆପଣଙ୍କୁ କଣ ସ୍ମରଣ କରାଇଦିଏ, କହନ୍ତୁ ତ ଦେଖି ?"

ସେ କୌଣସି ଉତ୍ତର ଦେଲା ନାହିଁ । ପୁଣି ପ୍ରସ୍ତେ ଜିମ୍‌ଲେଟ୍ ଓ ତାର ପୁଣି ପ୍ରସ୍ତେ ସ୍ୱଦେଶୀ ଭୋଦ୍‌କା ପରେ ବଜନବହାଗ୍ରା ସେଇ ପ୍ରଶ୍ନର ପୁନରାବୃତ୍ତି କଲେ । ଆଜି ଯେଉଁ ସୁବିଧା ମିଳିଛି, ସେ ସୁବିଧା ଆଉ ହୁଏତ କେବେ ମିଳି ନ ପାରେ । ତେଣୁ ଏ ମୂଲ୍ୟବାନ ତଥ୍ୟଟି ଆଜି ଏଇଠାରେ ଆବିଷ୍କାର କରିବା ପାଇଁ ପଡ଼ିବ । ଅପ୍ରସନ୍ନ କଣ୍ଠରେ ସେ ଉତ୍ତର ଦେଲା, "ମୁଁ ମଲ୍ଲୀମାଳା କିଣେ କୌଣସି ସ୍ମୃତିକୁ ମନେ-ପକାଇବା ପାଇଁ ନୁହେଁ, ମୁଁ କିଣେ ସେଇ ବଚ୍‌ଟା ପାଇଁ । ମଲ୍ଲୀ ତାର ଖୁବ ପ୍ରିୟ ।"

କିନ୍ତୁ କିଏ ସେ ମଲ୍ଲୀ-ପ୍ରିୟା ବଚ୍, ମାନେ କୁକ୍‌କୁରୀ, ଆଉ କିଏ ବା ଏଇ ନବ୍ୟ ସହଜିଆ କୁକ୍‌କୁରୀପାଦ ? ବଜନବହାଗ୍ରା କିଛି ବୁଝି ପାରିଲେ ନାହିଁ । ସେ କିନ୍ତୁ ନିଜ ଆଡ଼ୁ ସେ ରହସ୍ୟ ଉଦ୍‌ଘାଟିତ କରି କହିଲା, "ଏକସ୍‌ଚେଞ୍ଜରେ ଅପରଟେର ମନୀଷା···ମନି···ଆଜି ଆସିବା ପାଇଁ ଏତେ ଡେରି କରୁଛି କାହିଁକି, କେଜାଣି ? ହୁଏତ ଗ୍ଳୁଲିସିବଣି କେଉଁ ସେକେଣ୍ଡ ଶୋ ସିନେମାକୁ ।"

ବଜନବହାଗ୍ରା ଖଣ୍ଡେ ସିଗାରେଟରେ ନିଆଁ ଲଗାଇ ଧୀରେ ଧୀରେ ଧୂଆଁର କୁଣ୍ଡଳୀ କାଢ଼ି ପେଶାଦାର ମନସ୍ତାତ୍ତ୍ୱିକ ପରି ପଚାରିଲେ —

"କାହା ପାଇଁ ଆପଣ ମଲ୍ଲୀମାଳ କିଣନ୍ତି, ସେ କଥା ଜାଣି ମୋର ଲାଭ ନାହିଁ । ଯୌବନରେ ସେପରି ବଚ୍‌ମାନଙ୍କର କାମୁଡ଼ାରେ ମୁଁ ମଧ୍ୟ କମ୍ ଆହତ ହୋଇନାହିଁ । ତଥାପି ସେମାନଙ୍କ ପାଇଁ ମଲ୍ଲୀମାଳା କିଣିବାକୁ ପଡ଼େ, ଅପେକ୍ଷା କରିବାକୁ ମଧ୍ୟ ପଡ଼େ । ଯୌବନର ସେ ଗୋଟାଏ ଅକୁପେସ୍‌ନାଲ୍ ଡିଜିଜ୍—ବୃତ୍ତିଗତ ବ୍ୟାଧି ।

ମୋର ପ୍ରଶ୍ନ କିନ୍ତୁ ମଲ୍ଲୀର ସୌରଭ ଆପଣଙ୍କୁ କଣ ସ୍ମରଣ କରାଇଦିଏ ? କେଉଁ ଅତୀତର ଘଟଣା ଓ ପରିବେଶ ?"

ସେ ଆଉ ପ୍ରସ୍ତେ ଦେଶୀ ଭୋଦ୍‌କା ପାଇଁ ଘାଘର୍ କଣ୍ଠରେ ଅର୍ଡର ଦେଲା ।

ବଜନବିହାରୀ କିନ୍ତୁ ପ୍ରଗଲ୍‌ଭ ହୋଇ ଉଠିଥିଲେ । ସେ କହିଚାଲିଲେ—"ଉଦାହରଣ ସ୍ୱରୂପ, ଏଇ ଧରନ୍ତୁ ମଲ୍ଲୀର ଖାଲି ଗନ୍ଧ ମୋତେ ମନେ ପକାଇଦିଏ, ବର୍ଷ ଓ କାଳର ପାରାବାର ସେପଟେ ଏକ ପଲ୍ଲୀ ଗ୍ରାମରେ ଗୋଟିଏ ସ୍କୁଲ୍ ବୋର୍ଡ଼ିଂଘର । ଗୁଆଡଙ୍କା ବାଦାମୀ ରଙ୍ଗର ଖରାଦିନଆ ସକାଳ ତଥାପି ସ୍ପଷ୍ଟ ହୋଇ ଫୁଟିନାହିଁ । ନିଦ ମଳମଳ ଆଖିରେ ସକାଳ ପ୍ରାର୍ଥନା ପାଇଁ ପିଲାଏ ଚାଲିଛନ୍ତି ସୁଦାମ ପଣ୍ଡିତଙ୍କ ପିଣ୍ଡାକୁ—'ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନ ସ୍ୱାମୀ'ର ପ୍ରଥମ ଲହରୀ ଉଠିଲାଣି । ଶଙ୍କା ସଙ୍କଟହୀନ ପୃଥିବୀର ଗୋଟିଏ ଅପାପବିଦ୍ଧ ସକାଳ, ପିଣ୍ଡା ତଳେ ରାଶି ରାଶି ମଲ୍ଲୀଫୁଲର ମହକ ଭିତରେ ସେଦିନଟି ଯେପରି ଧୀରେ ଧୀରେ ଚେଇଁ ଉଠୁଥିଲା, ଆଜି ମଧ୍ୟ ମୁହୂର୍ତ୍ତିକ ପାଇଁ ହଠାତ୍ ସେହିପରି ଚେଇଁ ଉଠେ···ମୁଠାଏ ମଲ୍ଲୀଫୁଲ ଭିତରେ । ଆଉ ଆପଣଙ୍କର ?"

ସେ ଲୋକଟି ଅକାରଣ ରୁକ୍ଷଭାବରେ ବିସ୍ଫୋରଣ କରି ଉଠିଲା—"ଆମେ ସବୁ ଆଜି ବଞ୍ଚିଛୁ, ସବୁ ଭୁଲିଯିବା ପାଇଁ । ଅତୀତର ରୋମନ୍ଥନ ପାଇଁ ତୁମ ପରି ଇଡିଅଟ୍‌ମାନେ ମଲ୍ଲୀମାଳ କିଣିପାରୁଥାନ୍ତି, ମାତ୍ର ମୁଁ ଜଣେ କେବଳ ସେହି ବର୍ତ୍ତା ପାଇଁ ।"

ତା'ପରେ ଗୋଟାଏ ଅଶ୍ଳୀଳ ହାକୁଡ଼ି ମାରି ସେ ଟେଲିଫୋନ୍-ବୁଥ ଭିତରେ ଅଦୃଶ୍ୟ ହୋଇଗଲା, ବୋଧହୁଏ ମଜାଷାକୁ ଟେଲିଫୋନ୍ କରିବା ପାଇଁ । ଚଉକିରୁ ଟଳି ଟଳି ଉଠିଗଲାବେଳେ, ମଲ୍ଲୀମାଳଟା ତାର ପକେଟରୁ ଖସି ତଳେ ପଡ଼ିଗଲା । ମାତ୍ର ଏତେ ଯତ୍ନରେ କିଣା ମଲ୍ଲୀମାଳଟିକୁ ହାତରେ ଉଠାଇ ନେବା ପାଇଁ ତାହାର ଧୈର୍ଯ୍ୟ ଅଥବା ଅଭିଳାଷ ନଥିଲା । ତାର ଜୋତା ତଳେ ଫୁଲମାଳଟା ମକଚି ହୋଇ ପଡ଼ିଥିଲା ।

ବଜନବିହାରୀ କାଉଣ୍ଟରରେ ବିଲ୍ ଚୁକାଇ ବାହାରକୁ ଆସିଲେ । ସ୍କୁଟରଟା ସେମିତି ଠିଆହୋଇଥିଲା ଗୋଟାଏ କାଠ-ଘୋଡ଼ା ପରି ।

ଅନ୍ୟ ସହରର ସେଇ ଗଳିରାସ୍ତା ନିଅନ୍ ଆଲୋକରେ ଦିଶୁଥିଲା ନିଦ ଔଷଧ ଗିଳି ଶୋଇପଡ଼ିଥିବା କୌଣସି ରୋଗୀର ବିମର୍ଷ ମୁହଁ ପରି । ଏ ନିଦ୍ରା ବିଶ୍ରାମର ପ୍ରଶାନ୍ତି ନୁହେଁ, ଦୁଇଟି ଯନ୍ତ୍ରଣା ମଧ୍ୟରେ କେବଳ ଗୋଟିଏ ବିରତି ମାତ୍ର ।

# ଧର୍ମକ୍ଷେତ୍ରେ

## ବାମାଚରଣ ମିତ୍ର

ଫଗୁଣ ମାସର ଶୁକ୍ଳପକ୍ଷ ତ୍ରୟୋଦଶୀର ସକାଳ । ସୁନ୍ଦର ଫାଟି ଫାଟି ଆସୁଚ । ଏତେ ସକାଳୁ ମଧ୍ୟ କାହିଁ ଗୋଟିଏ କୋଇଲି କୁଶଭଦ୍ରା ନଦୀର ବନ୍ଧ ଉପର ଆମ୍ବତୋଟାରେ ବସି ଏକୁଟିଆ ରାବି ଚାଲିଛି ଆକୁଳ ଭାବରେ ।

ଗ୍ରାମ ପଧାନଙ୍କ ନାତି, ନବଘନଙ୍କ ପୁଅ ଶ୍ୟାମଘନ ଅନ୍ୟମନସ୍କ ଭାବରେ ଧୀରେ ଧୀରେ ନଈଧାରକୁ ଓହ୍ଲାଇଲେ । ଆଠବର୍ଷ ପରେ ସେ ଡାକ୍ତର ହୋଇ ପ୍ରଥମ ଥର ଗାଁକୁ ଫେରିଛନ୍ତି । ଆଜି ସକାଳୁ ମନଟା ତାଙ୍କର ହଠାତ୍ ଆନନ୍ଦରେ ଭରିଗଲା । ସେ ଆନନ୍ଦ ଯେପରି ଖାଲି ଖୁସି ନୁହେଁ, ଖୁସିଠୁ ଆହୁରି କିଛି ବେଶି । ଯେଉଁ ଆଡ଼କୁ ସେ ଚାହିଁଲେ ସବୁ ତାଙ୍କୁ ସୁନ୍ଦର ମନେ ହେଲା, ଏପରିକି ବାଡ଼ିପଟର ପଚା ପୋଖରୀଟି, ଆଉ ଶୁଖୁଟା ମା'ର ଶୁଖିଲା ପତରଗଦାଟି ବି । ପୁଣି ସେ ଆନନ୍ଦ ଭିତରେ ଗୋଟିଏ ଅଜଣା ବେଦନା ମିଶିଯାଇ ତାକୁ ଉଦାସ କରିଦେଇଚି; ଅଥଚ କେଉଁଥିପାଇଁ ଏପରି ଲାଗୁଚି ସେ କିଛି କାରଣ ଖୋଜି ପାଇଲେ ନାହିଁ । ସେ ଆଉ ଘରଭିତରେ ରହିପାରିଲେ ନାହିଁ । ରାତି ନପାହୁଣୁ ବାହାରିଆସିଲେ କୁଶଭଦ୍ରା ନଦୀକୁ, ଯାହାର ନାନା ରୂପକୁ ସେ ପିଲାଟିବେଳୁ ଦେଖି ଦେଖି ମଧ୍ୟ କଳନା କରି ପାରିନାହାନ୍ତି କି ତୃପ୍ତି ମଧ୍ୟ ପାଇନାହାନ୍ତି । କୁଶଭଦ୍ରା ଥିଲା ତାଙ୍କର ବନ୍ଧୁ, ଦାର୍ଶନିକ, ପଥପ୍ରଦର୍ଶକ । ବହୁଦିନ ପରେ ଆଜି କୁଶଭଦ୍ରାକୁ ଦେଖି ତାଙ୍କର ବେଦନା-ଆନନ୍ଦ ଆହୁରି ତୀବ୍ର, ଆହୁରି ବ୍ୟାପ୍ତ ହୋଇଗଲା ।

ପନ୍ଦର ବର୍ଷ ପୂର୍ବେ ଏମିତି ଗୋଟିଏ ଦିନରେ ନଈ ଆରପାଖ ଅଡ଼ଡ଼ା ଉପର ଗାଁ ଅହମଦପୁରର ମୁସଲମାନ ଓ ଏପାଖ ଅଡ଼ଡ଼ା ଉପର ଗାଁ କୁଶପୁରର ହିନ୍ଦୁମାନଙ୍କ ଭିତରେ ହୋଲି ଖେଳ ନେଇ ଦଙ୍ଗା ଲାଗି ତାଙ୍କ ବାପା ନବଘନ ଓ ରହିମ୍ ଅଜାଙ୍କ ପୁଅ ଅବଦୁଲ୍ ପରସ୍ପରକୁ ମାରି ଏଇ ନଈବାଲିରେ କୁଣ୍ଢାକୁଣ୍ଢି ହୋଇ ଚିରଦିନ ପାଇଁ ଶୋଇଯାଇଥିଲେ । ସେ ଦଙ୍ଗାର କାରଣ ଥିଲେ ପୁଣି ଶ୍ୟାମଘନ ନିଜେ । ତାଙ୍କୁ ସେତେବେଳେ ଆଠବର୍ଷ । ସେ ରହିମ୍ ଅଜାଙ୍କ ଦାଢ଼ିରେ ଅବିର ବୋଳି ଦେଇଥିଲେ ବୋଲି ଦୁଇ ଗାଁ ଭିତରେ ହଣାକଟା ଲାଗିଯାଇଥିଲା; ଅଥଚ ପ୍ରଧାନବଂଶ ଓ ଖଲିପା-

ବଣ ଭିତରେ ଅଭେଦ୍ୟ ପ୍ରାଚୀର ଯୁଗଯୁଗ ଧରି ଚାଲି ଆସିଥିଲା—ଏବେ ବି ଅଛି । ଯଦିଓ ପରସ୍ପର ଗାଁବାଲାଙ୍କ ଦାଉରୁ ତାର ବାହ୍ୟ ପ୍ରକାଶ ଅନେକ କମିଯାଇଛି; କିନ୍ତୁ ତାହା ଯେ ଏକ ନୂତନ ଓ ଅଭିନବ ପରୀକ୍ଷାର ସମ୍ମୁଖୀନ ହେବାବେଳେ ଏମିତି ଆସିବ, କିଏ ଜାଣିଥିଲା !

ଶ୍ୟାମଘନ ପାଣି ଭିତରକୁ ପଶିଲାବେଳେ ଦେଖିଲେ ନଈଧାରର ଆରପାଖରୁ ଗୋଟିଏ ଯୁବତୀ ତରତର ହୋଇ ପାଣି ଭିତରୁ ଉଠି ଯାଉଚି । ହଠାତ୍ ଶ୍ୟାମଘନଙ୍କୁ ଦେଖି ସେ ମୁହୂର୍ତ୍ତିକ ପାଇଁ ଅଟକିଗଲା । ଆଉ ସେଇ ମୁହୂର୍ତ୍ତିକ ଭିତରେ ସବୁ ଓଲଟ-ପାଲଟ ହୋଇଗଲା ଦୁଇଜଣଙ୍କ ଅଜାଣତରେ । ସେଇ ମୁହୂର୍ତ୍ତିକ ଭିତରେ ବଟବୃକ୍ଷର କ୍ଷୁଦ୍ର ବୀଜରେ ଏକ ବିରାଟ ବଟବୃକ୍ଷ ରହିଥିବା ଭଳି, ରହିଗଲା ଅନେକ ଅନେକ କଥା ।

ଶ୍ୟାମଘନଙ୍କୁ ଦେଖି ଯୁବତୀଟି ମୁହଁରେ କିଏ ଯେପରି ଅବିର ମୁଠାଏ ଘଷିଦେଲା । ଅଳ୍ପ ସମୟ ପାଇଁ ଯୁବତୀଟି ବିସ୍ମୟ-ବିସ୍ଫାରିତ ନୟନରେ ଶ୍ୟାମଘନ ଆଡ଼େ ଚାହିଁ ରହିଲା—ଯେପରି ଦୁଇଟି ନୀଳ କଇଁ ଫୁଟିଗଲା । ଦେହର ରଙ୍ଗ ଆଉଟା ସୁନା ଭଳି । ଘନକୃଷ୍ଣ କୁଞ୍ଚିତ କେଶର ଚୂର୍ଣ୍ଣକୁନ୍ତଳଗୁଡ଼ିକ ମୁହଁ ଉପରେ ପଡ଼ି ମନେ ହେଉଥିଲା କୃଷ୍ଣଭଦ୍ରାର ଗଭୀର ନୀଳସ୍ରୋତ ସୁନାରଙ୍ଗର ବାଲି ଉପରେ ବୋହି ଯାଇଁ ଯାଇଁ ସାନ ସାନ ଭଉଁରି ସୃଷ୍ଟି କରିଛି । ସିକ୍ତ ବସନ ତନ୍ୱୀ ଗୁରୁନିତମ୍ବ, ଘନବକ୍ଷ ଓ ଜଘନସ୍ଥଳର ସୁସ୍ପଷ୍ଟ ବର୍ତ୍ତୁଳତା ଶ୍ୟାମଘନଙ୍କ ପ୍ରତ୍ୟେକ ଶିରାରେ ନିଆଁର ସ୍ରୋତ ଛୁଟାଇଦେଲା । ଯେଉଁ ଆନନ୍ଦରେ ଅଦୂରର ପଳାଶବନ ଜଳୁଚି, ସେଇ ନିଆଁ ଯେପରି ତାଙ୍କର ପ୍ରତ୍ୟେକ ଶିରାରେ ଖେଳିଗଲା । ଶ୍ୟାମଘନ ଏତେ ରୂପ ଆଗରୁ କେବେ ଦେଖି ନଥିଲେ; କିମ୍ବା ଦେଖିଥିଲେ ମଧ୍ୟ ବୁଝିପାରି ନଥିଲେ । ତାଙ୍କର ମନେହେଲା, ଶ୍ରୀରାଧା ଯମୁନାରେ ଗାଧୋଇ ଶ୍ୟାମଙ୍କୁ ଦେଖିପକାଇବା ଭୟରେ ତରତର ହୋଇ ଘରକୁ ଫେରିଯାଉଛନ୍ତି ।

ଯୁବତୀଟିର ଦେହରେ ମଧ୍ୟ ସେଇ ନିଆଁ ଲାଗିଗଲା ପରି । ଅପାଙ୍ଗଦୃଷ୍ଟିରେ ଶ୍ୟାମଘନଙ୍କୁ ଥରେ ଚାହିଁ ଦେଇ ସେ 'ନ ଯଯୌ ନ ତସ୍ଥୌ' ଅବସ୍ଥାରେ କିଛିକ୍ଷଣ ଛିଡ଼ା ହୋଇଗଲା । ଶ୍ୟାମଘନଙ୍କ ସୁନ୍ଦର ଶ୍ୟାମ ବଳିଷ୍ଠ ଦେହ, ଉଦାସ ଚାହାଣି ଦେଖି ତାର ମନେହେଲା ସତେ ଯେପରି ଏଙ୍କରିପାଇଁ ସେ ନିଜ ଅଜାଣତରେ ଅପେକ୍ଷା କରି ବସିଥିଲା । ତା ନହୋଇଥିଲେ ସିଏ ବଡ଼ ହେବା ଦିନରୁ କେବେ ନଈକୁ ଗାଧୋଇ ଆସେ ନାହିଁ, ଆଜି ସକାଳୁ ଜିଦ୍ କରି ଗୋସିମା'ଙ୍କ ଅନୁମତି ଆଦାୟ କରି କାହିଁକି ଆସିଥିଲା । ଏଙ୍କୁ ଦେଖିବା ମାତ୍ରକେ କାହିଁକି ଗୋସିବାପାଙ୍କ ପ୍ରିୟ ଗୀତଟି ବାରମ୍ବାର ମନେପଡ଼େ—'ବଲମାରେ ଚୁନରିୟା ମୈକୁ ଲାଲ ରଙ୍ଗ ଦେ'; କିନ୍ତୁ ମୁହଁରୁ ତାର ଭୟାର୍ତ୍ତ ସ୍ୱରରେ

ବାହାରିଗଲା, ହାୟ ଆଲ୍ଲା ! ଭୟ ତା'ର ଶ୍ୟାମଘନଙ୍କୁ ନୁହେଁ । ମୁହୂର୍ତ୍ତିକ ଭିତରେ ତା'ର ଜୀବନରେ ଯେଉଁ ଓଲଟପାଲଟ ହୋଇଗଲା ସେଇଥିପାଇଁ । ମନ ତା'ର ଏକ ଅଜଣା ଆନନ୍ଦରେ ଭରିଗଲା ସତ; କିନ୍ତୁ ଦେହ ତା'ର ଭୟରେ ଥରିଗଲା । ତା'ର 'ହାୟ ଆଲ୍ଲା'ରେ ଆନନ୍ଦ ଥିଲା ଓ ଭୟ ମଧ୍ୟ ପ୍ରକାଶ ପାଇଲା ।

"ହାୟ ଆଲ୍ଲା" ଶୁଣି ଶ୍ୟାମଘନ ଚମକି ପଡ଼ିଲେ । ତେବେ ଏ ହେଉଛି ଅବଦୁଲ୍ କକେଇଙ୍କ ଝିଅ ହସିନୁବାନୁ, ଯାହାକୁ ସେ ପିଲାବେଳେ ଏଇ କୁଶଭଦ୍ରାର ପାଣିରେ ବୁଡ଼ିଯାଉଥିବା ବେଳେ ସେ ନିଜର ଜୀବନକୁ ବିପନ୍ନ କରି ରକ୍ଷା କରିଥିଲେ । ତେବେ କଣ କୁଶଭଦ୍ରା ସତରେ ହସିନୁକୁ ଟାଣି ନେଉ ନ ଥିଲା, ଗୋଟାଏ ଖେଳଖି କରୁଥିଲା ! ଶ୍ୟାମଘନ କୁଶଭଦ୍ରା ଆଡ଼େ ଚାହିଁଲେ ଆଖି ତରିକି । ତାଙ୍କର ମନେହେଲା କୁଶଭଦ୍ରା ଖିଲିଖିଲି କରି ହସିଉଠିଲା । ଶ୍ୟାମଘନ ପାଣିରେ ଗୋଟାଏ ଚାପୁଡ଼ା ମାରି ମନେ ମନେ କହିଲେ, ଦୁଷ୍ଟ, ଏକଣ କଲୁ । ଶ୍ୟାମଘନଙ୍କ ମୁହଁରେ ଆନନ୍ଦ, ଭୟ, ବିସ୍ମୟ, ହତାଶ ଏକାସାଙ୍ଗରେ ଖେଳିଗଲା । ତାଙ୍କର ମୁହଁରୁ ବାହାରିଗଲା, ହାୟ ରାଧାବଲ୍ଲଭ ! ଇଏ କଣ କଲ !

ରାଧାବଲ୍ଲଭଙ୍କ ନାଁ ଶୁଣି ହସିନୁ ଚମକି ପଡ଼ିଲା । ସେ ଜାଣେ ଯେ ପ୍ରଧାନବଂଶର ଲୋକେ କଥା-କଥାକେ ସେମାନଙ୍କର କୁଳଦେବତା ରାଧାବଲ୍ଲଭଙ୍କ ନାଁ ନିଅନ୍ତି । ତେବେ କଣ ଏ ଶ୍ୟାମଘନ, ଯିଏ ମୋତେ ଏଇ ନଈରେ ବୁଡ଼ିଯାଉଥିବାରୁ ବଞ୍ଚାଇଥିଲେ । ଏ କଥା ଭାବିବା ମାତ୍ରକେ ହସିନୁର ପ୍ରତି ଅଙ୍ଗରେ ପୁଲକ ଖେଳିଗଲା; କିନ୍ତୁ ଭୟରେ ସେ ପ୍ରାୟ ଅଚେତ ହୋଇପଡ଼ିଲା । କୌଣସି ମତେ ନିଜକୁ ସମ୍ଭାଳି ନେଲା; କିନ୍ତୁ ତାର ମୁହଁରୁ ମଧ୍ୟ ବାହାରିଗଲା, 'ହାୟ ଆଲ୍ଲା, ମୈ ଅବ୍ କ୍ୟା କରୁଁ !'

ଦୁହେଁ ହିଁ ବୁଝି ପାରିଲେ ପ୍ରେମରେ ପଡ଼ିଛନ୍ତି ଏବଂ ଏହାର ପରିଣାମ ଭାବି ଦୁହେଁ ହିଁ ଶଙ୍କିତ ହେଲେ । ଦୁହେଁ ଏପରି ଦୁଇ ଭିନ୍ନ ଧର୍ମର ଯେ, ଦୁଇଧର୍ମର ଲୋକଙ୍କ ଭିତରେ ଶହ ଶହ ବର୍ଷର ଗ୍ଲାନି, ଅବିଶ୍ୱାସ, ଶତ୍ରୁତା ଶେଷରେ ଭାରତକୁ ଖଣ୍ଡ ଖଣ୍ଡ କରିଚି । ତେବେ ବି ସେ ଶତ୍ରୁତା ଯାଇନାହିଁ, ସାମାନ୍ୟ ସାମାନ୍ୟ କାରଣରୁ ଦୁହେଁ ଦୁହିଁଙ୍କୁ ହାଣିପକାଉଛନ୍ତି, ନାନା ବୀଭତ୍ସ କାଣ୍ଡରେ ମାତିଉଠୁଛନ୍ତି' ମାତ୍ର କିଛିଦିନ ପୂର୍ବେ ମସ୍‌ଜିଦ ସାମନାରେ ବାଜା ବଜାଇବା ନେଇ କେତେ ହତ୍ୟାକାଣ୍ଡ ହୋଇ-ଯାଇଛି, କେତେ ନିରୀହ ଲୋକଙ୍କ ଘର ଜଳି ପାଉଁଶ ହୋଇଯାଇଛି । ପୁଣି ଏ ସନ କୁଶୁପୁରର ଲୋକେ ଦୋଳପୂର୍ଣ୍ଣିମାକୁ ଅହମଦପୁରର ମସଜିଦ୍ ସାମନାରେ ବାଜା ବଜାଇ ଗୋବିନ୍ଦପୁର ମେଳଣକୁ ଯିବାର ଗୁପ୍ତ ମସୁଧାରେ ମାତିଲେଣି । ଏହାର ସୁରାକ ପାଇ ଅହମଦପୁରର ମୁସଲମାନମାନେ ମଧ୍ୟ ସଜବାଜ ହେଲେଣି । ଗୋବିନ୍ଦପୁର ଓ

କୃଷ୍ଣପୁର ଭିତରେ ମାଡ଼ପିଟି ଲାଗି ତିରିଶ ବର୍ଷ ହେବ ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉଙ୍କ ଗୋବିନ୍ଦପୁର ମେଳଣକୁ ଯିବା ବନ୍ଦ ହୋଇଥିଲା । ଖାଲି ସେତିକି ନୁହେଁ, ଦୁଇ ଗାଁ ଭିତରେ କଳିଗୋଳ ଏତେ ଦୂରକୁ ଯାଇଥିଲା ଯେ ଏକ ଗାଁର ଲୋକ ଦୈବାତ୍ ଅନ୍ୟ ଗାଁର କୌଣସି ଲୋକକୁ ନିଜ ଗାଁ ପାଖରେ ଏକୁଟିଆ ପାଇଲେ ନିସ୍ତୁକ ମାଡ଼ ଦେଉଥିଲେ । ଏପର୍ଯ୍ୟନ୍ତ ବି ଶହେ ସରିକି ଫୌଜଦାରୀ ମକଦ୍ଦମା ଅଦାଲତରେ ପଡ଼ିରହିଚି; କିନ୍ତୁ ଏ ସନ ଦୁଇ ଗାଁର ଲୋକେ ଏକାଠି ମିଶି ନିଷ୍ପତ୍ତି କରିଛନ୍ତି, ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉ ଗୋବିନ୍ଦପୁର ମେଳଣକୁ ଯିବେ ଏବଂ ଅହମଦପୁର ଗାଁ ଭିତର ଦେଇ ଯିବେ । ବୁଢ଼ା ବୁଢ଼ୀମାନେ ମଧ୍ୟ କହିଲେ, ଠାକୁରେ ଆଗରୁ ଯେପରି ଗୋବିନ୍ଦପୁର ମେଳଣକୁ ଯାଉଥିଲେ ସେଇପରି ଯିବେ, ନିଜ ନିଜ ଭିତରେ ଭେଦଭାବ ଭୁଲିଯାଇ ଠାକୁରଙ୍କ ଗୋଟିଏ ସେବା ପୁଣି ଫେରାଇ ଆଣିବା ଉଚିତ ।

କୃଷ୍ଣପୁରର ହିନ୍ଦୁମାନଙ୍କର ଏ ବର୍ଷ ଏପରି ଭକ୍ତିଭାବ ଓ ଅଭେଦଭାବ ଫେରି-ଆସିବାକୁ ଦେଖି ଶ୍ରୀ ଶ୍ରୀ ରାଧାବଲ୍ଲଭ ଜୀଉ ଶ୍ୟାମଘନ ଓ ହସ୍‌ନୁ ଭିତରେ ଏକ କୂଟ ଲଗାଇଦେଲେ ପରା ! ଦୁହେଁ ଦୁହିଁଙ୍କ ପରିଚୟ ପାଇବା ପୂର୍ବରୁ ପ୍ରେମରେ ପଡ଼ିଲେ । ଏ ପ୍ରେମ ଯେ ଖାଲି କୃଷ୍ଣପୁର ଓ ଅହମଦପୁର ଭିତରେ ଜଳୁଥିବା ନିଆଁକୁ ଆହୁରି ତେଜି ନ ଦେବ, ସାରା ଭାରତରେ ନିଆଁ ଜାଳି ନ ଦେବ, କିଏ କହିପାରିବ । ଦୁଇ ଗାଁ ଭିତରେ ଏପରି ଛକାଛକି ହୋଇ ଅଛନ୍ତି ଯେ ଏ ଗାଁରେ ଖୁଡ଼୍ କିନା ହେଲେ, ସେ ଗାଁରେ ତୁରନ୍ତ ତାର ଖବର ପହଞ୍ଚିଯାଉଚି, ଏଥିରେ ଏ କଥା କଣ ଅଛପା ରହିଯିବ ।

ହସ୍‌ନୁ ପୁଣି ଥରେ କହିଲା, 'ହାୟ ଆଲ୍ଲା !'

ଶ୍ୟାମଘନ ମଧ୍ୟ ପୁଣି ଥରେ କହିଲେ, 'ରାଧାବଲ୍ଲଭ, ଏ କଅଣ କଲ !'

ହସନୁ ଥରି ଥରି ଦୌଡ଼ିବାକୁ ଲାଗିଲା ଘର ଆଡ଼କୁ; କିନ୍ତୁ ତାର ମନେ ହେଲା ସେ ଯେପରି ଘର ଆଡ଼କୁ ନ ଯାଇ ଶ୍ୟାମଘନ ଆଡ଼େ ଯାଉଛି । ଅସହାୟ ଭାବରେ ଘରଆଡ଼କୁ ଚାହିଁ ସେ ପୁଣି ଦୌଡ଼ିବାକୁ ଲାଗିଲା । ଶ୍ୟାମଘନ ପାଣି ଭିତରେ ସ୍ଥାଣୁ ଭଳି ଛିଡ଼ା ହୋଇ ରହିଲେ ହସ୍‌ନୁ ଆଡ଼େ ଚାହିଁ । ଥରେ ମାତ୍ର ସେ ପାଟିକରି ଡାକିଲେ 'ହସ୍‌ନୁ !' ଆଖିରୁ ତାଙ୍କର ଅଶ୍ରୁ ଝରି କୁଶଭଦ୍ରାର ସ୍ରୋତରେ ଟପ୍ ଟପ୍ ପଡ଼ିବାକୁ ଲାଗିଲା । କୁଶଭଦ୍ରା ଯେପରି ଖିଲିଖିଲି ହସି ସେ ଅଶ୍ରୁକୁ ବୋହି ନେଇଗଲା ମହାସମୁଦ୍ରକୁ ।

ହସ୍‌ନୁ ଚାଲିଯିବା ପରେ ଶ୍ୟାମଘନ ଟିକିଏ ପ୍ରକୃତିସ୍ଥ ହୋଇ ଭାବି ବସିଲେ ଆଗପଛ କଥା । ସେ ନିଜକୁ ନିଜେ କହିଲେ, ଏ ସବୁ ତୁଚ୍ଛା ରୋମାଣ୍ଟିସିଜମ୍ ।

କୁଣଭଦ୍ରାକୁ ଜୀବନ୍ତ ଭାବି ତା ସହିତ କଥା କହିବା, ରାଧାବଲ୍ଲଭଙ୍କର ପଥରମୂର୍ତ୍ତିକୁ ଭଗବାନ ଭାବି ତାଙ୍କୁ ହିଁ ଏ ସବୁ ପାଇଁ ଦାୟୀ କରି ଆନନ୍ଦ ବା ବେଦନା ପାଇବା—ଏ ସବୁ ମିଥ୍ୟା, କୁତ୍ସା ରୋମାଣ୍ଟିସିଜ୍‌ମ୍ ନୁହେଁ ତ କଅଣ ? ଆଜିକାଲି ବିଜ୍ଞାନଯୁଗର ଏ ସବୁ ହାସ୍ୟାସ୍ପଦ, କାରଣ ତା ଉପରେ ତ କାହାର କ୍ରିୟାକଳାପ ନିର୍ଭର କରେ ନାହିଁ ବା କରିବା ଉଚିତ ନୁହେଁ । ମୋର ବୈଜ୍ଞାନିକ ଭଳି ଭାବିବା ଉଚିତ । ଯାହାକୁ ମୁଁ ପ୍ରେମ କହୁଚି, ତା କେବଳ ଲାଳସା, ମାଂସର ଲାଳସା । ହସିନାର ଦେହ ତ ମୋତେ ଆକୃଷ୍ଟ କରିଚି ? ଏ ଲାଳସାର ସ୍ରୋତରେ ମୋର କଣ ଭାସିଯିବା ଉଚିତ ? ହସିନା ମୁସଲମାନ୍, ମୁଁ ହିନ୍ଦୁ । ମୁଁ ଯଦି ହସିନାକୁ ବାହା ହୁଏ, ତେବେ ସାମାଜିକ ବିଶୃଙ୍ଖଳା କଥା ଛାଡ଼ିଦେଲେ ବି ମୋର ବିବାହିତ ଜୀବନ କଅଣ ବିଷମୟ ହୋଇଯିବ ନାହିଁ ? ତାର ରୀତିନୀତି, ଖାଦ୍ୟ, ଚାଲିଚଳନ ସବୁ କେବଳ ଭିନ୍ନ ନୁହେଁ, ମୋର ଠିକ୍ ଓଲଟା । ସେଥିରେ ପୁଣି ହିନ୍ଦୁ ମୁସଲମାନ କଳିଗୋଳ ବେଳେ ଆମ ଭିତରେ କଅଣ ପ୍ରେମ ରହି ପାରିବ ? ନା, ଆଗେ ମୁଁ ନିଜକୁ ନିଜେ ବଢ଼ିବି—ଏ ଉନ୍ମାଦନା ଲାଳସାରୁ ଜାତ, ନା ପ୍ରେମରୁ; ତେବେ ଯାଇ ଯେଉଁ କଥା । ଜ୍ଞାନଲୋକମାନଙ୍କର ମନକୁ ମଧ୍ୟ ଇନ୍ଦ୍ରିୟ ଗୋଳମାଳ କରିଦିଏ । ବିପକ୍ଷରେ ତାଙ୍କର ମନ ଅନେକ ଯୁକ୍ତି ବାଢ଼ିଲା ସତ; କିନ୍ତୁ ତାଙ୍କ ମନ ତାଙ୍କୁ ଗୋଟିଏ ପ୍ରଶ୍ନ ପଚାରି ସବୁ ଯୁକ୍ତିକୁ ନୀରବ କରିଦେଲା—ତୁମେ ଯେ ଏହା ବିରୁଦ୍ଧରେ ଏତେ ଗଭୀର ଚିନ୍ତା କରୁଚ, ତାହାହିଁ କଅଣ ସୂଚାଇ ଦେଉନାହିଁ କି ଏହା କେବଳ ଯୌବନ ଆବେଗ ନୁହେଁ; ତା ସହିତ ଆଦିମ ଓ ମୌଳିକ ବେଦନା ଏବଂ ଆନନ୍ଦର ଦ୍ୱାର ମଧ୍ୟ ଖୋଲିଯାଇଚି ?

ସାରା ବିଶ୍ୱରେ କୁଆଡ଼େ ଏଇ ବେଦନା-ଆନନ୍ଦ ନିଅର ଭାବରେ ବିଛୁଡ଼ି ହୋଇ ରହିଛି । ସେଇ ଅସୀମ ବେଦନା ଯେତେବେଳେ ନାନା ଭାବରେ ସସୀମ ଭିତରେ ପ୍ରକାଶ ପାଏ ସେତେବେଳେ କୁଆଡ଼େ ନାନା ପ୍ରକାରର ଘଟଣା ଘଟେ । ଏହା ବୈଜ୍ଞାନିକର ଶେଷ ସିଦ୍ଧାନ୍ତ ବା ତୁଚ୍ଛା ମିଥ୍ୟା ରୋମାଣ୍ଟିସିଜମ୍, କିଏ କହିବ ? ଏ କି ଆକୁଳତା ଭୁବନେ ! ଏ କି ଚଞ୍ଚଳତା ପବନେ ପବନେ । ଟଲଷ୍ଟୟ କହିବା-ଭଳି ଫଳଟି ଗଛରୁ ଝଡ଼ିପଡ଼ିବାର କାରଣ ମଧ୍ୟାକର୍ଷଣ ଶକ୍ତି ହୋଇପାରେ ବା ଗଛତଳେ ଛିଡ଼ା ହୋଇଥିବା ପିଲାଟି ଲୋଲୁପଦୃଷ୍ଟିରେ ଚାହିଁ ଫଳଟିକୁ ତଳେ ପକାଇଦେବା ପାଇଁ ଭଗବାନଙ୍କୁ ପ୍ରାର୍ଥନା କରୁଥିବାରୁ ହୋଇପାରେ ବା ଉଭୟ କାରଣରୁ ହୋଇପାରେ । କିଏ ଜାଣେ ଘଟଣାମାନ କେଉଁ କାରଣରୁ ଘଟେ ? ସେ ଯାହାହେଉ, ସେଇ ମୁହୂର୍ତ୍ତରେ ଯେଉଁ ସାମାନ୍ୟ ଘଟଣାଟି ଘଟିଗଲା ତାହା ଚାହୁଁ ଚାହୁଁ ଏକ ବିରାଟ ପ୍ରବାହରେ ପରିଣତ ହେଲା । ଆଉ ଶ୍ୟାମଘନ ଓ ହସିନା ଭାସିଗଲେ ସେ ସ୍ରୋତରେ

ଏବଂ ତାଙ୍କ ସହିତ କୃଷ୍ଣପୁର ଓ ଅହମଦପୁରର ହିନ୍ଦୁ-ମୁସଲମାନମାନେ ନାନା ପ୍ରକାରରେ ।

× × × ×

ଟଳି ଟଳି ଘର ଭିତରକୁ ପଶି ବାରେଣ୍ଡାରେ କଚ୍ଛିଡ଼ ପଡ଼ିଲା ହସନୁ । ରହିମଙ୍କ ସ୍ତ୍ରୀ ଜେବୁନ୍ନିସା ଅଗଣା ଲିପୁଥିଲେ । ନାତୁଣୀକୁ ଏପରି ପଡ଼ିଯିବାର ଦେଖି ପାଟିକରି ଡାକ ଛାଡ଼ିଲେ, "ଆରେ ଓ ମିଆଁ, ଆରେ ଜଲଦି ଆଓ ନ ! ଦେଖୋ ଦେଖୋ ହସନୁ କ୍ୟା ହୋ ଗିୟା । ହାୟ ମେରି ଆଲ୍ଲା ! ମୈ ମନା କରତି ଥି ନଦୀକୁ ଯାନେକୁ । ଆରେ, କୃଷ୍ଣପୁରକା କୋଇ ହିନ୍ଦୁ ତୁମ୍‌କୁ କୁଛ୍ କହିସ୍ କ୍ୟା, କୁଛ୍ ବେଇଜ୍ଜତି କିୟା କ୍ୟା ? ଆରେ ଓ ମିଆଁ !"

ରହିମ୍ ବାଡ଼ବୁଜା ପକାଇ ଦେଇ ଦୌଡ଼ି ଆସିଲେ । ହସନୁକୁ ଏପରି ଅବସ୍ଥାରେ ଦେଖି ସେ ଆବାକାବା ହୋଇ ଛିଡ଼ା ହୋଇ ରହିଲେ । ଜେବୁନ୍ନିସା ତାଙ୍କୁ ଧକ୍କାଏ ମାରି ପାଟି କରି କହିଲେ, "ଆରେ ଉଲ୍ଲୁକା ମାଫିକ୍ କ୍ୟା ଖଡ଼ା ହୁୟା ହୈ ? ଆରେ କୁଛ୍ତ ତୋ କରୋ । ହାୟ ଖୁଦା ! ଆରେ ଶ୍ୟାମଘନ୍ ଆୟା ହେଁ ଡାକତର୍ ହୋ କେ, ଉସ୍‌କୁ ବୁଲାଓ ଜଲଦି ।"

ସ୍ତ୍ରୀଙ୍କ କଥାରେ ରହିମଙ୍କ ହୋସ୍ ଫେରିଆସିଲା । ସେ ହଠାତ୍ ଚଞ୍ଚଳ ହୋଇ ମୁଣ୍ଡରେ ଗାମୁଛାଟା ବାନ୍ଧି ଦେଇ କହିଲେ, 'ଅବ୍‌ଭି ଯାତା ହୁଁ, ତୁମ ଉସ୍ କା ଶିର ମେ ପାନି ଡାଲୋ ।" ରହିମ୍ ଧଇଁସଇଁ ହୋଇ ଦୌଡ଼ିଲେ କୃଷ୍ଣପୁର ଶ୍ୟାମଘନଙ୍କୁ ଓ ସଙ୍ଗରେ ଗ୍ରାମ ପଧାନଙ୍କୁ ଡାକି ଆଣିବାକୁ; କିନ୍ତୁ ତାଙ୍କୁ କୃଷ୍ଣପୁର ପର୍ଯ୍ୟନ୍ତ ଯିବାକୁ ପଡ଼ିଲା ନାହିଁ । ନଦୀ ମଝିରେ ଶ୍ୟାମଘନ ସେମିତି ଥାଣ୍ଡୁ ଭଳି ଛିଡ଼ା ହୋଇଥାନ୍ତି । ରହିମ୍ ତାଙ୍କୁ ଦେଖି ତରତର ହୋଇ ସବୁ କଥା କହି ହାତ ଧରି ଟାଣିବାକୁ ଲାଗିଲେ । ଶ୍ୟାମଘନ ସବୁ ବୁଝିପାରିଲେ ନାହିଁ; ଖାଲି ଏତିକି ବୁଝିଲେ ଯେ ହସନୁ ବେହୋସ୍ ହୋଇ ତଳେ ପଡ଼ିଯାଇଛି । କିଛିକ୍ଷଣ ସେ ବଲବଲ କରି ରହିମ୍ ଅଜା ଆଡ଼େ ଚାହିଁ ରହିଲେ । ମନେ ମନେ କେବଳ କହୁଥାନ୍ତି—ରାଧାବଲ୍ଲଭ ଏ କ'ଣ କଲ ! ମୁଁ ଯେ କିଛି ବୁଝି ପାରୁ ନାହିଁ, ଘଟଣାମାନଙ୍କର ଏ ଧଇଁସଇଁ ଗତିରେ ମୁଁ ଯେ କିଛି ବିଚାର କରିବାର ବେଳ ପାଉନାହିଁ ।

ରହିମ୍ ଅଧୀର ଭାବରେ କହିଲେ, "ଆରେ ନାତି ! ଐସା ବଲ୍ ବଲ୍ କର୍‌କେ ଚକାତା ହୈ କ୍ୟା ନ ? ଆରେ ଜଲ୍‌ଦି ଆଓ ।"

ଶ୍ୟାମଘନ କହିଲେ, "ଅଜା···ମୁଁ···ହସନୁ··ନା···ନା···"

ରହିମ୍ ଚିତ୍କାର କରି କହିଲେ, "ଆରେ ଏ କଣ ସରମ୍ ବେଳ, ହସନୁ ତ

ତୋର ବନ୍ଧନ୍ ଅଛି...”

ଶ୍ୟାମଘନ ଦୀର୍ଘ ନିଶ୍ୱାସ ପକାଇ କହିଲେ, “ଆଚ୍ଛା ଅଜା, ତୁମେ ଯାଅ, ମୋର ଔଷଧ ବାକ୍ସ ଓ ଷ୍ଟେଥୋଷ୍ଟ ନେଇ ଆସିବ । ମୁଁ ଏମିତି ସିଧା ଲୁଗାରେ ଯାଉଛି ।”

ରହିମ୍ ଦୌଡ଼ିଲେ ପୁଣି କୃଷ୍ଣପୁର । ଶ୍ୟାମଘନ ମଧ୍ୟ ଦୌଡ଼ି ଦୌଡ଼ି ରହିମ୍ ଘରକୁ ଯାଇ ବାହାରପଟୁ ଡାକିଲେ ।

ଜେବୁନ୍ନିସା ଘର ଭିତରୁ କାନ୍ଦି କାନ୍ଦି ଡାକିଲେ, “ଆରେ ଶ୍ୟାମ ଆଇସ୍ ...ଆଓ ବେଟା; ଯୁଗ୍ ଯୁଗ୍ ଜୟୋ ବେଟା, ଅନ୍ଦର୍ ଆଓ !”

ଶ୍ୟାମଘନ ଘର ଭିତରକୁ ଯାଇ ଦେଖିଲେ ଏକ ଅପୂର୍ବ ଦୃଶ୍ୟ । ହସନୁ ଖଣ୍ଡେ ସୁନ୍ଦର ଧଳା ଶାଢ଼ି ପିନ୍ଧି ମୁଣ୍ଡରେ କାଳିଆ କନାର ଓଢ଼ଣି ବାନ୍ଧି ପଶ୍ଚିମକୁ ମୁହଁ କରି ଦୁଇ ହାତପାପୁଲି ଉପରକୁ ଟେକି ଫତିହା ପଢ଼ୁଛି—

'ଆଉ ଜୋ ବିଲ୍ଲାହେ ମିନଶ୍ ଶୈତାନାର୍ ରଜିମ୍ ।

ବିସ୍ ମିଲ୍ଲାହିର୍ ରହିମାନର୍ ରହିମ୍...।'

ଆଖିରୁ ତାର ଝରଝର ଲୁହ ଝରିପଡ଼ୁଛି । ହସନୁ ସିନା କହୁଥାଏ—ମୋତେ ଶୈତାନ୍‌ଠାରୁ ବଞ୍ଚାଅ ଆଲ୍ଲା, ତୋର ନାଁରେ ମୁଁ ସବୁ କାର୍ଯ୍ୟ ଆରମ୍ଭ କରୁଚି; କିନ୍ତୁ ଫତିହା ସାଙ୍ଗରେ ଗୋଟିଏ ଗୀତ ଗୋଳେଇ ମିଶିଯାଉଥାଏ, ଅଜାଙ୍କ ପ୍ରିୟ ଗୀତ, ମେରେ ଅଙ୍ଗନମେ ଆୟେ ଘନଶ୍ୟାମ, ମୈ ହୋ ଗୟି ବାବରି,...ମୋ ଅଗଣାକୁ ଘନଶ୍ୟାମ ଆଚମ୍ବିତେ ଆସିଲେ, ମୁଁ ପାଗଳୀ ହୋଇଗଲି କି ।

ଶ୍ୟାମଘନଙ୍କ ଖାଲି ଇଚ୍ଛା ହେଲା ସେ ବି ସେମିତି ବସି ନମାଜ ପଢ଼ନ୍ତେ ।

ରହିମ୍ ଓ ଗ୍ରାମ ପଧାନ ସେତେବେଳକୁ ପହଞ୍ଚି ସାରିଥିଲେ । ଗ୍ରାମ ଅଜାଙ୍କ ପାଟି ଶୁଣି ହସନୁ ଚମକି ପଡ଼ି ଚାହିଁ ଦେଖିଲା, ତାର ଅତି ନିକଟରେ ଠିଆ ହୋଇଛନ୍ତି ତାର ପ୍ରିୟ । ସମସ୍ତ ଦେହ ତାର ଥରଉଠିଲା । ସେ ଆଉ ସମ୍ଭାଳି ନ ପାରି ଗଡ଼ି-ପଡ଼ିଲା ସେଇଠି । ଶ୍ୟାମଘନ ଏଥର ଆଉ ଲୁହ ସମ୍ଭାଳି ପାରିଲେ ନାହିଁ ।

ଜେବୁନ୍ନିସା ପୁଣି କାନ୍ଦିଉଠିଲେ । ଗ୍ରାମ ପଧାନ ମ୍ଳାନ ଭାବରେ ହସି କହିଲେ, “ଭାଉଜ, ହସନୁର କିଛି ହୋଇନାହିଁ ।”

ଜେବୁନ୍ନିସା କହିଲେ, “ନେହିଁ ଜୀ, ସେ କହୁଥିଲା ଗାଧୋଇଲା ବେଳେ ସେ ତାର ଅବ୍ବାକୁ ଦେଖିଲା, ଅବ୍‌ଦୁଲ୍ କୂଆଡ଼େ ତାକୁ ଡାକିଲା ।”

ରହିମ୍ ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲେ । ଗ୍ରାମ ପଧାନ ଦୀର୍ଘ ନିଶ୍ୱାସ ପକାଇ କହିଲେ, “ସେ ସବୁ କିଛି ନୁହେଁ, ଆମେ ବାହାରକୁ ଯାଉଛୁ, ତୁମେ ତାକୁ ଗରମ ଦୁଧ ପିଇବାକୁ ଦିଅ ।”

ଶ୍ୟାମଘନଙ୍କୁ ଘରକୁ ଯିବାକୁ କହି ଗ୍ରାମ ପଧାନ ରହିମ୍‌ର ହାତ ଧରି ବାହାରକୁ ଆଣି କହିଲେ, "ବୁଝିଲ ସଙ୍ଗାତ ? ବଡ଼ ଆଶ୍ଚର୍ଯ୍ୟ !"

ରହିମ୍ ଆକୁଳଭାବରେ ପଚାରିଲେ, "ସଙ୍ଗାତ ! କଣ ହୋଇଛି କହ, ଲୁଚାଅ ନାହିଁ । ହସନୁ ବଞ୍ଚିବ ତ ?"

ଗ୍ରାମ ପଧାନ ସେତେବେଳକୁ ଟିକେ ଅଧୀର ହୋଇପଡ଼ିଲେଣି ନାନା କଥା ଭାବି, ରହିମ୍‌କୁ ଗୋଟିଏ ନିଭୃତ ଥାନକୁ ନେଇ ଯାଇ କହିଲେ, "ବୁଝିଲ ସଙ୍ଗାତ, ହସନୁ ଓ ଶ୍ୟାମ ପ୍ରେମରେ ପଡ଼ିଛନ୍ତି । ଦୁହିଁଙ୍କଠି ମୁଁ ତାର ସବୁ ଲକ୍ଷଣ ଦେଖିବାକୁ ପାଇଲି—ସ୍ତମ୍ଭ, ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, ମୂର୍ଚ୍ଛା ।"

ରହିମ୍ ଆଖି ବଡ଼ ବଡ଼ କରି ଗାଲରେ ହାତ ଦେଇ କହିଲେ, "ତୋବା, ତୋବା ! ଶାଲେ ବଡ଼ା ନଟଖଟ୍ କା ବାତ୍ କହ୍ୟା । ଅବ୍ ଭି ଉପାୟ କଅଣ ସଙ୍ଗାତ ! ଏଙ୍କ ବାପମାନେ ହଣାହଣି ହୋଇ ମରିଛନ୍ତି । ଆଉ ଇସ୍ୱେ ଦ ଜଣ ଯିଗ୍ନାଲ୍ ଲଜାନ୍ ଅନ୍ ଅମନ୍ତୁ ଅଲୈହିମ୍...ଖୁଦା, ତୁହି ତ ଶେଷ ବିଚାର କରିବୁ, ତୁହି ବାଟ ଦେଖା ।"

ଗ୍ରାମ ପଧାନ ରହିମଙ୍କ କାନ୍ଧରେ ହାତ ରଖି କହିଲେ, "ହଁ ସଙ୍ଗାତ, ତାଙ୍କ ଛଡ଼ା ଆଉ କିଏ ଅଛି । ତାଙ୍କର କି ଉଦ୍ଦେଶ୍ୟ ଅଛି ଏଥିରେ, କିଏ ଜାଣେ...ଭ୍ରାମୟନ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା...ସବୁ ତାଙ୍କରି ଲୀଳା ।"

ଦୁହେଁ ନୀରବରେ ତଳକୁ ମୁଣ୍ଡ ପୋତି ଧୀରେ ଧୀରେ ଚାଲିଗଲେ । କେବୁନ୍ନିସା ପାଣି ଆଣି ହସନୁର ମୁହଁରେ ଛାଟିବାକୁ ଲାଗିଲେ । ହସନୁ ଧୀରେ ଧୀରେ ଆଖି ଖୋଲି କାହାକୁ ଯେପରି ଅସହାୟ ଭାବରେ ଖୋଜିଲା । ତା'ପରେ ହଠାତ୍ ତାର ଗୋସିମା'ଙ୍କୁ ଜାବୁଡ଼ି ଧରି କହିଁକହିଁ ହୋଇ କାନ୍ଦି କହିଲା, "ଅମ୍ମିଜାନ୍, ମୈ ମର ଗୟୀ ।" ତାପରେ ହଠାତ୍ ଗମ୍ଭୀର ହୋଇ କହିଲା, "ନେହିଁ ମ, ମେରା କୁଛ ହୁଆ ନେହିଁ । ଆଲ୍ଲା ସବ୍ ଠିକ୍ କର୍ ଦେଙ୍ଗେ ।" ପ୍ରକୃତିସ୍ଥ ହୋଇ ପୁଣି ସେ ଫତିହା ପଢ଼ିବାକୁ ଲାଗିଲା :

'ଆଲ୍ ହମ୍‌ଦୁ ଲିଲ୍ଲା ହେ ରବ୍ ବିଲ୍ ଆଲମୀନ୍
ଅର୍ ରହିଆନିର୍ ରହିମ୍ ମାଲ୍‌କେ ୟୌମିଦ୍ ଦୀନ୍ ।'

ହେ ଆଲ୍ଲା ତୁ ଦୟାର ସାଗର, ମୁଁ ତୋର ଆରାଧନା କରୁଛି, ତୋର ସାହାଯ୍ୟ ମାଗୁଛି ।

ଶ୍ୟାମଘନ ଗାଁକୁ ଫେରି ଘରକୁ ନଯାଇ ସେମିତି ଓଦା ଲୁଗାରେ ସିଧା ରାଧାବଲ୍ଲଭଙ୍କ ମନ୍ଦିରକୁ ଗଲେ । ସେତେବେଳେ ରାଧାବଲ୍ଲଭ ହୋରି ଖେଳିବାକୁ ବାହାରିଲେଣି । ହୋଲିଆମାନେ ଗାଉଥାନ୍ତି :

'ନବ ବୃନ୍ଦାବନେ ନବ ନାଗର ତ୍ରିଭଙ୍ଗ,
ବୋଲନ୍ତି ସଖିଙ୍କ ଅଙ୍ଗେ ପୀତଧର ରଙ୍ଗ ।'

ଶ୍ୟାମଘନ ନାସ୍ତିକ; କିନ୍ତୁ ଆଜି ସେ ସିଧାସଳଖ ରାଧାବଲ୍ଲଭଙ୍କ ମୁହଁକୁ ଚାହିଁ ପଚାରିଲେ, "ଏ ସବୁ କଅଣ ହଉଚି ଶୁଣେ ? କି କୈଫିୟତ ଅଛି ତୁମର ? ମୁଁ କଅଣ ତେବେ ମୁସଲମାନ ହେବି ?" ତାଙ୍କର ମନେହେଲା ରାଧାବଲ୍ଲଭ ଟିକିଏ ହସିଦେଲେ, ଆଉ କି ସୁନ୍ଦର ସେ ହସ···ସବୁ ଧର୍ମ, ଜାତି, ନୀତି, ମାନ, ଅଭିମାନ, ଅହଙ୍କାର ଯେପରି ତୁଚ୍ଛ ମନେ ହେଲା ସେ ହସଟିକକ ନିକଟରେ ।

× × × ×

ସେଇଦିନ ଅଧରାତିରେ କୁଣଭଦ୍ରାର ଏପାଖ ଅଡଡ଼ା ଉପରେ ଗ୍ରାମ ପଧାନଙ୍କ ଘର ପାଖରେ ଗୋଟିଏ ଦୀପ ଜଳିଲା । କିଛିକ୍ଷଣ ପରେ ସେ ପାଖ ଅଡଡ଼ା ଉପରେ ରହିମର ଘର ପାଖରେ ଆଉ ଗୋଟିଏ ଦୀପ ଜଳିଲା । ଶ୍ୟାମଘନଙ୍କ ସମସ୍ତ ଦେହ ରୋମାଞ୍ଚ ହୋଇ ଉଠିଲା । ସେ ବିଶ୍ୱାସ କରିପାରିଲେ ନାହିଁ — ଏ ପ୍ରହେଳିକା ନା ସତ୍ୟ । ସେ ବାତୁଳ ଭଳିକରେ ଦୀପ ଜାଳିଥିଲେ ଏଇ କ୍ଷୀଣ ଆଶାରେ ଯେ ହସନୁ ଯଦି ତାର ଘର ବାହାରକୁ ଆସିଥାଏ ବା ଝରକା ପାଖରେ ନଈ ଏପଟକୁ ଚାହିଁ ଶୋଇଥାଏ, ତେବେ ଦୀପକୁ ଦେଖି ହୁଏତ ଭାବିବ ସେ ସଙ୍କେତ ଦେଉଛନ୍ତି; କିନ୍ତୁ ଏ ଯେ ଅଭାବନୀୟ ଘଟିଗଲା । ଶ୍ୟାମଘନ ଆରତି କରିବା ଭଳି ଦୀପଟିକୁ ହଲାଇଲେ । ସେ ପାଖରେ ଦୀପଟି ମଧ୍ୟ ସେମିତି ହଲିଲା ।

ଶ୍ୟାମଘନଙ୍କ ଶ୍ୱାସରୁଦ୍ଧ ହୋଇଗଲା । ସେ ଦୀପ ଫୋପାଡ଼ି ଦେଇ ଦୌଡ଼ିଲେ ଆର ପଟକୁ । ଦୌଡ଼ୁ ଦୌଡ଼ୁ ସେ ଭାବୁଥାନ୍ତି, କି ଆଶ୍ଚର୍ଯ୍ୟ ! ପୃଥିବୀ ତାର ସମୁଦ୍ର, ଘରବାଡ଼ି, ନଈନାଳ, ଗଛବୃଛ ନେଇ ମହାଶୂନ୍ୟରେ ବୁଲି ବୁଲୁଚି । ସେ ଏକ ଘଟଣା ଏବଂ ସେ ଆଉ ଏକ ଘଟଣାର ସାମାନ୍ୟ ଅଂଶ ମାତ୍ର । ପୁଣି ସେ ଘଟଣା ଭିତରେ ଘଟିଯାଉଚି ସମସ୍ତ ମାନବସମାଜ କ୍ଷେତ୍ରରେ କେତେ ଘଟଣା । ତା' ଭିତରେ ଘଟୁଚି ବିଭିନ୍ନ ସାମାଜିକ ଘଟଣା; ଆଉ ତା ଭିତରେ ପୁଣି ଅସଂଖ୍ୟ ବ୍ୟକ୍ତିଗତ ଘଟଣା । ସମସ୍ତ ବିଶ୍ୱରେ ଯେଉଁ ଘଟଣାମାନ ଘଟିଚି ବା ଘଟୁଚି, ତା ସହିତ ମୋର ଏଇ ଘଟଣାର କୌଣସି ସମ୍ବନ୍ଧ ନାହିଁ ? ହୁଏତ ଏଇ ମୁହୂର୍ତ୍ତରେ କେଉଁଠି ଯୁଦ୍ଧ ଲାଗିଚି କିମ୍ବା କେଉଁଠି ହିନ୍ଦୁ ମୁସଲମାନ ଦଙ୍ଗା ଲାଗିଚି, ତା ସହିତ କଅଣ ଏହାର କୌଣସି ସମ୍ପର୍କ ନାହିଁ ?

କୁଣଭଦ୍ରାର କ୍ଷୀଣ ସ୍ରୋତ ପାର ହୋଇ କିନ୍ତୁ ଶ୍ୟାମଘନ ଫେରିଯିବାକୁ ଭାବିଲେ । ତାଙ୍କର ମନେହେଲା ସେ ଅତି ଦୁର୍ବଳ, ଘଟଣାସ୍ରୋତରେ ଭାସିଯାଉଛନ୍ତି ଅସହାୟ

ସ୍ତବରେ ଢଳର ସମାଜ, ଧର୍ମ ପ୍ରଭୃ ନ ଗୃହିଁ ।

"ଯାଓ ବେଟା ଯାଓ···ଇସ୍‌କୁ ଢଲ୍ କା କମ୍‌ଜୋର ମତ୍ ସମ୍‌ଝୋ, ଉଧ୍‌ର ଶ୍ରୀରାଧା ତଡ଼ପ୍ ରହୀ ହୈ ।"

ଶ୍ୟାମଘନ ଚମକି ପଡ଼ିଲେ । ଅତି ନିକଟରେ ଗୋଟିଏ ବୁଢ଼ା ଫକିର ଶୋଇଥିବାର ସେ ଦେଖି ପାରି ନ ଥିଲେ । ଫକିରଟି ଉଠି ବସି ଗାଇବାକୁ ଲାଗିଲା···

"କ୍ୟା କରୁ ସଜନୀ ନ ଆୟେ ଶ୍ୟାମ,
ତଡ଼ପିତ ବିତେ ମୋର ଉନ୍‌ବିନ୍ ରାତିୟା ।
ଯାଓ ଯାଓ···ମୈ ସବ୍ ଦେଖା, ସବ୍ ସମଝ୍‌ଲିୟା···ବେଟା ସମାଜ୍ ଧରମ୍ ସବ୍ ଝୁଟା···"

ଶ୍ୟାମଘନ ସ୍ତମ୍ଭିତ ହୋଇ ଛିଡ଼ା ହୋଇ ରହିଲେ । କୁଆଡ଼ୁ କୁଆଡ଼ୁ ଘଟଣା-ମାନ କ୍ଷିପ୍ରଗତିରେ ଆସି ମିଳିଯାଉଛନ୍ତି ଚୁମ୍ବକ ପରି । ସେ କିଛୁ କୂଳକିନାରା ପାଇଲେ ନାହିଁ । କିଛୁ ନ କହି ସେ ପୁଣି ଦୌଡ଼ିଲେ । କୁଟଣିଆଘାଟର ସେ ପଥରେ ପହଞ୍ଚିବା ବେଳକୁ ହସ୍‌ନୁ ଅଡ଼ଡ଼ା ତଳକୁ ଓହ୍ଲାଇଥାଏ । ଶ୍ୟାମଘନ ଆଶ୍ଚର୍ଯ୍ୟ ହୋଇ ହସ୍‌ନୁର ହାତ ଧରିପକାଇ କହିଲେ, "ହସ୍‌ନୁ, ମୋତେ ପ୍ରଥମେ କହ ତୁମେ କେମିତି ଜାଣିଲ ମୁଁ ପାପ କାଳିବି ବୋଲି··· ।"

ହସ୍‌ନୁ ମୁଣ୍ଡ ପୋତି କହିଲା, "ମୋର କାହିଁକି କେଜାଣି ମନେହେଲା ତୁମେ ନିଶ୍ଚୟ ଆଜି ରାତିରେ ଆସିବ । କଏ ଯେମିତି କହିଦେଲା ଏ କଥା । ମୁଁ ଆମ ଝରକା ବାଟେ ଅନାଇଥିଲି ତୁମ ଘର ଆଡ଼େ ଏଥିପାଇଁ···ଦେଖିଲି···ବୁଝିପାରିଲି ।"

—ଆଶ୍ଚର୍ଯ୍ୟ ! ମୁଁ କିଛୁ ବୁଝିପାରୁନାହିଁ ହସ୍‌ନୁ ! କଣ ସବୁ କାହିଁକି ଘଟୁଚି ?"

—ରାମ ଅଜା ଦିନେ ମୋ ଅଜାକୁ ଆମ ଘରେ କହୁଥିଲେ, ସାଧାରଣ ମଣିଷ-ତାର ଇନ୍ଦ୍ରିୟ ଉପରେ ନିର୍ଭର କରି ବରଷ ପରେ ବରଷ, ଜୀବନ ପରେ ଜୀବନ ନାନା ଅବସ୍ଥାରେ ପଡ଼ି ଅନେକ ମାଡ଼ ଖାଇ ଯେଉଁ ଜ୍ଞାନ ପାଏ, ପ୍ରେମ ହେଲେ ମଣିଷ ମୁହୂର୍ତ୍ତିକେ ସେ ଜ୍ଞାନ ପାଇଯାଏ; ତାକୁ ଆଉ ଏତେ ଘଟଣା-ଜାଲରେ ଛନ୍ଦି ହେବାର ଦରକାର ପଡ଼େନାହିଁ । ଶହ ଶହ ଘଟଣା ଗୋଟିଏ ସାମାନ୍ୟ ଘଟଣାରେ ଘଟିଯାଏ । ମୁଁ ସେ କଥା ଖାଲି ଶୁଣିଥିଲି ସିନା, ତୁମ ପ୍ରେମରେ ପଡ଼ି ସବୁ ବୁଝିପାରୁଛି ଏଇକ୍ଷଣି । ଆମେ ଦୁହେଁ ଯଦି ଦୁହିଁଙ୍କ ଦେହକୁ ଖାଲି ଚାହୁଁଥାନ୍ତେ, ତେବେ କେତେ ଚକାନ୍ତ କରିବାକୁ ପଡ଼ିଥାନ୍ତା ମିଳିବା ପାଇଁ; କିନ୍ତୁ ଦେଖ, କେହି କାହା ସହିତ କଥା ନକହି ବି କେମିତି ଜାଣିପାରିଲୁଁ ।

—କିନ୍ତୁ ଏ କଣ ହେଲା ହସ୍‌ନୁ ! ଏ ପ୍ରେମ ଯେ ଦୁହିଁଙ୍କୁ ଜାଳି-ପୋଡ଼ି ଦେବ

ଖାଲି ଆମକୁ ନୁହେଁ, ଏ ଦୁଇ ଗାଁକୁ ବି । ସାରା ଭାରତରେ ଯେ ଏ ନୂଆଁ କାଳ ନଦେବ ବର୍ତ୍ତମାନ ଅବସ୍ଥାରେ କିଏ କହିବ···

—ତୁମେ ଯଦି ମୋର ଦେହକୁ ଭଲ ପାଉଥାଅ, ତେବେ ଏ କଥା ଏଇଠିକରେ ଥାଉ ।

—ଦେହର ଲାଳସା ଯେ ମୋର ନାହିଁ, ସେ କଥା ତ ମୁଁ କହିପାରୁନାହିଁ ।

—ଥିଲେ ବା କ୍ଷତି କଅଣ । ଗଙ୍ଗା ନଈରେ ତ କେତେ ମଇଳା ପାଣି ପଡ଼େ; ସେ ସବୁ ତ ପବିତ୍ର ହୋଇଯାଏ । ଦେହ ତ ଖାଲି ଏକମାତ୍ର ସତ ନୁହେଁ । ଆହୁରି ତା ତଳକୁ ତଳକୁ ଅନେକ ସତ ଅଛି । ତା' ନହେଲେ, ପିଲାବେଳେ କାହିଁକି ତୁମେ ମୋତେ ବଞ୍ଚାଇଥାନ୍ତ । କାହିଁକି ତୁମକୁ ଦେଖିବା ମାତ୍ରେ···

—କେଜାଣି ! ଯେଉଁ କଥା ଜାଣିହେବ ନାହିଁ, ତାହା ବିଷୟରେ ଯାହା କହିଲେ ବି ସତ୍ୟ ହେବ, ଆଉ ପ୍ରମାଣ ବି ପ୍ରତିଷ୍ଠିତ ହେବ ।

—ଏ ସବୁ ବୁଦ୍ଧିର କଥା । ବୁଦ୍ଧିରେ କଣ ସବୁ ବୁଝିହୁଏ ? ଅନ୍ୟକୁ ବୁଝିବା ପାଇଁ ମନର ଭିତର ଯଦି ଉଦ୍ବେଳିତ ନହେବ ତେବେ ଖାଲି ବୁଦ୍ଧିରେ ସବୁ ବୁଝି ହେବ ନାହିଁ ବୋଧହୁଏ ।

—କିନ୍ତୁ ହସନ୍ତୁ ! ଏହା ପରେ ଆମର ବାହା ହେବା ଉଚିତ । ଆଉ ବାହାପରେ ଯଦି ପଦେ ପଦେ ଅମେଳ ହୁଏ ?

—କାହିଁକି ?

—ପାକିସ୍ତାନ ହେବା ପରେ ହିନ୍ଦୁ ମୁସଲମାନ ଭିତରେ ଅବିଶ୍ୱାସ ବଢ଼ି-ଯାଇଛି । ସାମାନ୍ୟ ସାମାନ୍ୟ କଥାରେ ହଣାହଣି ହେଉଛନ୍ତି । ଏ ଅବସ୍ଥାରେ ଆମେ କଣ ସମ୍ପୂର୍ଣ୍ଣ ଭଲ ପାଇପାରିବା ? ତୁମ ମନ ତ ନିଶ୍ଚୟ ମୁସଲମାନ ଆଡ଼େ ଟାଣିବ, ଆଉ ମୋ ମନ ହିନ୍ଦୁ ଆଡ଼େ । ତା ଛଡ଼ା···

ହସନ୍ତୁ ଅଧୀର ଭାବରେ ବାଧା ଦେଇ କହିଲା, "କାହିଁକି ? ଆମର ଦୁହିଁଙ୍କ ମନ କାହିଁକି ନ୍ୟାୟ ଆଡ଼େ ନଯିବ ? ମସଜିଦ୍ ସାମନାରେ ବାଜା ନବଜାଇବା କୋରାନ୍ ସରିଫ୍‌ରେ ନାହିଁ । କେଉଁଥିପାଇଁ ଆମ ଏ ଦେଶରେ ଏ କଥା ଅଛି ସମସ୍ତେ ଜାଣନ୍ତି । ତେଣୁ ଆଇନ ଯଦି କହିଲା, ଆଉ ମନ ଯଦି କହିଲା, ରାସ୍ତାରେ ବାଜା ବଜାଇ ଯିବାରେ ସମସ୍ତଙ୍କର ଅଧିକାର ଅଛି, ତେବେ ମୁଁ ମୁସଲମାନ ବୋଲି ତାକୁ ନମାନିବି କାହିଁକି ? ଆଉ ହିନ୍ଦୁମାନେ ଯଦି ମୁସଲମାନମାନଙ୍କୁ ଅପମାନ ଦେବାପାଇଁ ମସଜିଦ୍ ସାମନାରେ ବେଶି କରି ବାଜା ବଜାନ୍ତି, ତେବେ ତୁମେ ହିନ୍ଦୁ ବୋଲି ତାଙ୍କୁ ଏଡ଼ା ନକରିବ କାହିଁକି ?"

ଶ୍ୟାମଘନ ଅବାକ୍ ଭାବରେ ଚାହିଁରହିଲେ ହସନ୍ ଆଡ଼େ । ହସନ୍ ହସି କହିଲା "ତୁମେ ଭାବୁଛ କିଷ୍ଟେ ମୁଁ ମୂର୍ଖ, ଏତେ କଥା ଜାଣିଲି କିପରି ।"

—ହଁ, ତୁମେ ମୋ ମନକଥା କହି ଆହୁରି ଆଶ୍ଚର୍ଯ୍ୟ କରିଦେଲ ।

—ଏ ସବୁ ତ ମୁଁ ଅଜାମାନଙ୍କ ପାଖରୁ ଶୁଣିଛି । ସେମାନେ ଯେତେବେଳେ ଆମ ଘରେ ଶାସ୍ତ୍ରଚର୍ଚ୍ଚା କରନ୍ତି, ମୁଁ ମନ ଦେଇ ସବୁ ଶୁଣେ । ସେଥିରୁ କିଛି ବୁଝିଥିଲି, ଅନେକ ବୁଝି ପାରି ନଥିଲି । ଆଜି କିନ୍ତୁ ବୁଝିପାରୁଛି ସବୁ । ବୁଝିପାରୁଛି—ସବୁ ଧର୍ମ ଏକ, ମଣିଷ ମଣିଷ ମଧ୍ୟରେ ଭେଦ ଆମରି ଭୟରୁ ବାହାରିଛି; ତେବେ ବି ପ୍ରେମରି ସବୁବେଳେ ଜୟ ହୋଇଛି । ଆଜି ତ ମୁଁ ଶ୍ରୀକୃଷ୍ଣଙ୍କୁ ଅନ୍ତର ଭିତରେ ବୁଝି-ପାରୁଛି, କି ପ୍ରେମିକ ସେ । ତାଙ୍କୁ ତ ମୁଁ ଆଜି ପର୍ଯ୍ୟନ୍ତ ବୁଝି ପାରି ନଥିଲି···।

—ହଁ ହସନ୍, ଆଜି ମୁଁ ବୁଝିପାରୁଛି ଆଲ୍ଲା ବି ମୋର । ସତେ ହସନ୍, ଏ ପୃଥିବୀର ଇତିହାସ ଘୃଣା ଓ ଭୟରୁ ଜାତ ହତ୍ୟାର ଇତିହାସ ନୁହେଁ, ପ୍ରେମରୁ ଜାତ ଐକ୍ୟର ଇତିହାସ । ଯୁଦ୍ଧଖୋରମାନେ ମଣିଷକୁ ଗଢ଼ି ନାହାନ୍ତି—ବୁଦ୍ଧ, ଯୀଶୁ, ମହମ୍ମଦ, ଚୈତନ୍ୟ, ଜୋରଥୃଷ୍ଟ ଭଳି ପ୍ରେମିକମାନେ ଗଢ଼ିଛନ୍ତି । ଏ କଥା ବର୍ତ୍ତମାନ ଅବସ୍ଥାରେ ମୋତେ ବେଶ୍ ପରିଷ୍କାର ଜଣାପଡ଼ୁଛି ଖାଲି ନୁହଁ, ବୁଝିପାରି ମନରେ ମନରେ ଆବେଗ ହେଉଛି; କିନ୍ତୁ ମନର ଏ ଅବସ୍ଥା ତ ରହିବ ନାହିଁ, ନାନା ବିଭେଦକାରୀ ଯୁକ୍ତି ସେ ଅବସ୍ଥାରୁ ମନକୁ ତଳକୁ ଖସାଇଦେବ—ଅହଂକାର, ଘୃଣା, ହତ୍ୟା । ମନେପଡ଼ିଯିବ ମୁସଲମାନମାନେ ଆମର ଜଗନ୍ନାଥଙ୍କୁ ଚମ-ଦଉଡ଼ିରେ ବାନ୍ଧି ବଡ଼ଦାଣ୍ଡରେ ଘୋଷାଡ଼ି ଥିଲେ ଦିନେ···ସେତେବେଳେ ?

—ଜଗନ୍ନାଥଙ୍କୁ ଖାଲି ତୁମର ବୋଲି କାହିଁକି କହୁଛ କି ? ସେ ସବୁ ଯିଏ କରେ ସେ ଅସଭ୍ୟ, ସେ ହିନ୍ଦୁ ହେଉ ବା ମୁସଲମାନ ହେଉ । ହିନ୍ଦୁମାନଙ୍କ ଭିତରେ ସାହି ସାହି କଳି ଲାଗି ଯେତେବେଳେ ଦୁର୍ଗାଙ୍କ ମୁଣ୍ଡ ଭାଙ୍ଗି ତଳେ ପକାଇଦିଅନ୍ତି, ସେ ବି ସେଇ ଅସଭ୍ୟତା । ଯେଉଁମାନେ ଏପରି କରନ୍ତି ବା କରିଥିଲେ ସେମାନେ ଯା'ନ୍ତି, ଗଲେଣି; କିନ୍ତୁ ଜଗନ୍ନାଥଙ୍କ ପ୍ରତି ଭକ୍ତି ସେମିତି ରହିଛି, ମଣିଷ ସେଥିରୁ ଟଳିନାହିଁ ।

—ପ୍ରେମ ସତେ ମହାନ୍ । ମୋର ଏଇକ୍ଷଣି ମନେହେଉଛି ଦୁନିଆରେ ସମସ୍ତେ ଭଲ । ସମସ୍ତଙ୍କ ପାଦତଳେ ପଡ଼ିଯିବାକୁ ଇଚ୍ଛା ହେଉଛି । ଆମର ଯଦି ଭୟ ବା ହିଂସା ନ ଥାନ୍ତା, ତେବେ ଏ ନାନାପ୍ରକାର ବିଭିନ୍ନତା ମଣିଷ ଭିତରେ ଦେଖି ଖୁସି ଲାଗନ୍ତା ।

—ସମସ୍ତେ ଭଲ ତ । ସବା ମୂଳକଥାଟି ଯଦି ଭଲ ନଥାନ୍ତା, ତେବେ ତ ମଣିଷ କେବଠୁ ନାଶ ପାଇସାରନ୍ତାଣି ।

—କିନ୍ତୁ ତୁମେ ଜାଣିଛ ହୁସେନ, ପଅରଦିନ ଫଗୁଣ ପୂର୍ଣ୍ଣିମାରେ ଆମ ଦୁଇ ଗାଁର ହିନ୍ଦୁ ମୁସଲମାନ ଭିତରେ କଳଗୋଳ ଲଗାଇବାର ସବୁ ବନ୍ଦୋବସ୍ତ ହେଉଛି ।

—ହେଉ, ତାକୁ ବନ୍ଦ କରିବାକୁ ଆମେ ଜୀବନ ଦେବା । ଆମେ ଦୁହେଁ ହାତ ଧରାଧରି ହୋଇ ତାଙ୍କ ମଝିରେ ଛିଡ଼ାହେବା···

—ମୁଁ ପାରିବି ନିଶ୍ଚୟ ।

—ନିଶ୍ଚେ ପାରିବ । ତୁମେ ଯଦି ନ ପାର ମୁଁ ତମକୁ ସାହସ ଦେବି । ଆଉ ମୁଁ ନ ପାରିଲେ, ତୁମେ··· ।

—ହୁସେନ୍, ତୁମେ ଏତେ ଜ୍ଞାନ କଥା ଜାଣିଲ କିପରି ?

—କହିଲି ପରା··

ହଠାତ୍ ବେଣାବୁଦା ପଛପଟୁ ଶୁଭିଲା—ପ୍ରେମରେ, ବାବା ପ୍ରେମରେ ।

ଶ୍ୟାମଘନ ଓ ହୁସେନ୍ ଚମକି ପଡ଼ି ଦୌଡ଼ି ପଳାଇଯାଉଥିଲେ । ବେଣାବୁଦା ପଛପଟୁ ଗ୍ରାମପଧାନ ଓ ରହିମ୍ ସେମାନଙ୍କ ହାତ ଧରି ଅଟକାଇ ହସି ହସି କହିଲେ, "ଭାବିଥିଲ ଆମେ କିଛି ଜାଣୁନା ।"

ଗ୍ରାମ ପଧାନ ଶ୍ୟାମଘନ ଆଡ଼େ ଚାହିଁ କହିଲେ, "ହୁସେନ୍ ଏତେ ସବୁ ଜାଣିଲା ତୋ 'ପ୍ରେମରେ ପଡ଼ି । ଘୋର ଜଙ୍ଗଲରେ ଗୋଟିଏ ଗଜ ଥିଲା । ସେ ମୁନିମାନଙ୍କ ଘରଦ୍ୱାର ଭାଙ୍ଗି ପକାଇ ସେମାନଙ୍କୁ ଭାରି ହଇରାଣ କରୁଥିଲା; କିନ୍ତୁ ମୁନିମାନେ ଭଗବାନ୍ଙ୍କ ବିଷୟରେ ଯାହା ସବୁ ଚର୍ଚ୍ଚା କରୁଥିଲେ, ସେ ସବୁ ତା କାନରେ ପଡ଼ୁଥିଲା । ଦିନେ ଗୋଟିଏ କୁମ୍ଭୀର ଗୁଳଷି କରି ଗଜକୁ ପାଣି ଭିତରକୁ ଟାଣିନେଇଗଲା ଖାଇବ ବୋଲି । ଆତଙ୍କରେ ପଡ଼ି ତାର—

ଶରୀରେ ଜ୍ଞାନ ଉପୁଜିଲା,
ପୂର୍ବର ହେତୁ ସୁମରିଲା ।
ଗଜ ଯେ ବିଚାରଇ ମନେ,
ଯେ କାଳେ ଥିଲି ଘୋର ବନେ,
ମୁହିଁ ମାରଇ ବୋଲି କରି,
ରୁଣ୍ଡ ହୁଅନ୍ତି ତପସ୍ୱୀ ।
ମୁନିଏ ହୁଅନ୍ତି କୁହାକୁହି,
ଆତଙ୍କ କାଳେ ଭାବଗ୍ରାହୀ ।

ଆତଙ୍କରେ ପଡ଼ିବାରୁ ତାର ଶୁଣା କଥା ସବୁ ଜ୍ଞାନ ପାଲଟିଗଲା । ଆତଙ୍କରେ ଓ ପ୍ରେମରେ ପଡ଼ିଲେ କୁଳକୁଣ୍ଡଳିନୀ ଜାଗେ । ମଣିଷର ବୁଦ୍ଧି ଖୋଲିଯାଏ ।"

ରହିମ୍ କହିଲା, "ସଙ୍ଗାତ ! ଆମେ ଯେଉଁ ସବୁ କଥା କହୁଁ, ଏମାନେ ତାକୁ କାମରେ କରନ୍ତି । ଏ ଶାଳେ ଲୋକକୁ ଫଗୁଣ ପୂନେଇଁକୁ ସାଢ଼ କରିଦେବେ, ରାଜା ?"

ଗ୍ରାମ ପଧାନ ରହିମ୍‌ର ହାତଧରି କହିଲେ, "ରାଜା । ତା'ପରେ କୁରୁକ୍ଷେତ୍ର ପାଇଁ ଆମେ ପ୍ରସ୍ତୁତ ହୋଇଯିବା । ଆଲ୍ଲା ଓ ରାଧାବଲ୍ଲଭ ଏଙ୍କର ମଙ୍ଗଳ କରନ୍ତୁ ।"

ଶ୍ୟାମଘନ ଓ ହସନ୍ତୁ କାନ୍ଧ ପକାଇଲେ ।

# ଭଙ୍ଗା ଖେଳଣା

## କିଶୋରୀଚରଣ ଦାସ

ବଗିଚାର ଫାଟକରେ ଖରା । ଯେଉଁଠି ଧାଡ଼ିଏ ଗେଣ୍ଡୁ ଫୁଲ ଫୁଟିଛି, ସେଇଠି ଖରା ଛୁଇଁ-ଯାଇଛି । ଫୁଲ ଅଧେ ଖରାରେ, ଅଧେ ଛାଇରେ । ଅଧେ ଖରା ପୋଉଁଛି, ଆର ଅଧକ ବିଚରା ଶୀତରେ ଥରିଯାଉଥିବ । ଏପାଖ ଫୁଲରେ ପ୍ରଜାପତି ବସିଛି—ଆର ପାଖକୁ ଯିବ ନାହିଁ ? ହେଇ ଗଲା—ଗଲା । ଫୁର୍, ପୁଣି ଫେରିଆସିଲା । ଦୁଷ୍ଟ ! ଏପାଖ ଫୁଲ ହସୁଛି; ଗୋଟି ଗୋଟି କରି ସବୁ ପାଖୁଡ଼ା ଦେଖାଇ ହସୁଛି । ଆର ପାଖ ଫୁଲ ହସୁନାହିଁ । ଶୀତରେ ମେଞ୍ଚା ହୋଇ ଅନେଇଛି ତଳକୁ । ହାତରେ ଧରିଲେ ହାତ ଥଣ୍ଡା ହୋଇଯିବ, ଫୁଲ ଉଷୁମ ହେବ ନାହିଁ ।

(ଗୋଡ଼ରେ ଚିନାବାଦାମ ଚୋପାଟା ମକଚି ହୋଇଗଲା । ଗୀତା ତାକୁ ପାଦରେ ଠେଲି ପକାଇଦେଲା ତଳକୁ, ଦରମଲା ସେବତୀ ଗଛ ମୂଳକୁ । ଦଶବର୍ଷର ଝିଅ । ବଡ଼ଦିନ ଛୁଟିର ଗୋଟିଏ ଦ'ପହର—ବାରି ପାହାଚରେ ବସି ଅନେଇଛି ଖରାକୁ । ଭାବନାର ଛବି ଦଉଡ଼ୁଛି ମନ ଭିତରେ ।)

ଆମ ସ୍କୁଲରେ ବଡ଼ଫୁଲ ଅଛି । ଗୋଲ ହୋଇ ହଳଦିଆ ପାଖୁଡ଼ା । ସନ୍‌ଫ୍ଲାଓ୍ୱାର୍ । କୁଲିଆ କହେ ସୁରୁଜମୁଖୀ । କୁଆଡ଼େ ଖାଲି ସୂର୍ଯ୍ୟକୁ ଅନେଇଥାଏ । କୁଲିଆଟା ମିଛୁଆ ।

ସନ୍‌ଫ୍ଲାଓ୍ୱାର୍ ସୁନ୍ଦର ନୁହେଁ । ଖାଲି ବଡ଼ ମୁହଁ; ମିସେସ୍ ଘୋଷାଲଙ୍କ ପରି । ହୋ-ହୋ ହୋଇ ହସନ୍ତି । ଦାନ୍ତଗୁଡ଼ା ବଡ଼ ବଡ଼ ଦେଖାଯାଏ । ଲମ୍ବା କୋର୍ଟରେ ବୋତାମଗୁଡ଼ା ଏତେ ବଡ଼ ବଡ଼ । ମୋଟା ଗୋରା ହାତପାପୁଲିରେ ଟେବୁଲ୍ ବାଡ଼ାନ୍ତି । ଷ୍ଟପ୍ ଟକିଙ୍ଗ୍ ।

ମାଷ୍ଟ୍ରେ ଆସିନାହାନ୍ତି । ବୋଉ ଶୋଇଛି । ବୋଉ ମୁହଁ ସୁନ୍ଦର । ହେଲେ ବୋଉ ଖାଲି ରାଗୁଛି ଆଜିକାଲି । ହସିଲେ ତା ମୁହଁ ସୁନ୍ଦର ଦେଖାଯାଏ, ରାଗିଲେ ଅସନା ଦେଖାଯାଏ । ମିଛଟାରେ ରାଗୁଛି ମୋ ଉପରେ । କାଲି ରାଜୁ ମୋ ଛବିବହି ଚିରିଦେଲା, ମୋ ରଙ୍ଗ ପେନ୍‌ସିଲ୍ ଭାଙ୍ଗିଦେଲା; ଆଉ ମୁଁ ମାରିଲେ ଦୋଷ ହେଲା ମୋର । ବୋଉ

ମୋତେ ମାରିଲା, ରାଜୁକୁ ବି ମାରିଲା । ଖାଲି ପାଟିକଲା, "ତମେଗୁଡ଼ାକ ମରିଯାଆନ୍ତ, କି କୁଳାଙ୍ଗାର ଟୁଆ···।" ବୋଉ ଖାଲି ରାଗୁଛି, ମିଛରେ ରାଗୁଛି ।

ବୋଉ କୁଳିଆ ଉପରେ ବି ରାଗୁଛି । ରାତିକରି ସେ ଦିନ ଦୁଧଗିଲାସଟା ଠେଲିଦେଲି ଯେ ଗିଲାସ ଭାଙ୍ଗିଗଲା । ଆଉ ଆମେ ଭାଙ୍ଗିଥିଲେ !

ଖରା ଗଲାଣି ସେ କାନା ଗଛ ଯାଏ । ଖାଲି ଲମ୍ବା ଲମ୍ବା ବଡ଼ ବଡ଼ ପତର । ଫୁଲ ବୋଲି କିଛି ନାହିଁ । ଆମ ସ୍କୁଲରେ କେତେ ଫୁଲ ଫୁଟିଛି, ନାଲିଆ, ହଳଦିଆରେ ନାଲିଛିଟା । ଶୋଭା ସେଦିନ ଗାଳି ଖାଇଲା ଫୁଲ ଛିଣ୍ଡାଇଲା ବୋଲି । ବୋଉ ଆମ ବଗିଚାକୁ ମୋଟେ ଦେଖୁନାହିଁ ଆଜିକାଲି; ଖାଲି ମାଳି ଉପରେ ରାଗୁଛି ।

ଶୀତ କଲାଣି, ପଶି କୁକୁରଟା ବୋକା । ଘାସରେ ଗଡ଼ୁଛି । ଶୀତ କରୁନାହିଁ ତାକୁ ? ତାଙ୍କ ଘରର ସେ ଅପରିଛନିଆ କାଳିଆ କୁକୁରଟା ଆସିଲେ ଭୁକିକରି ଦଉଡ଼ି ପଳାଇବ ବଦମାସ୍ ।

ହେଇରେ ଗୋଟାଏ ପ୍ରଜାପତି । କେଡ଼େ ସୁନ୍ଦର ଚିତିଆ ପ୍ରଜାପତି, ହଳଦିଆ ଦେହରେ କଳା ଗାର । ଚିତିଆ ପାଚିଲା କଦଳୀ । ଚିତିଆ କାନାଫୁଲ । ଯାଉଛି ଧରିବି । ଗଲା—ଗଲା,—ଉଡ଼ିଗଲା । ଗଲା ତାଙ୍କ ଘରକୁ । ଡେଣାକୁ ଖାଲି ଉଠଉଛି, ପକଉଛି, ପଶି ଲାଙ୍ଗୁଡ଼ ତାର ହଲଉଛି । ସେମିତି । ଏକ୍—ଦୁଇ—ତିନ୍—ଚାର୍ ।

ତାଙ୍କ ଘରଆଡ଼କୁ ଗଲା,—କୁଆଡ଼େ ଗଲା ? ହେଇ, ତାଙ୍କ ଘର ବାପା ଆସିଗଲେଣି ତାଙ୍କ ସାନପୁଅକୁ କୋଳରେ ଧରି । ଏତେ ଜଲଦି ଅଫିସରୁ ଆସିଗଲେଣି । ଆଉ ଆମ ବାପା ଆସିବେ ରାତି ପହରକରେ— ।

ତାଙ୍କ ପୁଅକୁ ଧରି ଗେହ୍ଲା କରୁଛନ୍ତି, ଚଢ଼େଇ ଦେଖଉଛନ୍ତି । ତା ନାଁ କଣ ତ,—ଟୁନୁ ? ଆମର ସେମିତି ଗୋଟିଏ ଛୋଟ ପିଲା ଥାଆନ୍ତା କି ! ରାଜୁ ବିଜୁଙ୍କର ମଜା ବାହାରିଯାଆନ୍ତା । ବୋଉ ତାକୁ ଗେହ୍ଲା କରନ୍ତା । ରାଗନ୍ତା ନାହିଁ ।

ଆମ ବାପା ଆମକୁ ଗେହ୍ଲା କରନ୍ତି ଯେ, ରାଜୁ ବିଜୁଙ୍କୁ ବେଶି ଗେହ୍ଲା କରନ୍ତି । ମୁଁ ବଡ଼ ହୋଇଗଲିଣି ପରା । ବାସନ୍ତୀ କହେ ତା ବାପା କୁଆଡ଼େ ତାକୁ ଯାଉଣ୍ଡ ଆସୁଣ୍ଡ ଗେହ୍ଲା କରନ୍ତି । ସକାଳୁ ଥରେ, ସଞ୍ଜରେ ଥରେ, ଆଉ ମଝିରେ ଯେତେ ଇଚ୍ଛା ସେତେ—ଫୁଲେଇଟା ।

କିନ୍ତୁ ବାପା ଆଜିକାଲି ତ କାହାରିକୁ ଗେହ୍ଲା କରୁନାହାନ୍ତି । ଫେରିବେ ରାତି ହେଲାରୁ, ଗୁମ୍ କରି ବସିଯିବେ ଖଟ ଉପରେ । କିଛି ଟିକିଏ କହିଦେଲକୁ—ଓଃ, ବିରକ୍ତ କର ନାହିଁ ମଣିଷକୁ । ଯାଉନା ଖେଳିବ । ବୋଉ ପଚାରିବ, ଖାଇବାକୁ ଆଣିବ ? କିଛି ଦରକାର ନାହିଁ—ଆସ୍ତେ କରି କହିବେ । ହସିବେ ନାହିଁ ।

କଣ ହୋଇଛି ବାପାଙ୍କର ? ଆଗେ ତ ଏମିତି ନ ଥିଲେ । ଆମେ ଯେତେବେଳେ ପୁରୀରେ ଥିଲେ, କେତେ ଦିନ ହେଇଗଲାଣି, ବାପା ଦିନ ଆଉଣ୍ଟ ଅଫିସ୍‌ରୁ ଫେରନ୍ତେ । ବୋଉ ନିଜେ ରୋଷେଇଘରେ ପଶି ପୁରି, ଆଳୁଭଜା ତିଆରି କରୁଥିବ । ଧୂଆଁ ଆଖି-କାନରେ ପଶିଯାଉଥିବ । ବାପା ସିଧା ଆସି ମୋତେ କୋଳକୁ ଟାଣିନେଇ ଗେହ୍ଲା କରିବେ । ତା ପରେ ବୋଉକୁ ଗେହ୍ଲା କରିବେ । ବୋଉ ଚିଡ଼ୁଥିବ । ବାପା ଖାଲି ହସୁଥିବେ ।

ବାପା କଣ ବୁଢ଼ା ହୋଇଗଲେଣି ? କାହିଁ, ଦାନ୍ତ ପଡ଼ିନାହିଁ ତ, ବାଳ ବି ପାଚିନାହିଁ । ରମା ଅପାର ଜେଜେ କେତେ ବୁଢ଼ା, ବାଳସବୁ ଧଳା ହୋଇଗଲାଣି । କେତେ ହସନ୍ତି ସେ । ଆମକୁ ସବୁ ପାଖକୁ ଟାଣି ଲଜେନସ୍ ଦିଅନ୍ତି—ଗୀତ ଶିଖାନ୍ତି ।

ବାପା କେତେ ଗୀତ ଶିଖାଉଥିଲେ ଆଗେ । ଭଜନ, ସିନେମା ଗୀତ; ହିନ୍ଦୀ, ଓଡ଼ିଆ— । ରଘୁପତି ରାଘବ ରାଜାରାମ···ଦେଖୋ ହମେ ଆଜାଦୀ ବନା··· ।

(ଗୀତା ଗୁଣୁଗୁଣୁ ହୋଇ ଗୀତ ଆରମ୍ଭ କରିଦେଲା । ଗୋଡ଼ ଉପରକୁ ତଳକୁ ପକାଇଲା । ତା' ପରେ ହଠାତ୍ ବନ୍ଦ ହୋଇଗଲା । ତାର ଗ୍ଲେଟିଆ ମୁହଁ ଗମ୍ଭୀର ହୋଇ ନରମ, କାନ୍ଦୁରା ହୋଇଆସିଲା—ଟିକକରେ କାନ୍ଦିପକାଇବ ଯେମିତି ।)

ବାପା କାନ୍ଦୁଥିଲେ । ବାପା ଆଉ ଗୀତ ଗାଇବେ ନାହିଁ । ବାପା ବୁଢ଼ା ହୋଇ-ଗଲେଣି ।

ସେଦିନ ଅଧରାତି । କଣ ଡର-ସପନ ଦେଖି ନିଦ ଭାଙ୍ଗି ଯିବେଳକୁ ଦେଖେ ଆଲୁଅ ଜଳୁଛି, ବାପା ଅନେଇଛନ୍ତି ଉପରକୁ । ଆଉ କାହା ଭଳିଆ । ଆମ ବାପା ପରି ନୁହେଁ । କାନ୍ଦୁ ନ ଥିଲେ ଯେ, ମୁଁ ଭାବିଲି କାନ୍ଦିବେ । ଡର ମାଡ଼ିଲା । 'ବାପା' ବୋଲି ପାଟି କରିବାରୁ ଚମକି ପଡ଼ି ମୋ ଆଡ଼କୁ ଅନେଇ କହିଲେ, 'ଶୋଇପଡ଼, କାହିଁକି ପାଟି କରୁଚୁ ?' ସେ ବାପା ଆମ ବାପା ନୁହେଁ । ବାପାଙ୍କର କଣ ହୋଇଛି ?

ଟିଂ ଟିଂ ଟିଂ । ମାଷ୍ଟ୍ରେ ଆସିଲେଣି ? ନାଇ—ରୁଟିବାଲା । ବୋଉ ଉଠିବ ।

ଭେଁ—ଏ—ଏଁ··· । ବଜୁ ନିଦରୁ ଉଠି କାନ୍ଦିଲାଣି । ବୋଉ ଉଠିବ । ଚିଡ଼ିବ ମୋ ଉପରେ ।

"ଗୀତା—ଏ ଗୀତା, କୁଆଡ଼େ ଗଲୁ ସେ । ପଢ଼ା ନାହିଁ, ପଢ଼ି ନାହିଁ, ସାତ ମାଇକିନିଆଙ୍କ ପରି ବସିଥିବ ଯାଇଁ କେଉଁଠି ।"

"ଯାଉଛି—ବୋଉ !"

( 2 )

"ଚକା ଚକା ଭଉଁରି
ମାମୁଁ ଘର ଚଉଁରି
ମାମୁଁ ମୋତେ ମାରିଲେ..."

ହେଇ ରାଜୁ,—ହାତ ଛାଡ଼ନା—ଜଲଦି ଗୋଡ଼ ପକା ।
ପୁନି, ତୁ ମୋ ହାତ ଧର ।
ଆଚ୍ଛା ଚାଲ, ସ୍କୁଲ ଖେଳ ଖେଳିବା; କୁହ—

'ରିଙ୍ଗା ରିଙ୍ଗା ରୋଜେସ୍
ପକେଟ୍ ଫୁଲ୍ ଅଫ୍ ପୋଜେସ୍ ।

(ଗୀତାକୁ ନେଇ ରାଜୁ, ବିଜୁ ଓ ପଡ଼ିଶାଘର ପୁନି ନୂଆ ଗୀତ ଆରମ୍ଭ କରିଦେଲେ । ସମସ୍ତଙ୍କ ପାଇଁରେ ସବା ସାନ ବିଜୁ ବୋଲୁଥାଏ 'ଲିଙ୍ଗା ଲିଙ୍ଗା ଲୋଜେସ୍—ସକାଳର ହେମାଳ ଛାଡ଼ି ନ ଥାଏ । ଅଦିନିଆ, ଅଦରକାରି ମେଘକୁ କାଟି ଖରା ଆସୁଛି ଏତେ ବେଳକେ ।)

"ଅଲ୍ ଫେଲ୍ ଡାଉନ୍ ।"

ଲଥ୍‌କରି ବସିପଡ଼ିଲେ ସମସ୍ତେ । କିଛି ସମୟ ବିଶ୍ରାମ । ଗୀତା ଅନେଇଲା ସାମନାକୁ —ଡାହାଣ କଡ଼ରେ ପଧାନଘର ବାଡ଼ିକୁ ଲାଗି ପାଣିନାଳ । ଆଗରେ ଘାସ ପଡ଼ିଆ ।

ଅଥାନ ଆନରେ ପଥର ଓ ବୁଦୁବୁଦିକିଆ ଗଛ । ତା ସେ ପାଖକୁ ଉଇହୁଙ୍କା ଓ କାହିଁ ଦୂରରେ ବାପାଙ୍କର କଚେରି ନାଲିଆ କୋଠା । ନୂଆ ଖରା ଆସି କାହାକୁ କେଉଁଠି ଛୁଇଁଦେଉଛି ।

ନାଳ ପାଖରେ ସେଗୁଡ଼ା ପଥର ନୁହେଁ, ଖଣ୍ଡେ ଖଣ୍ଡେ ହୀରା । ସେ ସବୁକୁ ନେଇ ଆସି ଗୋଲ ଗୋଲ କରି କାଟିଦେଲେ କେଡ଼େ ବଡ଼ ହାର ହୋଇଯିବ । ମାଷ୍ଟ୍ରେ କହନ୍ତି, ହୀରା ସବୁଠୁ ଦାମିକା । ସବୁଠୁ ଚକ୍‌ଚକ୍, ଅନ୍ଧାରରେ ଆଲୁଅ କରିଦେବ । ବୋଉ ଖୁସି ହେବ । କହିବ ଦେଖିଲଣି, ଗୀତା ମୋତେ ପ୍ରେଜେଣ୍ଟ୍ ଦେଇଛି ।

କିଏ ଆସୁଛି ପଧାନ ଘରବାଟେ । ବାବୁଆ ଓ ତା ବାପା । ବାବୁଆ ଶାଗୁଆ ସ୍ୱେଟର ପିନ୍ଧିଛି । ହାତରେ ଖଣ୍ଡେ ବାଡ଼ି । ମୋଟା ଟୋକା । ଗେହ୍ଲା ଟୋକା । ସବୁ ଭାଙ୍ଗି ଭୁଙ୍ଗି ଦେବ ଏଇକ୍ଷଣି । କହିବ ଖେଳିବା 'ଆଖି ନାହିଁ, କାନ ନାହିଁ, ବାଜିଗଲେ ଦୋଷ ନାହିଁ ।' ସମସ୍ତଙ୍କୁ ପିଟିବ । କିଏ କାନ୍ଦିଲେ ବାପ ପାଖରେ ଗେହ୍ଲେଇ ହେବ । ମାଇଚିଆ ଟୋକା, ସବୁବେଳେ ବାପ କାନି ଧରି ବୁଲୁଥିବ । କ୍ଲାସରେ ତ ଫେଲ୍

ହେଉଛୁ, ଖାଲି ଫୁଟାଣି କାହିଁରେ କଅଣ ?

ତା ପାଖରେ ତା ବାପା । ଗୋରା ହୋଇ, ପତଳା ହୋଇ, କେଡ଼େ ସୁନ୍ଦର । ସବୁବେଳେ ମୁରୁକି ମୁରୁକି ହସୁଥାନ୍ତି । 'ନୂଆବୋଉ, ଭୋକ କଲାଣି, କଣ ଖାଇବାକୁ ଅଛି' କହି ଭିତରକୁ ପଶିଯିବେ । ବୋଉ ହସେ । ଆଲମାରିରୁ କଣ ଆଣିଦିଏ, ନହେଲେ ରୋଷେଇଘରକୁ ପଶିଯାଏ କିଛି ତିଆରି କରିଦେବାକୁ ।

ବନୁଦାଦା ଗୋରା, ସୁନ୍ଦର । ବାବୁଆଟା ମୋଟା, ଅସନା । ତା ବୋଉ ବି ସେମିତିକା; କିନ୍ତୁ ମୋଟା ନୁହେଁ । 'ଖୁଡ଼ୀ' କହିଲେ ମନା କରନ୍ତି, କହନ୍ତି କହି ମାଉସୀ । କୁଆଡ଼େ ଯାଆନ୍ତି ନାହିଁ । ଖାଲି ଦର୍ପଣ ପାଖରେ ବସି ମୁଣ୍ଡ କୁଣ୍ଡାନ୍ତି । ଆଉ କୁଆଡ଼େ ଚନ୍ଦନତେଲ ଗାଧଅନ୍ତି ।

'ହାଇ ଲେ ଗୀତା, ବୋଉ ଅଛି ?'

ବାଡ଼ିରେ ଠକ୍ । 'ଆଟେନ୍‌ସନ'···ବାବୁଆ ଗର୍ଜୁଛି ।

'ହିଁ, ଯାଉଛୁ । ବାବୁଆର କଣ ସ୍କୁଲ ନାହିଁ ବନଦାଦା ?'

'ନୋ, ନୋ, ନୋ––ବାପା ସ୍କୁଲ ବନ୍ଦ କରି ଦେଇଛନ୍ତି । ବାପା ଦେଖିଲି, ଗୀତା ମୋତେ ଚିଡ଼ଉଛି ।

ମୁରୁକିହସା ଦେଇ, ଦହିଁଙ୍କି ଟିକିଏ ଟିକିଏ ଆପ୍ଟେଇ ଦେଇ ବନୁଦାଦା ଭିତରକୁ ପଶିଗଲେ । ଏଣେ ବାବୁଆର ନେତୃତ୍ୱରେ ଖେଳ ଚାଲିଲା । ଖେଳ ନୁହେଁ, ଦଉଡ଼ା-ଦଉଡ଼ି, ଗୋଡ଼ାଗୋଡ଼ି । ଗୀତା ଏକୁଟିଆ ପଡ଼ିଗଲା । ନିଜକୁ ଏକୁଟିଆ କରିଦେଲା ବୋଲି କହିଲେ ଭୁଲ୍ ହେବନାହିଁ ।

ବୋଉ ଓ ବନୁଦାଦା ବାରିପଟକୁ ଗଲେଣି । ବନୁଦାଦାଙ୍କ ହସ ଶୁଭୁଛି । କେତେ ହସନ୍ତି ସେ । ବାରିରେ ଫୁଲ ଫୁଟିଛି, ଟମାଟୋ ହୋଇଛି, ଚକ୍‌କଣ କଳା ବାଇଗଣ ହୋଇଛି, ବାପା ଭଲ ପାଆନ୍ତି; କିନ୍ତୁ ସେଦିନ ତରକାରି ଖରାପ ହୋଇଥିଲା, ବୋଉ ବାଇଗଣ ଭାଜିବାକୁ କହିଲାରୁ କହିଲେ 'ନାଇଁ ଥାଉ––ଦରକାର ନାହିଁ ।' ରାଗି କରି କହିଲେ ନାହିଁ, ଖାଲି ସେମିତି କହିଲେ । ବୋଉ ଚୁପ୍ ହୋଇଗଲା ।

ବାପା କାହାନ୍ତି ? ସକାଳୁ କୁଆଡ଼େ ଗଲେଣି । ଅଫିସ କାମ । ଛୁଟିରେ କଣ ଏତେ କାମ ମ ?

ବାପା ନାହାନ୍ତି, ଭଲ ହୋଇଛି । ବାପା ଥିଲେ ସେ ବନୁଦାଦା ଦାଣ୍ଡଘରେ ବସି କଣ ଏଣ୍ଡତେଣ୍ଡ ଗପିବେ । କଣ ସବୁ ଅଫିସ କଥା, ଖବରକାଗଜ କଥା, ହସ ନାହିଁ କିଛି ନାହିଁ । ମୁହଁକୁ ଏଡ଼େ କରି ପଦେ ପଦେ କଥା,––ସେ କି ଗପ ? ଆମ ହେଡ଼ମାଷ୍ଟରଙ୍କ ଘରେ ମିଟିଂ ହେଲା ପରି । ମୁଁ ଦେଖିଛି, ସେଦିନ ଘଣ୍ଟା ଘଣ୍ଟା କାଗଜ

ଖଣ୍ଡେ ଧରି ବସିଥାନ୍ତି । ପିଲାମାନଙ୍କୁ ମନାହୁଏ ସେ ବାଟ ଦେଇ ଯିବାକୁ, ପାଟି କରିବାକୁ—କଣ ନାଁ ମିଟିଂ ହେଉଛି ।

ବାପା ଥିଲେ ବୋଉ ଖାଲି ଚା' ଜଳଖିଆ ଦେଇ ଚାଲିଯାଏ । ବାପା ହସନ୍ତି ନାହିଁ, ବନୁଦାଦା ହସନ୍ତି ନାହିଁ, ବୋଉ ହସେ ନାହିଁ । ବାପା ବେଳେବେଳେ ବୋଉକୁ କହନ୍ତି—'ବସୁନା ଏଇଠି' । 'ନାଇଁ ମୋର କେତେ କାମ ପଡ଼ିଛି' କହି ବୋଉ ଚାଲିଯାଏ ।

ଦିନୁଟାଏ ସେଦିନ ବନୁଦାଦା କଣ ଗୋଟାଏ କହି ନିଜକୁ ନିଜେ ହସିଲେ । ବୋଉ ବି ହସିଲା ତାଙ୍କ ସାଙ୍ଗରେ । ବାପା ଦୁ' ଜଣଙ୍କ ଆଡ଼କୁ ଅନେଇଲେ ଓ କୁନ୍ଥେଇଲା ପରି ହସିଦେଲେ ଟିକିଏ । ବାପାଙ୍କର କଣ ହୋଇଛି କେଜାଣି ।

ବାପା ନାହାନ୍ତି, ଭଲ ହୋଇଛି । ଦାଣ୍ଡଘର ଅନ୍ଧାରରେ ମିଟିଂ ହେଉନାହିଁ । ବାରିରେ ଖରାରେ ଗପ ହେଉଛି । ବନୁଦାଦା ହସୁଛନ୍ତି । ବୋଉ ହସୁଛି ।

ବୋଉ ଆଜି ଖୁସି ହେବ । ବେଶି ରାଗିବ ନାହିଁ । ମୁଣ୍ଡ କୁଣ୍ଡେଇ ଭଲ କରି ରିବନ୍ ବାନ୍ଧିଦେବ । ମଝିରେ ମଝିରେ ହାତ ବନ୍ଦ କରି କୁଆଡ଼େ ଅନେଇ ରହିବ । ଘଣ୍ଟାଏ ଲାଗିବ ମୁଣ୍ଡବନ୍ଧା ସରିଲେ ବେଳକୁ । ବୋଉ ଅଳସେଇ ହୋଇଯିବ ।

ବୋଉ ସକାଳେ ରାଗିକରି କହିଥିଲା ଆଜି ଚୁଡ଼ାଭଜା, କଦଳୀ ଖାଇବାକୁ ଦେବ । ଏତେ ଭଲମନ୍ଦ ଖାଇବାକୁ ପଇସା ଅଛି କେଉଁଠି ? କିନ୍ତୁ ଆଜି ବୋଧହୁଏ ଅନ୍ୟ ଜଳଖିଆ ମିଳିବ, ମହନଭୋଗ ନ ହେଲେ ଆଳୁ ପକୋଡ଼ା । ବନୁଦାଦା ଆସିଛନ୍ତି ।

ଗୀତା ଦାଣ୍ଡପିଣ୍ଡାର ଗୋଟାଏ କୋଣକୁ ଲାଗିଆସିଲା, ସେଠି ବାରିର ଫାଳେ ଦେଖାଯାଏ ।

ବୋଉ ଲଙ୍କାମରିଚ ତୋଳୁଛି । ବନୁଦାଦା ଛିଡ଼ା ହୋଇଛନ୍ତି ସେଠି । ହସୁଛନ୍ତି । ବୋଉ ମୁହଁ ଟେକି କଣ କହିଲା । ବନୁଦାଦା ଆହୁରି ହସୁଛନ୍ତି । ବୋଉ ହସି ହସି ପଛକୁ ଚାଲିଗଲା ।

ପଛଆଡ଼ୁ କାହା ଘରୁ ବତକ ଦୁ'ଟା କାଁ-କାଁ କରି ଧାଇଁ ଧାଇଁ ଆସୁଛନ୍ତି । ତାଙ୍କ ଥଣ୍ଟ ହଳଦିଆ । ଆଙ୍ଗୁଠିରେ ଜାଲି ବନ୍ଧା ହୋଇଛି । ପଛରେ ଗୋଟାଏ ବୁଢ଼ୀ ଦୌଡ଼ୁଛି ।

ଯୋଡ଼ାଏ ବତକ, ଏକାଠି ପଳାଇ ଆସୁଛନ୍ତି । ଏକାଠି କାଁ-କାଁ କରୁଛନ୍ତି । ଭାଇ-ଭଉଣୀ । ନାଇଁ ବାପା, ବୋଉ । ବାପା—ବୋଉ । ଉହୁଁଃ । ନ ହେଲେ—ବନୁଦାଦା, ବୋଉ ? ନାଇଁ, ନାଇଁ—ଛି

ବୋଉ ମୁହଁରେ ଖରା ପଡ଼ୁଛି । କାନଫୁଲ ଚମକୁଛି । ମୁଣ୍ଡରେ ସିନ୍ଦୁର ଚମକୁଛି ।

ବୋଉ ହସୁଛି । ଆଉ ବାପା ଏହିକ୍ଷଣି ପାଖରେ ଥିଲେ···।

ବାଡ଼ିରେ ବାଇଗଣ ହୋଇଛି । କଳା-ମୂଡ଼ମୁଡ଼ୁ ବାଇଗଣ । ଭଜାଳେ କେତେ ବଢ଼ିଆ ଲାଗେ ! ବୋଉ ପଚାରିଲାରୁ ବାପା ସେଦିନ ମନା କଲେ; କିନ୍ତୁ ବନୁଦାଦାଙ୍କୁ ଭଜି କରି ଦେଲେ ବନୁଦାଦା ଖୁସି ହେବେ । ବୋଉ ଖୁସି ହେବ । ବୋଉ ତାଙ୍କୁ କଣ ଖାଇବାକୁ ଦେବ ଆଜି ?

ବନୁଦାଦା କଣ କହୁଛନ୍ତି । "ମୁଁ ନିଶ୍ଚୟ ଆସିବି ତମ ଜନ୍ମଦିନରେ; ଆସିବି ନାହିଁ, ଏ କଥା ହୋଇପାରେ ?"

ବୋଉ ହସୁଛି, ମୁଣ୍ଡକୁ ହଲଉଛି । "ଆ-ହା, ସତେ ଯେମିତି ମୁଁ ଡାକିଲେ ଦୌଡ଼ି ପଳାଇଆସ ସବୁଦିନେ ?"

"ନୁହେଁ ?" କହି ବନୁଦାଦା ଅନଉଛନ୍ତି ବୋଉ ଆଡ଼କୁ । ବୋଉ ହସୁଛି ।

ବାପା ଏମିତି କହିପାରନ୍ତି ନାହିଁ, ବାପାଙ୍କର କଣ ହୋଇଛି ? ବାପାଙ୍କର ଦେହ ଖରାପ, ଔଷଧ ଖାଇ ଠିକ୍ କରି ଦେଉନାହାନ୍ତି ?

···କୁହୁଡ଼ି ଭିତରେ କାର୍ ଯାଉଛି । ଟେଲିଗ୍ରାଫ୍ ତାର ଉପରେ କାଉ ବସିଛନ୍ତି । ଟିକି ପିଲି ବିଜୁ ଘୋଡ଼େଇ-ପୋଡ଼େଇ ହୋଇ ଶୋଇଛି ବୋଉ କୋଡ଼ରେ । ବୋଉ ଖସାଲଡ଼ୁ ଗୋଟାଏ ବାପାଙ୍କ ମୁହଁରେ ପୂରାଇଦେଲା । ବାପା ନାହିଁ ନାହିଁ କରି ଅଧେ ଖାଇଲେ ଓ ଆଉ ଅଧିକ ବୋଉ ମୁହଁରେ ଗୁଞ୍ଜି ଦେଲେ । ଦୁହେଁ ହସୁ-ଆନ୍ତି । ଖସାଲଡ଼ୁ ଝୁରୁଝୁରୁ ହୋଇ ତଳେ ବିଞ୍ଚି ହୋଇଗଲାଣି । ବୋଉ ବିରକ୍ତ ହେଲା ପରି କହୁଥାଏ,—ଡ୍ରାଇଭର୍ ସାମନାରେ ଆଇନା ଅଛି ଜାଣିଛ ? ଏଇ ଏବକା କଥା । ଆମେ ଯାଉଥିଲୁ ଷ୍ଟେସନରୁ ବନୁଦାଦାଙ୍କୁ ଆଣିବାକୁ । ବନୁଦାଦା ନୂଆକରି ଏଠିକୁ ଆସୁଥାନ୍ତି ସେଦିନ ।

ଯଦି ବନୁଦାଦା ନ ଆସିଥାଆନ୍ତେ ।···

ବାବୁଆ ପାଟିକଲାଣି । ରାଜୁ ଭେଁ-ଭେଁ ହେଉଛି । ବୋଉ ଏଇକ୍ଷଣି ଚାଲିଆସିବ । ବନୁଦାଦା ପଳେଇ ଆସିବେ । ବୋଉ ରାଗିବ ।

(ଗୀତା ଦୌଡ଼ିଗଲା ଅନ୍ୟ ପିଲାଙ୍କ ପାଖକୁ । 'ବାବୁଆ ପାଟି କର ନା', 'ରାଜୁ କାନ୍ଦନା' କହିଲା ବେଳକୁ ବାବୁଆ ଗୀତା ଉପରେ ମୁଷ୍ଟି ପ୍ରହାର ଆରମ୍ଭ କରିଦେଲା । ଗୀତା ତା' ଦି'ହାତ ଧରି ପିଟିଲା ବେଳକୁ ବୋଉ ଓ ବନୁଦାଦା ଆସିଗଲେଣି । ବୋଉ ଅନେଇଛି ତା' ଆଡ଼କୁ କଟମଟ କରି । ବନୁଦାଦା ହସୁଛନ୍ତି ।)

'ତୁ କାହିଁକି ମାରିଲୁ ତାକୁ ?'

'ବୋଉ, ମୁ ମାରିନାହିଁ । ସେ ରାଜୁକୁ ମାରିଲା, ମୁଁ ଛଡ଼େଇ ନେଲି ।'

'ସେ ମିଛ କହୁଛୁ ବାପା, ସେ ମତେ ମାଇଲା । ରାଜୁକୁ ପଚାର ।'

( ରାଜୁ ମୁଣ୍ଡ ଟୁଙ୍ଗାଉଛି । ବୋଉ ଗୀତାର କାନ ଧରିଲା । )

'ବୋଉ, ମୁଁ କିଛି କରିନାହିଁ । ସେମାନେ ପାଟିକରୁଥିଲେ, ମୁଁ ଛଡ଼େଇ ଦେଲି ବୋଲି ରାଗିରୁ ବୋଲି ।'

'ଚୁପ୍, ଘର ବୋଉକୁ ଦେଖିପାରେ । ଢ' ମିନିଟ୍ ମଣିଷକୁ ଶାନ୍ତିରେ ରଖେଇ ଦେବେ ନାହିଁ···ଏଇ ଗୀତା ହେଉଛି ସବୁ ନାଟର ଗୋବର୍ଦ୍ଧନ ।'

( ଗୀତା ପାଟି ନକରି କାନ୍ଦୁଛି । ଲୁହ ଝରଝର ହୋଇ ବୋହିଯାଉଛି । ତାର ଭିତରେ ଅନେଇଛି ବୋଉକୁ ଓ ବନ୍ଧୁଦାଦାକୁ । )

ମୁଁ କିଛି କରିନାହିଁ, ବୋଉ ନ ରାଗୁ ବୋଲି ମୁଁ କଜିଆ ଭାଙ୍ଗିବାକୁ ଯାଇଥିଲି । କାଲେ ବୋଉ ପଳେଇ ଆସିବ, ରାଗିବ, ତା' ଖୁସି ଭାଙ୍ଗିଯିବ ବୋଲି ।

ବୋଉ ବୁଝୁନାହିଁ ମୋତେ । ବନ୍ଧୁଦାଦା ହସୁଛନ୍ତି । ତାଙ୍କ ହସ ଦେଖି ରାଗ ଆସୁଛି ।

ଟ୍ରେନ୍ ଚାଲିଯାଉଛି । ମୋଟା ମୋଟା ଚକ । କଳା କଳା ଧୂଆଁ ।

ତା'ର ତଳେ ବନ୍ଧୁଦାଦା ଶୋଇଯାଇଛନ୍ତି । ଆଉ ହସିବେ ସେତେବେଳେ ?

( ବେଲ ଠଣଠଣ ହେଉଛି । ଗୀତା ସ୍କୁଲରୁ ଚାଲୁ ଚାଲୁ ମଝିରେ ମଝିରେ ଢ' ପାହୁଣ୍ଡ ଦୌଡ଼ିଯାଉଛି, ଗୁଡ଼ିକର ଟୋକା କୁଳିଆ ପଛେ ପଛେ ଆସୁଛି ବହି-ବସ୍ତାନି ଧରି । )

ଆଜି ମାଷ୍ଟ୍ରଦାଦା କହିଲେ—"ଗୀତା ଇଜ୍ ଏ ଗୁଡ଼ ଗାର୍ଲ"; ଗୀତା ଇଜ୍ ଏ ଗୁଡ଼ ଗାର୍ଲ । ଅଙ୍କରେ ଦଶରୁ ଦଶ, ଇଂରେଜୀରେ ଦଶରୁ ଆଠ ଓ ଡ୍ରଇଂରେ ଫାଷ୍ଟ । ମାଷ୍ଟ୍ରଦାଦା କହିଲେ, 'ଏମିତିକା ଭଲ କଲେ ତୁ ତ କ୍ଲାସରେ ଫାଷ୍ଟ ହୋଇଯିବୁ !' ସୁମିତା ମୋ ଆଡ଼କୁ କଟମଟ କରି ଚାହୁଁଥାଏ । ରାଗୁଥାଏ, ବୋଧହୁଏ ମୁଁ ଫାଷ୍ଟ ପ୍ରାଇଜ୍ ନେଇ-ଯିବ ବୋଲି ।

ବୋଉ ଆଜି କେଡ଼େ ଖୁସି ହେବ, ଗେହ୍ଲା କରିବ । ଆଜି ତା' ଜନ୍ମଦିନ । ଖୁସି ହୋଇ ନିଶ୍ଚୟ ପୁରସ୍କାର ଦେବ । ରବର୍, କେକ୍, ନ ହେଲେ ଗୋଟାଏ ପେନ୍ସିଲ ।

ଆଜି ବୋଉ ପାଇଁ ପ୍ରେଜେଣ୍ଟ କିଣିଛି, ଟଙ୍କାଙ୍କର ପ୍ରେଜେଣ୍ଟ । କେତେ ଦିନୁ ସାଇତି ସାଇତି ଟଙ୍କାଏ କରିଛି । ଏମିତିକା ପ୍ରେଜେଣ୍ଟ କେହି ଆଣି ନଥିବେ, ରାଜୁଟା କଣ ଦେବ ? ରବର ଖଣ୍ଡେ, ନ ହେଲେ ଢାଉ ଟିକେ ଦେଇ କହିବ, 'ହେଇ ମୋ ପ୍ରେଜେଣ୍ଟ—।' ଦିନକ ପରେ ପୁଣି ମାଗିନେବ; ନ ହେଲେ କାନ୍ଦି ଗଡ଼ିଯିବ । ରାଜୁର ବୁଦ୍ଧି ହୋଇ ନାହିଁ ।

ମୋ'ଠୁଁ ଭଲ ପ୍ରେଜେଣ୍ଟ କଣ କେହି ଆଣିଥିବ ? ବାପା କଣ ଆଣିଥିବେ ? ନିଶ୍ଚୟ

କିଛି ଭଲ ଜିନିଷ ହୋଇଥିବ । ବୋଉ ଦି'ଜଣଙ୍କର ଜିନିଷ ଆଲଗରେ ଥୋଇ ସମସ୍ତଙ୍କୁ କହିବ, 'ହେଇ ଦେଖ ବାପ-ଝିଅଙ୍କର ପ୍ରେଜେଣ୍ଟ ।'

ଆଉ ବଲୁଦାଦା ? ସେ ବି କଣ ଆଣିଥିବେ ? ସେ କାହିଁକି କଣ ଆଣିବେ ? ସେ ବୋଉର କଣ କି ?

ନାଇଁ, ଆଣନ୍ତୁ । କଣ ହେଲା ସେଥିରେ ? ବୋଉ ଖୁସି ହେବ ।

ବୋଉ କଣ ତାଙ୍କ ଜିନିଷ ପାଇ ବେଶି ଖୁସି ହେବ ?

···ଭେଙ୍ଗା ଭେଙ୍ଗା ଡାଲଗଛ । ମୁଣ୍ଡରେ ମେଞ୍ଚାଏ ଠିଆ ଠିଆ ବାଳ । ଦେହଟା ହାଡ଼ ପଞ୍ଜରା, ସବୁ ଚଷ୍ଟାପଡ଼ିଲାଣି; ଖାଲି ମୁଣ୍ଡଟା ବାକି ଅଛି । ଇଏ କଣ,—ମୁଣ୍ଡ ଭିତରୁ ନାଲିଆ ଉଙ୍କି ମାରୁଛି । ସିନ୍ଦୂର ଲଗେଇଛି ? ଉହୁଁ ଃ—ମୁଣ୍ଡ ଫାଟି ରକ୍ତ ବହୁଛି । ନା—ନା—ମୁଣ୍ଡରେ କିଏ ମେଞ୍ଚାଏ ଅବିର ଲଗେଇ ଦେଇଛି । ହୋରି ଖେଳୁଥିଲା ସେ ।

ଏସ୍. ଡ଼ି. ଓ. ଙ୍କ ବଙ୍ଗଳା ଆସିଲାଣି । ଆଉ ଟିକିଏ ଗଲେ ଆମ ଘର ।

···ଜାଗାଟା ହୁଂସ୍‌କୁଟୀ । ହୁଂସାରେ ଜଳଯାଉଛି । ଅମଙ୍ଗୁଳିଆ । କାହିଁକି ଦେଖା-ହେଲା ତା ସାଙ୍ଗରେ ? କାହିଁକି ତାକୁ କହିଲି ପ୍ରେଜେଣ୍ଟ କଥା ? ମୋତେ ଦେଖାଇବାକୁ କହିଲା । ମୁଁ ମନା କଲାରୁ କହୁଛି କଣନା ଆମର ଏସବୁ ଚଳେନାହିଁ, ବାପା ଚଢ଼ନ୍ତି, କହନ୍ତି ଫୁଲେଇ ଢଙ୍ଗ । ହୁଁ ଃ, ଅମଙ୍ଗୁଳିଆ, ମଫସଲିଆ । ନିଜେ ଯେଉଁ ଭଲ ପିଲାଟା ତ ! ସୂର୍ଯ୍ୟମଣି ତା କ୍ଲାସରେ ପଢ଼େ, କହୁଥିଲା ସେ ସେ ମାଡ଼ ଖାଏ ଓ ମାଡ଼ ଖାଇଲେ ଭେ-ଭେ ହୋଇ କାନ୍ଦେ ଭେରଣ୍ଡାଙ୍କ ପରି, ଘରେ ବି' ମାଡ଼ ଖାଉଥିବ, ତା' ବୋଉ କଣ ତାକୁ ମାରୁ ନ ଥିବ ?

ମୋ ବୋଉ କଣ ବେଶି ମାରେ ? ନାଇ—ଏବେ ସିନା ଏମିତ ମାରୁଛି, ହେଲେ ମୋ'ଠୁଁ ରାଜୁ ବେଶି ମାଡ଼ ଖାଏ ।

ଆଜି ବୋଉ ଜନ୍ମଦିନ । ଆଜି ସେ ଖୁସି ଥିବ । ମୋ ପ୍ରେଜେଣ୍ଟ ପାଇ ଆହୁରି ଖୁସି ହେବ । ଜନ୍ମଦିନରେ ଖୁସି ଥିଲେ ପରା ବର୍ଷକଯାକ ଖୁସି ହୁଅନ୍ତି ! ତାହାହେଲେ ବୋଉ ଆଉ ରାଗିବ ନାହିଁ—ଆଜିଠୁଁ···

ହେଇ,—ଆମ ଘର ଆସିଗଲା । ଏଇ ମାଇଲ୍ ଖୁଣ୍ଟ । ତା'ପରେ ଉଇହୁଙ୍କା, ରାଣୀ ଉଇ ଘର କରିଛି । ତା ପରେ ଫୁଟବଲ ପଡ଼ିଆର କାନ୍ଥ । ନର୍ଗିସ୍ ନାକରେ ନୋଲକ ନାଇଛି । ବୋଉ କହୁଥିଲା ବୁଢ଼ୀମା'ର ସେମିତ ନୋଲକ ଥିଲା । ତା'ପରେ—ତା'ପରେ ଆମ ଘର ।

ଘରେ ଆଲୁଅ ଲାଗିଲାଣି । ଦାଣ୍ଡରେ କେହି ନାହାନ୍ତି । ବୋଉ ବୋଧହୁଏ ଘରେ ଅଛି । ବାପା ଅଫିସରୁ ଫେରି ନ ଥିବେ । ରାଜୁ, ବଳୁ କଣ କରୁଛନ୍ତି,—ବୁଲି

ଯାଇଛନ୍ତି ? ତାଙ୍କର ମଜା । ଆରବର୍ଷ ସ୍କୁଲକୁ ଗଲେ ରାଜୁର ମଜା ଗୁଲିଯିବ ଯେ ।

ଅନ୍ଧାର ଆସିଲାଣି । ସିନେମା ଛବି ବାରହେଉନାହିଁ । ପଡ଼ିଆ କାନ୍ଥ ପାଖକୁ ଗ୍ଲେଟିଆ ପାଣିଧାରଟିଏ । କଳା କଳା ଦିଶୁଛି । ପାଖକୁ ଯିବ ? ନାହିଁ,—ତା ଭିତରେ ସେ ଦିନ ଥିଲା ଗୋଟାଏ କଳା ପୋକ । ପୋକ ଥିବ ଏହିକ୍ଷଣି,—ଅନ୍ଧାର ଭିତରେ ବସିଥିବ । ଚୁପ୍‌ଚାପ୍ ହୋଇ ଘାସଫୁଲାକ ମଝିରେ । ବୁଢ଼ୀ ଅସୁରୁଣୀ । ଅନ୍ଧାର ଜଙ୍ଗଲ ଭିତରେ ବସିଛି ଏକୁଟିଆ, ପାଖକୁ ଆସିଲେ ଟାକୁ କାମ ଗିଳଦେବ ।.

ଶୀତ ଲାଗୁଛି, ହାତରେ କଣ ଟିକଏ ଟିକଏ ଫୁଲଉଠୁଛି । ରୋମ ଟାଙ୍କୁର ହଉଛି ? ଡର ଲାଗିଲେ ପରା ରୋମ ଟାଙ୍କୁରଉଠେ ।

ପ୍ରେଜେଣ୍ଟ କାହିଁ ? ପ୍ରେଜେଣ୍ଟ ହାତରେ ଅଛି ନା ? ଗୀତା ମୁଠାଇ ଧରିଲା· ହାତରେ ଥିବା କାଗଜ ପୁଡ଼ିଆଟିକୁ । ତାର ଚାଲି ଧୀର ହୋଇ ଆସିଲା ଘର ଫାଟକ ପାଖରେ ପହଞ୍ଚିଲା ବେଳକୁ ।

ଘରେ ଆଲୁଅ ଜଳୁଛି । ବାହାର ଅନ୍ଧାର, କେହି ନାହାନ୍ତି । ଫୁଲ ସବୁ ଶୋଇ-ପଡ଼ିଲେଣି ।

ପୁଛାଘର କବାଟ ଖୋଲଦେଲାଣି । ବୋଉ କାହିଁ ? ମା' ଯାଇଛନ୍ତି ମିଶ୍ର ବାବୁଙ୍କ ଘରକୁ । ପିଲାଏ ଖେଳିବାକୁ ଯାଇଛନ୍ତି । ବାବୁ କଚେରିରୁ ଫେରିନାହାନ୍ତି ।

ବୋଉ ନାହିଁ, କେହି ନାହାନ୍ତି । ବୋଉର କଣ ମନେ ନାହିଁ ଆଜି ତାର ଜନ୍ମଦିନ ବୋଲି ?

ନାହିଁ, ବୋଉ ଏକ୍ଷଣି ଫେରିଆସିବ । ମୁଁ ତାକୁ କହିବ ମୁଁ କ୍ଲାସରେ ଫାଷ୍ଟ ହୋଇଛି ବୋଲି । ସେ ଆସିବା ଆଗରୁ ମୁଁ ମୋ ପ୍ରେଜେଣ୍ଟ ସଜାଡ଼ି ରଖିବ ମଝିଘରେ, ଆଲୁଅ ତଳେ । ବୋଉ ଖୁସି ହେବ । କେହି ନାହାନ୍ତି, ଭଲ ହୋଇଛି ।

ଯାଉଛି, ଆଗେ ତାକୁ ଦାଣ୍ଡଘରକୁ ନେଇଯାଏ, ସେଇଠି ଖୋଲି, ଠିକ୍‌ଠାକ୍ କରି ମଝିଘରକୁ ନେଇଯିବ ।

( ଦାଣ୍ଡଘରକୁ ଯିବା ବାଟରେ ଗୀତା ଠିଆହୋଇଗଲା ବାରପଟ କବାଟ ପାଖରେ । କବାଟ ମେଲା ହୋଇଛି । )

ଘୂରଆଡ଼େ ଅନ୍ଧାର । ଗଛ ପାଖରେ ବେଶି ଅନ୍ଧାର । ଅନ୍ଧାରରେ କଥା ଶୁଭୁଛି । କଥା ନୁହେଁ—ପବନ, ପବନରେ ଗଛ କଥା କହୁଛି । କେତେ ଦୂରରେ କାହା ଘରେ ଆଲୁଅ ଜଳୁଛି । ଚୌଧୁରୀଙ୍କର ଦୁଇ ମହଲା କୋଠାଘର ଉପର ମହଲାରେ ଆଲୁଅ ଜଳୁଛି । ଆଲୁଅ ପବନରେ ଥରୁନାହିଁ କାହିଁକି ?

ଦାଣ୍ଡଘରେ ଆଲୁଅ ଜଳୁଛି । କାନ୍ଥରେ ଫଟୋ ଟଙ୍ଗା ହୋଇଛି—ବୋଉ ମନେ

କୋଳରେ ଧରି ଛୁଡ଼ା ହୋଇଛି । ବୋଉ ହସୁ ନାହିଁ ।

ପବନରେ ଅନ୍ଧାର ଥରୁଛି, କଥା କହୁଛି; କିନ୍ତୁ ଆଲୁଅରେ କିଛି ହେଉ ନାହିଁ । ବୋଉ ଆଲୁଅରେ ରହିଛି ଏକୁଟିଆ, ଖୁଣ୍ଟପରି । ସେଠିକି ପବନ ଯାଉନାହିଁ । ପବନ ସେଠିକି ଆସନ୍ତା । ମୁଣ୍ଡବାଳ ଫୁରୁଫୁରୁ ହୋଇ ଉଡ଼ିଉଠନ୍ତା । ବୋଉର ଓଠ ଥରି ଉଠନ୍ତା । ବୋଉ ହସନ୍ତା, କଥା କହନ୍ତା, ରାଗନ୍ତା—।

ବୋଉ ଯଦି ସତରେ ଏଇ ଫଟୋ ଭଳିଆ ହୋଇଯାଏ, ରାଗିବା ବି ବନ୍ଦ କରିଦିଏ ।

ହେଇ—ସେ କଣରେ ପୋଲିସ୍ ଲାଇନ୍ ପଡ଼ିଆ ଉପରେ ଜହ୍ନ । ଫାଳେ କଟି-ଯାଇଛି । ଚୁଲିରେ କଟା ହେଲା ପରି ନୁହେଁ, କିଏ ଛଡ଼େଇ ନେଲା ପରି । ତା' ଚାରି ପାଖଯାକ ଗୋଲ ହୋଇ ପାଉଁଶିଆ ଆଲୁଅ, କୁହୁଡ଼ି ।

ଜହ୍ନମାମୁ । ତାକୁ ମାମୁ କାହିଁକି କହନ୍ତି ? ବୋଉର ଭାଇ, ବୋଉର ଚାରି ଭାଇ, ଇଏ ପାଞ୍ଚ । ସତରେ ମାମୁ ? ମାମୁ ମୁହଁ ଗୋଲ, ମାମୁ ମୁହଁ ଗୋରା । ବୋଉ ମୁହଁ ଗୋଲ, ଗୋରା ମାମୁ ହସୁଛି,—ନାଇଁ ତ । ଏକୁଟିଆ ମୁହଁକୁ ଶୁଖେଇ ବସିଛି । ପାଖରେ ତାରାଟିଏ ନାହିଁ । । କେହି ନାହିଁ । ଏକୁଟିଆ । ବୋଉ ଭଳିଆ ।

( କିଛି ସମୟ ପରେ । ଗୀତା ଦାଣ୍ଡଘରେ । ତାର ଆଲମାରିକା ଖେଳଣା ସଜାଡ଼ୁଛି । )

ବରକନ୍ୟା ମଝିରେ, ଦି' ପାଖରେ ବାଜାବାଲା । କନ୍ୟା ସାଙ୍ଗରେ ଯାଉଛି ଖଟ, ଆଲମାରି, ଟେବୁଲ୍ , ସୋଫା ସେଟ୍ । ଆଉ ସିଲେଇ ମେସିନ୍ , ରେଡ଼ିଓ ? ଏଥରକ ବଜାରକୁ ଗଲେ କହିବ ବୋଉକୁ କିଣିଦେବ ।

ଥାକ ଉପରୁ ମହାଦେବ ଅନେଇଛନ୍ତି । ଗୋଟାଏ ଗୋଡ଼ ଉଠିଛି ବଙ୍କା ହୋଇ । ହାତରେ ଡମ୍ବରୁ । "ବମ ବମ୍ ବାଜେ ଡମ୍ବରୁ··· ବାଜେ ଡମ୍ବରୁ ।"

ବୋଉର ଏଇ ପ୍ରେଜେଣ୍ଟ,—ସେ କୋଉଠି ରଖିବ ? ଦାଣ୍ଡଘର ଖେଳଣା ଥାକରେ, ମଝିଘର ଥାକରେ, ନା ଶୋଇବାଘର ଆଇନା ଟେବୁଲ ଉପରେ ? ବୋଉ ପୁଣି ମନେ କଣ ଫେରାଇଦେବ । ମୋ ବରକନ୍ୟା ତାକୁ ପାଇ ଭାରି ଖୁସି ହୁଅନ୍ତେ, ନାଇଁ ଆଉ । ସେ ବୋଉର ବୋଉ ତାକୁ ନେଇ ଯାହା କରିବ ।

ଯାଉଛି ଖୋଲିବ ତାକୁ । ଏକ, ଦୁଇ, ତିନି ····କାଗଜରେ ବନ୍ଧାହୋଇ ଅସନା ଦେଖାଯାଉଛି । ମୁଁ ଗୋଟାଏ ସୁନ୍ଦରିଆ ଖୋଲ ମାଗିଲି ଯେ, ଦେଲା ନାହିଁ ।

ପ୍ରେଜେଣ୍ଟ । ପଦ୍ମଫୁଲ । ଚକ୍‌ଚକ୍ ଧଳା ଶାମୁକା, ଖଞ୍ଜା ହୋଇଛି ଗୋଟିକି ଗୋଟି ଫୁଲର ପାଖୁଡ଼ା, ପାଖୁଡ଼ା ଅଗରେ ସରୁ ସୁନେଲି ଗାର । ଫୁଲ ମଝିରେ କଣ ଲୁଆ ଲୁଆ

ହୋଇ ଗୁନ୍ଥା ହୋଇଛି । ହଳଦିଆ ହୋଇ । ଫୁଲର କେଶର ।

ଦୋକାନବାଲା କହୁଥିଲା ବେଶି ଟଙ୍କା ଥିଲେ ଆହୁରି ସୁନ୍ଦର ଫୁଲ ମିଳିଥାନ୍ତା, ସୁନା-ରୁପା ଲଗା ହୋଇ । ହଉ, ଏଇ କଣ ସୁନ୍ଦର ହୋଇନାହିଁ ?

ଏହାକୁ ନେଇଯାଉଛି ଥାକ ଉପରକୁ । ମହାଦେବଙ୍କ ପାଖକୁ । ସବୁ ଆଲୁଅ ଲିଭେଇ ଦେବି । ଖାଲି କାନ୍ଥର ସେଇ ଧଳା ଆଲୁଅଟି ଜଳୁଥିବ,—ଠିକ୍ ମହାଦେବଙ୍କ ଦେହରେ ଓ ମୋ ଫଦୁଫୁଲ ଉପରେ ।···

··· ·····ଭଲ ହୋଇନି ? ନିଶ୍ଚୟ ଭଲ ହୋଇଛି, ବଢ଼ିଆ ହୋଇଛି । କଣ କହୁଛ, ମିଷ୍ଟର ମହାଦେବ ? ବୋଉ ନିଶ୍ଚୟ ଖୁସି ହେବ,—ନୁହେଁ ?

ଯାଉଛି ଏହାକୁ ମନ୍ଦିରକୁ ନେଇଯାଏ । ବୋଉ ସେଇଠିକୁ ଆସିବ ଆଗେ । ତା' ଆଖିରେ ପଡ଼ିବ ।

( 'ପ୍ରେଜେଣ୍ଟ'କୁ ହାତରେ ଧରି ଗୀତା ଧୀରପାଦରେ ମନ୍ଦିରଘର ଆଡ଼କୁ ମୁହାଁଇଲା । ଘର ଦୁଆରବନ୍ଧରେ ପହଞ୍ଚି ଅନ୍ଧାରରେ ଅନ୍ଦାଜି ଅନ୍ଦାଜି ଆଲୁଅ ସୁଇଚ୍ ଟିପିଦେଲା । )

ଘର ସାରା ଆଲୁଅ । ବନ୍ଧଣା ହୋଇନାହିଁ । ପିଲାଙ୍କ ଧୂଆ ଜାମାପଟା ଗଦା ହୋଇ ପଡ଼ିଛି ସେମିତି । ବୋଉ ଆସିଲେ ଚଢ଼ିବ କୁଳଆ ଉପରେ ।

ଏ, ଇଏ କଣ ? କାନ୍ଥକଣର ତିନି କୋଣିଆ କାଠ ପଟା ଉପରେ ନୂଆ ଜିନିଷଟାଏ ଥୁଆ ହୋଇଛି । ଚକ୍‌ଚକ୍ ଧଳା । ଧଳା ପଥର ନା ରୁପା ? ସବୁଯାକ ଆଲୁଅ ପଡ଼ୁଛି ତା ଉପରେ । କେଡେ ବଡ଼, କେଡେ ସୁନ୍ଦର ! କିଏ ଆଣିଲା ଏହାକୁ ? ହାତ ପାଇବ ନାହିଁ । ଖଟବାଡ଼ରେ ଚଢ଼ି ଦେଖିବ ।

( ତା ପ୍ରେଜେଣ୍ଟକୁ ଟେରକା ଉପରେ ଥୋଇ ଗୀତା ଖଟବାଡ଼ ଉପରେ ଚଢ଼ିଲା ନୂଆ ଜିନିଷଟିକୁ ଦେଖିବା ପାଇଁ । )

ପାଖରେ ଆହୁରି ସୁନ୍ଦର ଦେଖାଯାଉଛି । ଆହୁରି ବଡ଼ ଧଳା, କଣ ଇଏ ? କୋଠା ନା ଦେଉଳ ? ନା—ନା—ଇଏ ହେଉଛି ତାଜମହଲ । ଆମ ଇତିହାସ ବହିରେ ଛବି ଅଛି । ଧଳା ମାର୍ବଲ ପଥରରେ ତିଆରି । ଆଗ୍ରାରେ ଅଛି । କିଏ ତିଆରି କରିଥିଲେଟି—?

ଏଇ ବି' କଣ ମାର୍ବଲ ପଥର । ହଁ ତ—ହାତକୁ ଚିକ୍କଣ ଲାଗୁଛି । ଥଣ୍ଡା ଲାଗୁଛି । କେତେ ଟଙ୍କା ହୋଇଥିବ—?

ତା ତଳେ ଖଣ୍ଡେ କାଗଜ ରଖା ହୋଇଛି । କଣ ଲେଖା ହୋଇଛି ଶାଗୁଆ କାଳିରେ ।

'ନୂଆବୋଉଙ୍କ ଜନ୍ମଦିନରେ—ବନି' । ବନି ଦାଦା ଦେଇଛନ୍ତି ? ବୋଉ ପାଇଁ

ପ୍ରେଜେଣ୍ଟ ?

ପଛଆଡ଼େ କୁଳଆ ଆସିଲାଣି । 'ଗୀତା ଦେଇ, ସେଥିରେ ଲାଗିନାହିଁ । ଏଇ ଟିକକ ଆଗରୁ ବନ୍ଟୁବାବୁ ଆସିଥିଲେ, ରଖି ଦେଇ ଯାଇଛନ୍ତି । ମାଆ ଦେଖିନାହାନ୍ତି ।'

'ହଉ ହେଲା ଯା, ମୁଁ ଜାଣେ । ତୁ ଗଲୁ ଏଠୁ ।'

ବନ୍ଟୁଦାଦା ପ୍ରେଜେଣ୍ଟ ଦେଇଛନ୍ତି । ବଢ଼ିଆ ଜିନିଷ । ଦାମିକା ଜିନିଷ । ବୋଉ ଖୁସି ହେବ । ଭଲ ଜିନିଷ ବୋଲି, ଆଉ ବନ୍ଟୁଦାଦା ଦେଇଛନ୍ତି ବୋଲି ।

ମୋ ଜିନିଷ ଥୁଆହୋଇଛି ଟ୍ରଙ୍କ ଉପରେ ଟ୍ରଙ୍କର ଅନ୍ଧାରିଆ କଣରେ । ଧଳା ଦିଶୁନାହିଁ, ଚକ୍‌ଚକ ଦିଶୁନାହିଁ । ଅପରିଛନିଆ ଦିଶୁଛି ।

ବୋଉକୁ ଦେବ ନାହିଁ ମୋ ପ୍ରେଜେଣ୍ଟ ? ଦେଲେ ଲାଭ କଣ ? କାହିଁ ତାଜମହଲ, ଆଉ କାହିଁ ମୋ ଶାମୁକା ! ବୋଉ ରଖିଦେବ କୋଉ କଣରେ, ପଚାରିବ ନାହିଁ । କେହି ପଚାରିବେ ନାହିଁ । ବନ୍ଟୁଦାଦାଙ୍କ ଜିନିଷକୁ ଭାଙ୍ଗି ଦେଲେ, ଫୋପାଡ଼ି ଦେଲେ—?

ନାହିଁ—ନାହିଁ, ପ୍ରେଜେଣ୍ଟ ଭଲ ସୁନ୍ଦର । ଏ ହେଉଛି ବଡ଼ମାନଙ୍କର ପ୍ରେଜେଣ୍ଟ, ମୋର ହେଉଛି ପିଲାମାନଙ୍କର ପେଜେଣ୍ଟ । ବୋଉ ବନ୍ଟୁଦାଦାଙ୍କର ଜିନିଷ ପାଇ ଖୁସି ହେବ, ମୋର ପାଇ ବି ଖୁସି ହେବ ।

ଏ ଜିନିଷ କଣ ଏଇଠି ଥିବ ? ନା, ଡ୍ରଇଂରୁମକୁ ନେଇଯିବ ? ଚୌଧୁରୀଙ୍କ ଘର ମଧୁପୁର ଯାଇଥିଲେ । ତାଙ୍କ ଆଣିଥିବା ଜିନିଷ ଡ୍ରଇଂରୁମରେ ଅଛି । ନନ୍ଦଭାଇ ବମ୍ବେରୁ କେତେ ଜିନିଷ ଆଣିଥିଲେ,—ସେ ବି ସେଇଠି ଅଛି । ବନ୍ଟୁଦାଦାଙ୍କ ଜିନିଷ ସେଇଠି ରହିବ, ଭଲହେବ ।

ଏଠି ରହିଥିବ ମୋ ଜିନିଷ । ବୋଉ ଆଖି ଆଗ ପଡ଼ିବ ଏଠି ।

(ଗୀତା ତାଜମହଲର ମୂର୍ତ୍ତିଟିକୁ ଆସ୍ତେ ଉଠାଇ ଗୋଟାଏ ହାତରେ କୁଣ୍ଢାଇ ଧରି ଓହ୍ଲାଇବାକୁ ଚେଷ୍ଟା କଲା ।)

ଆରେ ନାହିଁ—ନାହିଁ···ଓଃ···'ଧଡ଼ାସ୍'···

(ତାଜମହଲ ତଳେ ପଡ଼ି ଚୂନା ହୋଇ ଯାଇଛି । ଗୀତା ପାଖରେ ଛିଡ଼ା ହୋଇ ଅନେଇ ରହିଛି ତାକୁ । ଆଖିରେ ଡର, ସବୁ ସରିଗଲାର ଭାବ )

ଇସ୍ସ୍ କଣ ହେଲା ? କାହିଁକି ହେଲା ?

ବୋଉର ଜନ୍ମଦିନର ପ୍ରେଜେଣ୍ଟ ଭାଙ୍ଗି ଯାଇଛି । ବନ୍ଟୁଦାଦାଙ୍କର ଦିଆ ପ୍ରେଜେଣ୍ଟ ଭାଙ୍ଗି ଯାଇଛି । ବୋଉର ସବୁ ଭରସା ଭାଙ୍ଗିଗଲା ।

ବୋଉ ରାଗିବ । ବୋଉ ତ ସବୁଦିନେ ରାଗେ; କିନ୍ତୁ ଆଜି ଅଧିକ ରାଗିବ । ବନ୍ଟୁ-

ଦାଦାଙ୍କର ଜନଷ ଭାଙ୍ଗି ଯାଇଛି । ସବୁ ଜନ୍ମଦିନର ସଉକ୍ ସୁଲିଯିବ ।

ଆଉ ମୁଁ ବୋଉ ପାଇଁ ପ୍ରେଜେଣ୍ଟ ଆଣିଥିଲି । ସେ ସେଇଠି ପଡ଼ିରହିଛି ଝରକା ଉପରେ । ତାକୁ ବି ଭାଙ୍ଗି ଦେବ ଯାଉଛି ।

ନାଇଁ—ନାଇଁ, ମୁଁ ତାକୁ ଭାଙ୍ଗିନାହିଁ । ମୁଁ ଜାଣିଶୁଣି ଭାଙ୍ଗିନାହିଁ । ମୁଁ ଚାହିଁ ନ ଥିଲି ବନୁଦାଦାଙ୍କର ଜନଷ ଭାଙ୍ଗି ଯାଉ ବୋଲି । ବନୁଦାଦାଙ୍କର ଜନଷ ପାଇଲେ ବୋଉ ବେଶି ଖୁସି ହେବ । ମୁଁ ତାକୁ ଦାଣ୍ଡଘରେ ରଖିବାକୁ ଯାଉଥିଲି ।

ବୋଉ କଣ ବୁଝିବ ? ଦାଣ୍ଡଘରକୁ ନେଇ ଯାଉଥିଲି କାହିଁକି ? ମୋ ଜନଷକୁ ଏଠି ରଖୁଥିଲି କାହିଁକି ?

ନାଇଁ—ମୁଁ ଜାଣିଶୁଣି କିଛି କରିନାହିଁ । ମୁଁ ବନୁଦାଦାଙ୍କ ଜନଷ ଭାଙ୍ଗି ନାହିଁ । ବୋଉ ମତେ ଭଲପାଏ । ବୋଉ ବୁଝିବ ।

କିନ୍ତୁ ବନୁଦାଦାଙ୍କ ଜନଷ ଭାଙ୍ଗି ଯାଇଛି । ଘର ଜନଷ ନୁହେଁ । ବାପାଙ୍କ ଜନଷ ନୁହେଁ । ବୋଉ ଖାଲି ରାଗିବ ନାହିଁ । ବୋଉ ବ୍ୟସ୍ତ ହେବ ।

ମୁଁ କାହିଁକି ଏଠୁ ନେଇଯାଉଥିଲି ତାକୁ ? ବୋଉ ମୋ ଜନଷ ଆଗେ ଦେଖିବ ବୋଲି ? କାହିଁକି ଏମିତି କଲି । ବନୁଦାଦାଙ୍କର ଜନଷ ମୋ'ଠାରୁ ଭଲ, ସୁନ୍ଦର । ବୋଉ ପାଇଁ ବନୁଦାଦାଙ୍କର ଜନଷ ମୋ'ଠାରୁ ଭଲ, ସୁନ୍ଦର ।

ଏଇକ୍ଷଣି ସେମାନେ ଆସିବେ । ବୋଉ ଫେରିବ । ବନୁଦାଦା ଆସିବେ । ମୁହଁରେ ମୁରୁକି ହସ । ବାପା ଆସିବେ; କିନ୍ତୁ ତାଙ୍କ ଆସିବାରେ କଅଣ ଅଛି ?

ମୁଁ କାହିଁକି ଏମିତି କଲି ?...

(ମୁହଁରେ ହାତ ଦେଇ ଗୀତା ଖଟ ଉପରେ ବସିପଡ଼ିଲା । ଅନର୍ଗଳ ଲୁହ ହାତ-ପାପୁଲି ଭିଜାଇଦେଲା । କିଛି ସମୟ ପରେ ।)

ଯୋତା ମଚ୍‌ମଚ୍ ଶୁଭୁଛି । କିଏ ଆସିଲା ? ବନୁଦାଦା ନୁହେଁ । ବାପାଙ୍କ ଜୋତା ।

(ଗୀତାର ବାପା ଘର ଭିତରକୁ ପଶିଯାଇ ଦେଖିଲେ ଏ ଦୃଶ୍ୟ । ମୁହଁରେ କ୍ଳାନ୍ତି ଓ ବ୍ୟସ୍ତତା ସବୁଦିନ ପରି ।)

'ଇଏସ୍ କଣ ପଡ଼ିଛି ?'

(ଉତ୍ତର ନାହିଁ)

'ଇଏସ୍ କଣ ଭାଙ୍ଗି ଯାଇଛି, ପଚାରୁଛି ପରା ?'

'ପ୍ରେଜେଣ୍ଟ,—ବନୁଦାଦା ଆଣିଥିଲେ ବୋଉ ପାଇଁ ।' ବାପା ଚୁପ୍ ହୋଇଗଲେ । କଣ ଭାବୁଛନ୍ତି । ବାପା ଫେରିଯାଉଛନ୍ତି । କିଛି କହୁନାହାନ୍ତି କାହିଁକି ?

(କାନ୍ଦ ଭିତରେ ବି ଗୀତାର ମୁହଁ ଟିକିଏ ଉଜ୍ଜ୍ୱଳ ହୋଇ ଆସିଲା । କଣ ଗୋଟିଏ

ନୂଆ ଆଶା ପାଇଲା ପରି ।

ବାପା ଫେରିଯାଉଛନ୍ତି । ପଚ୍ଛରିବ ? ପଚ୍ଛରିବ ?...

'ବାପା, ବାପା—'

'କଅଣ ?'

(ଗୀତା ଦୌଡ଼ିଗଲା ତା ବାପାଙ୍କ ପାଖକୁ)

'ବାପା,—ବୋଉ ପାଇଁ ପ୍ରେଜେଣ୍ଟ ଆଣିଛ ?'

# ଚନ୍ଦ୍ରର ଅଭିଶାପ

## ଅଖିଳମୋହନ ପଟ୍ଟନାୟକ

ଦଶବର୍ଷ ଅତିକ୍ରାନ୍ତ ହୋଇଯାଇଛି ।

ସରୋଜ ଆଉ ସୀମାଦ୍ରି ପରସ୍ପରର ଅନ୍ତରଙ୍ଗ ବନ୍ଧୁ ଥିଲେ । ସେମାନେ ଥିଲେ ସିଟି କଲେଜର ଆର୍ଡ଼ଇୟର୍‌ର ଛାତ୍ର । ସୀମାଦ୍ରି ଥିଲା ଆର୍ଟିଷ୍ଟ । ସେ ଛବି ଆଙ୍କେ ନାହିଁ ବା ଶୋଇ ଶୋଇ ଜ୍ୟୋତ୍ସ୍ନା ବସନ୍ତ ବା ଗୋଲାପଫୁଲ ମାର୍କା କବିତା ଲେଖେ ନାହିଁ । ସେ କହେ, ଜୀବନଟାକୁ ବଞ୍ଚାଇବା ହିଁ ସବୁଠାରୁ ବଡ଼ ଆର୍ଟ । ଆଉ ଯେ ଜୀବନଟାକୁ ପ୍ରତିଦିନ ନିତ୍ୟ ନୂତନ କରି ଦେଖିପାରିଲା, ତା ଠାରୁ ବଡ଼ ଆର୍ଟିଷ୍ଟ ଆଉ କେହି ନାହିଁ । ସେଥିପାଇଁ ସେ ଚେଷ୍ଟରଟନ୍‌ଙ୍କ ଅପେକ୍ଷା ତାଙ୍କର ଅଜବ-ଜୀବକାର ଚରିତ୍ର ହେବାକୁ ବେଶି ପସନ୍ଦ କରେ । ସେ ମମଙ୍କ ପରି ପୃଥିବୀପ୍ରତିକି ଘୃଣାକୁ ଚାହେଁ ନାହିଁ, ତାଙ୍କର ସୃଷ୍ଟି 'ଷ୍ଟ୍ରିକଲଣ୍ଡ' ଚରିତ୍ର ପରି କେଉଁ ଅଜ୍ଞାତ ଗିରି-ଗହ୍ୱରରେ ଦୁରାରୋଗ୍ୟ ବ୍ୟାଧିରେ ତିଳ ତିଳ ହୋଇ ମରିବାକୁ ଚାହେଁ । ସୀମାଦ୍ରି ଅନାବିଳ ଆର୍ଟିଷ୍ଟ ଏବଂ ରୋମାଣ୍ଟିକ ପ୍ରକୃତି ତାର ଏକ ସହଜାତ ପ୍ରବୃତ୍ତି କହିଲେ ଅତ୍ୟୁକ୍ତି ହେବନାହିଁ; କିନ୍ତୁ ସରୋଜ ପୁରାପୂରି ସିନିକ୍ । ଦୁନିଆଟାରେ ଯେ କିଛି ଗୋଟାଏ ହେବ ବା ମନୀଷ ଜୀବନ ନେଇ ଯେ ପ୍ରକୃତରେ କିଛି ଗୋଟାଏ ଲାଭଜନକ ଜିନିଷ କରାଯାଇ ପାରିବ, ଏ କଥା ସେ ଆଦୌ ବିଶ୍ୱାସ କରେ ନାହିଁ । ସେ ଯଥାର୍ଥରେ ସୀମାଦ୍ରିର କାଉଣ୍ଟର ପାର୍ଟ—ଆଉ ସେଥିପାଇଁ ବୋଧହୁଏ ସେମାନେ ପରସ୍ପରର ଏତେ ନିକଟକୁ ଆସିପାରିଥିଲେ ।

ସହରର କୋଳାହଳ ସେମାନଙ୍କୁ ବିଶେଷ ଆକୃଷ୍ଟ କରିପାରେନାହିଁ । ପ୍ରତିଦିନ ସନ୍ଧ୍ୟାରେ ଦୁଇ ବନ୍ଧୁ ବୁଲିଯାଆନ୍ତି କେନାଲ ଆଡ଼େ । ସହରର ଉପକଣ୍ଠରେ ଏଇ କେନାଲଟି କିଛି ବାଟ ବହିଯାଇ ହଠାତ୍ ମୋଡ଼ ଭାଙ୍ଗି କୁଆଡ଼େ ଅଦୃଶ୍ୟ ହୋଇଯାଇଛି । ପ୍ରତିଦିନ ବୁଲି ଯାଉ ଯାଉ ସେମାନେ ସେଠି ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ଆବିଷ୍କାର କରିଛନ୍ତି । ସ୍ଥାନଟି ଅଳ୍ପ । କେଇଟି ବଡ଼ ବଡ଼ ଗଛର ଆଢ଼ୁଆଳରେ ଅପେକ୍ଷାକୃତ ନିର୍ଜନ । ଠିକ୍ ପାଣିକୂଳରେ କିଛି ପରିମିତ ସ୍ଥାନରେ ବାଲି ଜମିଯାଇଛି, ଆଉ ତା'ରି ଉପରେ ଗୋଟାଏ ପଥରର ଖୁଣ୍ଟି କାହିଁ କେଉଁ କାଳରୁ ଠିଆ ହୋଇ ରହିଛି ପାଣି-

ପବନର ଅତ୍ୟାଚାର ସହ୍ୟ କରି କରି, ସେଇଟା ବୋଧହୁଏ ଗୋଟାଏ ପୁରାତନ ଲାଇଟ୍ ହାଉସ୍, ଆଉ ସେମାନେ ଯେଉଁଠାରେ ବସନ୍ତି ସେଇଟା ବୋଧହୁଏ ଗୋଟାଏ ପରିତ୍ୟକ୍ତ ଗାଧୁଆ ଘାଟ । କାଳକ୍ରମେ ଗୋଟିକର ବ୍ୟବହାର ଅଭାବରୁ ଅନ୍ୟଟି ପଙ୍କ୍ ହୋଇ ପଡ଼ିଛି । ଚନ୍ଦ୍ର ପକ୍ଷରେ ସ୍ଥାନଟି ବେଶ୍ ରୋମାଣ୍ଟିକ୍ ହୋଇଉଠେ । ସୀମାଦ୍ରି କହେ, "ଏଇ ଜାଗାକୁ ଆସିଲେ ମୋର ମନେହୁଏ ସେକ୍ସପିଅର୍‌ଙ୍କର ମିଡ୍ ସମର୍ ନାଇଟସ୍ ଡ୍ରିମ୍‌ର ପରୀମାନେ ବୋଧହୁଏ ନିଶାର୍ଦ୍ଧରେ ଏଇଠି ଓହ୍ଲେଇ ଆସି ହାତ ଧରାଧରି ହୋଇ ନାଚନ୍ତି ଜ୍ୟୋତ୍ସ୍ନା-ଆଲୁଅରେ ।" ସରୋଜ ଶ୍ଳେଷ ମିଶାଇ କୁହେ, "ତୁ ତ ଜାଣୁ ସେକ୍ସପିଅର ବୋଲି କେହି ଜଣେ ଲୋକ ଥିଲେ କି ନାହିଁ ସେଇଟା ଆଜି ୟୁରୋପୀୟ ସାହିତ୍ୟିକମାନଙ୍କର ଏକ ଚରମ ଦ୍ୱନ୍ଦ୍ୱମୂଳକ ସମସ୍ୟା, ଶେଷରେ ପୁଣି ତାଙ୍କର ଲେଖାର ପରୀମାନଙ୍କର ଅସ୍ତିତ୍ୱ—ଆଉ ପୁଣି ଏଇ କେନାଲ କୂଳରେ !"

ସୀମାଦ୍ରିର ଯେ ଠିକ୍ ଏଇ ଜାଗାରେ ଧୈର୍ଯ୍ୟଚ୍ୟୁତ ହେବ, ସେ କଥା ସରୋଜ ବେଶ୍ ଜାଣେ । ସୀମାଦ୍ରି ଚିତ୍କାର କରି ଉଠେ, "କେତେ ଥର କହିଛି ତୋତେ, ଆମେ ଯାହା ଜାଣୁନା ସେଟା ଯେ ପୃଥିବୀରେ ନାହିଁ ବା ଥାଇ ନ ପାରେ ଏ କଥା ଭାବିବାଠାରୁ ଚରମ ନିର୍ବୋଧତା ଆଉ କିଛି ନାହିଁ । ଇମାଜିନ୍—ପଞ୍ଚଦଶ ଶତାବ୍ଦୀରେ ଯଦି ତୋ ପରି ଗୋଟାଏ ମୂର୍ଖ ଉଡ଼ାଜାହାଜର ଧାରଣାଟାକୁ ହସି ହସି ଉଡ଼େଇ ଦେଇ ଥାଆନ୍ତା ତାହାହେଲେ ସେ ହୁଏତ ଏତେଦିନ ବଞ୍ଚି ପାରନ୍ତା ନାହିଁ; କିନ୍ତୁ ଯଦି ବଞ୍ଚନ୍ତା ତାହାହେଲେ ସେ ଅବା ଉପଲବ୍ଧି କରନ୍ତା ତା'ର ନିର୍ବୋଧତା ।"

ଆଉ କିଛି ଦରକାର ନାହିଁ । ଯେ କୌଣସି ଗୋଟାଏ ଟପିକ୍ ହାତକୁ ଆସିଗଲେ, ସମସ୍ତଟା ଚମତ୍କାର କଟେ । ଯୁକ୍ତିର କ୍ଳାଇମାକ୍ସରେ ସୀମାଦ୍ରି ତା ହାତର ସ୍ଥବି-ପେନ୍ସାଟାକୁ ଫିଙ୍ଗି ଦିଏ ଦୂରକୁ । ନ ହେଲେ ପୁରା ସିଗାରେଟ୍ ପ୍ୟାକେଟ୍‌ଟାକୁ ଦଳାଦଳି କରି ଫିଙ୍ଗି ଦିଏ କେନାଲ୍‌ର ପାଣିକୁ । ଯେମିତି ଏଇ ସିଗାରେଟ୍ ଆଉ ସ୍ଥବ ପ୍ରଭୃତି ପଦାର୍ଥମାନେ ତା ବିରୁଦ୍ଧରେ ଷଡ଼ଯନ୍ତ୍ର କରି ସରୋଜର ଯୁକ୍ତିକୁ ସମର୍ଥନ କରୁଛନ୍ତି । ସମସ୍ତ ହୋଇଗଲେ କେହି ହେଲେ ଜଣେ ଅନିବାର୍ଯ୍ୟ ସନ୍ଧି ସର୍ତ୍ତ ବାଢ଼ି ବସେ, "ଆଚ୍ଛା ହଉ, Let us agree to differ ।" ଦୁଇଜଣ କ୍ଳାନ୍ତ—ବିମର୍ଷ—ଗଳଦ୍‌ଘର୍ମ ବନ୍ଧୁ ସନ୍ଧିପତ୍ରରେ ଅବିଳମ୍ବେ ସ୍ୱାକ୍ଷର କରନ୍ତି ।

ପୂଜାଛୁଟି ପରେ କଲେଜ ଖୋଲିଥାଏ । ସରୋଜ ନାଇଟ୍ ଏକ୍ସପ୍ରେସରୁ ଓହ୍ଲେଇ ହଷ୍ଟେଲକୁ ଆସି ଦେଖେ ସୀମାଦ୍ରି ଆସିଗଲାଣି । ତାର ଜିନିଷପତ୍ର ସବୁ ଥୁଆ ହୋଇଛି ରୁମ୍‌ରେ—ଅଥଚ ସୀମାଦ୍ରି ନାହିଁ; କିନ୍ତୁ ସେକେଣ୍ଡ ସୋ ସିନେମା ତ ସରିଯିବଣି ଅନେକ ବେଳୁ । ସୀମାଦ୍ରି ଗଲା କୁଆଡ଼େ ? ସରୋଜ ଅନିବାର୍ଯ୍ୟ ସିଦ୍ଧାନ୍ତରେ

ପହଞ୍ଚି କେନାଲ କୂଳକୁ ଗଲେ । କେନାଲ କୂଳରେ ଆସି ସରୋଜ ଦେଖେ ତାର ଅନୁମାନ ନିର୍ଭୁଲ—ନିଶ୍ଚିତ ଭାବରେ ସେଇଠି ଶୋଇ ରହିଛି ସୀମାଦ୍ରି । ପ୍ରଥମଟା ଟିକିଏ ଅସ୍ୱସ୍ତି କରି ମନେହୁଏ ସରୋଜକୁ । ସ୍ଥାନଟାର ନିର୍ଜନ ପରିବେଶ ଯେ କୌଣସି ଏକୁଟିଆ ଲୋକ ମନରେ ଭୟ ସଞ୍ଚାର କରିବା ସ୍ୱାଭାବିକ । ଏତେ ରାତିରେ ଏଠି କଣ କରୁଚି ସୀମାଦ୍ରି ଏକୁଟିଆ ? ବିସ୍ମୟର ସୀମା ରହେ ନାହିଁ ସରୋଜର, ପାଖକୁ ଯାଇ ଦେଖେ ସୀମାଦ୍ରି; କିନ୍ତୁ ଭୟ ପାଇବା ଅବସ୍ଥାରେ ନାହିଁ ଆଦୌ । ନିଶ୍ଚିନ୍ତ ନିଦ୍ରା ଯାଇଛି ସେ । ଆଶ୍ଚର୍ଯ୍ୟ ! ତା ପାଖକୁ ଯାଇ ପ୍ରଥମେ କେତେଥର ଡାକିଲା ତାକୁ ସରୋଜ; କିନ୍ତୁ ସୀମାଦ୍ରି ଶୁଣେନି । ଅଗତ୍ୟା ତା ଦେହରେ ହାତ ଦେଇ ଥରେ ଦୁଇଥର ଜୋର୍‌ରେ ହଲେଇଦେଲା ସେ ।

କିନ୍ତୁ ତା ପରେ ଯାହା ଘଟିଲା ସେଥିପାଇଁ ସରୋଜ ପ୍ରସ୍ତୁତ ନ ଥିଲା ଆଦୌ । ଗୋଟିଏ ଲମ୍ଫରେ ସୀମାଦ୍ରି ଉଠିପଡ଼େ କିଛି ଦୂରକୁ ଆଉ ସେଠି ଠିଆ ହୋଇ ରହି ସେ କିଛି ସମୟ ନିଷ୍ପନ୍ଦ ଭାବରେ ଚାହିଁରହେ ସରୋଜକୁ । ଆଉ ଠିକ୍ ତା ପରେ ପରେ ଚିତ୍କାର କରିଉଠେ—କିଏ ? କିଏ ତମେ ? ସୀମାଦ୍ରିର କଣ୍ଠ ଭୟବିଜଡ଼ିତ । ଖୁବ୍ ଭୟ ପାଇଯାଇଛି ସେ । ଆଉ କେଉଁ ଦିନ ହୋଇଥିଲେ ହୁଏତ ସରୋଜ ସୀମାଦ୍ରିର ଏହି ଅବସ୍ଥାର ସୁଯୋଗ ନେଇ ଟିକିଏ କୌତୁକ କରିଆନ୍ତା; କିନ୍ତୁ ସୀମାଦ୍ରିର ଅବସ୍ଥାରେ ସରୋଜ ନିଜେ ଅନେକଟା ଆତଙ୍କିତ ହୋଇ ପଡ଼ିଲା । ମୁହୂର୍ତ୍ତେ ବିଳମ୍ବ ନ କରି "ଆରେ ମୁଁ ସରୋଜ—ମୁଁ ସରୋଜ" କହି ସେ ଆଗେଇଗଲା ସୀମାଦ୍ରି ଆଡ଼କୁ । କିଛି ସମୟ ପାଇଁ ନିର୍ବାକ ହୋଇ ଠିଆ ହୋଇ ରହିଲା ସୀମାଦ୍ରି । ତା ଦେହରୁ ଗମ୍ ଗମ୍ ହୋଇ ଝାଳ ବୋହିଯାଉଛି । ସରୋଜ ଅପରାଧୀ ପରି କୁହେ "ହଁ,—ତୁ ଏତେ ଭୟ ପାଇଯିବୁ ବୋଲି ମୁଁ ମୋଟେ ଜାଣି ନାହିଁ ସୀମାଦ୍ରି ।"

ସୀମାଦ୍ରି ଆଉ ଥରେ ଆପାଦମସ୍ତକ ଚାହିଁନିଏ ସରୋଜକୁ; ତା' ପରେ ନିଜର ହାତ ଘଡ଼ିକୁ ଦେଖି କୁହେ, "ମୁଁ କେତେବେଳେ ଯେ ଶୋଇ ପଡ଼ିଲି ମୁଁ ନିଜେଇ ଜାଣେନା । ଏତେ ରାତି ହେଲାଣି ଅଥଚ ମୋତେ ଆଗରୁ ଉଠେଇ ଦେଲୁନାହିଁ କାହିଁକି କହିଲୁ ?"

ତା ପରେ ସରୋଜ କହେ ଯେ ସେ ମାତ୍ର କେଇ ମିନିଟ୍ ତଳେ ତାକୁ ଖୋଜି ଖୋଜି ଆସି ଏଠି ପହଞ୍ଚେ । ସେ ବା' କାହିଁକି ଆଶା କରନ୍ତା ଏତେ ରାତିରେ ସୀମାଦ୍ରି ଶୋଇ-ରହିଛି ଏଠି ।

ସୀମାଦ୍ରି ଆହୁରି ବିସ୍ମିତ ହୁଏ । ସନ୍ଦିଗ୍ଧ କଣ୍ଠରେ ପଚାରେ—"ସତ କହୁଚୁ ସରୋଜ, ତୁ ମୋ' ସହିତ ଏଠିକି ଆସିନାହୁଁ ।"

ସରୋଜ ସାମାନ୍ୟ ଆମୋଦିତ ହୁଏ ଏଥର, ସେ କହେ, "ନାଇଟ୍‌ମେଲ୍‌ରେ ସାଢ଼ ଦୁଇଟା ପର୍ଯ୍ୟନ୍ତ ଅନିଦ୍ରାରେ କଟେଇ ଏତେବେଳେ କେନାଲ୍ କୂଳକୁ ଆସିବାର ଉତ୍କଟ ରସିକତା ମୋର ନାହିଁ ।" ସୀମାନ୍ତ ନୀରବରେ ଫେରିବାକୁ ପାଦ ବଢ଼ାଏ । ଚାଲୁ ଚାଲୁ ସେ କହେ, "ମୁଁ ମଧ୍ୟ ଆସି ଆଜି ଜନତାରେ ପହଞ୍ଚିଲି ସନ୍ଧ୍ୟା ଛଅଟା ବେଳେ । ବେଶ୍ କ୍ଲାନ୍ତ ହୋଇପଡ଼ିଥିଲି ମୁଁ—ବିଶ୍ରାମ ନବାପାଇଁ ବିଛଣାଟାକୁ ମେଲେଇ ଦେଇ ଖଟ ଉପରେ ପଡ଼ିଗଲି ।

ତା'ର ଅଳ୍ପ ସମୟ ପରେ—ମୋର ସ୍ପଷ୍ଟ ସ୍ମରଣ ଅଛି—ରୁ ବି ଆସି ପହଞ୍ଚିଲୁ ତୋର ସେଇ ଛୋଟା ଚମଡ଼ା ସୁଟ୍‌କେଶ ଆଉ ହୋଲ୍‌ଡ଼ର ଖଣ୍ଡିକ ନେଇ, ଠିକ୍ ଯେମିତି ବେପରୱା ଭାବରେ । କହିଲୁ, 'ଗୁଡ଼୍ ଇଭନିଂ ସୀମାନ୍ତ, ରୁ ଆସି ଯାଇଛୁ ତାହାହେଲେ—ଦ୍ୟାଟ୍‌ସ ଲାଇକ୍ ଏ ଗୁଡ଼୍ ବୟ୍ ।' ମୁଁ କଣ ଜବାବ୍ ଦେଇଛି ମୋର ମନେ ନାହିଁ—ତା' ପରେ ରୁ ଖୁବ୍ ବ୍ୟସ୍ତ ହୋଇ ପଡ଼ିଲୁ ଆଉ କହିଲୁ—'କଣ ହୋଇଛି ତୋର ସୀମାନ୍ତ—ଆଇ ହ୍ୟାଭ ନେଭର୍ ସିନ୍ ୟୁ ସୋ ଭେରି ମୁଡ଼ି ।' ମୁଁ ବୋଧହୁଏ ତଥାପି କିଛି ଜବାବ୍ ଦେଇନାହିଁ । ତା' ପରେ ରୁ ତୋର ପୋଷାକ ମଧ୍ୟ ଚେଞ୍ଜ୍ ନ କରି ମୋର ହାତ ଧରି ଗୋଟାଏ ଝିଙ୍କାରେ ମତେ ଉଠେଇଦେଲୁ ଖଟ ଉପରୁ ଆଉ କହିଲୁ, 'ଚାଲ୍, ଚାଲ୍—ଆମର କୁରୁକ୍ଷେତ୍ରକୁ ଚାଲ୍—ଅନେକ ଦିନ ଯାଇନେ ସେଠିକି—ସେଇଠି ସବୁ ସମାଧାନ ହୋଇଯିବ—ଇମ୍ ! କି ବାଜେଫିଲ୍ ହୋଇଯାଇଛି ରୁ ଏଇ କେଇଟା ଦିନର ଛୁଟି ଭିତରେ । ଛିଃ—ଛିଃ ।

ତା' ପରେ ଆମେ ଦୁହେଁ ବାହାରକୁ ଆସିଛେ, ଆଉ ଆମର ପୂର୍ବ-ପରିଚିତ ରାସ୍ତା ଦେଇ ଆମେ ଆସିଛୁ ଏଇଠିକି ।

ମୋର ଠିକ୍ ମନେଅଛି, ମୁଁ ଏଠି ବସି ବସି ତତେ 'ରତ୍ନା' କଥା କହୁଥିଲି ପ୍ରଥମ ଥର ପାଇଁ । ମୁଁ କେମିତି ରତ୍ନା ପ୍ରତି ଅତ୍ୟନ୍ତ ଅସହାୟ ଭାବରେ ଆକୃଷ୍ଟ ହୋଇ ପଡ଼ିଛି ଅଥଚ ମୁହଁ ଖୋଲି ରତ୍ନାକୁ ନିବେଦନ କରିବାର ସାହସ ମୋର ନାହିଁ ।

ତୋ' ମୁହଁ ଏକାଥରକେ ଚାପା ହସରେ ଫାଟିପଡ଼ୁଥାଏ । ମୋର ପିଠି ବାଡ଼େଇ କହିଲୁ, 'ସେ କଥା କହୁ । ଏଇ ଛୁଟିଟାର ବିରହରେ ସ୍ୱୟଂ ଲକନ୍‌ଭାର୍ ଏକାଥରକେ ଭାଙ୍ଗି ପଡ଼ିଛନ୍ତି । ତା' ପରେ ହଠାତ୍ ଗମ୍ଭୀର ହୋଇଯାଇ ରୁ କହିଲୁ —'ଆଜି କାଲୁ ମୁଁ ପ୍ରଥମ ଜାଣିଲି ସୀମାନ୍ତ, ତୋର ଅନେକ କଥା ଅଛି, ଯାହା ରୁ ମୋତେ ଜାଣିବା ପ୍ରୟୋଜନ ମନେ କରିନାହୁଁ ।"

ତା' ପରେ ମୁଁ ଆଉ କିଛି ମନେ କରି ପାରୁନାହିଁ । ମୁଁ ଜାଣେନା ମୁଁ କେତେବେଳେ

ଶୋଇପଡ଼ିଛୁ । ଧୀରେ ଧୀରେ ସବୁ ଭୁଲିଯାଇଛୁ । ଆଉ ହଠାତ୍ ନିଜକୁ ଏଠି ଆବିଷ୍କାର କରି ମୁଁ ସତରେ ଭୟ ପାଇଯାଇଥିଲି ।"

ସରୋଜ ଚୁପ୍‌ଚାପ ସବୁ ଶୁଣିଯାଉଥାଏ । ଶେଷରେ କହିଲା, "ତୁ ତାହା ହେଲେ କଣ କହିବାକୁ ଚାହୁଁ ହଷ୍ଟେଲରୁ କେନାଲ କୂଳ ପର୍ଯ୍ୟନ୍ତ ଏଇ ଅଧମାଇଲ ରାସ୍ତା ତୁ ଚାଲିଆସିଛୁ ତୋର ଅଜାଣତରେ, ସମ୍ପୂର୍ଣ୍ଣ ନିଦ୍ରିତ ଅବସ୍ଥାରେ ?"

ସୀମାଦ୍ରି ଛୋଟ 'ହୁଁ'ଟିଏ କହି ନୀରବ ହୁଏ ।

ସରୋଜ କହେ, "କିନ୍ତୁ..."

ସୀମାଦ୍ରି କହେ—"ଏଠି କିନ୍ତୁ ପ୍ରଶ୍ନ ନାହିଁ ସରୋଜ ! ଏଇଟା ଠିକ୍ ସେଇ ଜିନିଷ, ଯାହାକୁ ମେଡ଼ିକାଲ ସାଇନ୍‌ସରେ କହନ୍ତି "ସୋମ୍ନାମ୍ବୁଲିଜିମ୍ ।"

ଗୋଟାଏ ଦୀର୍ଘ ନିଶ୍ୱାସ ନେଇ ସୀମାଦ୍ରି କହି ଚାଲେ—"ତୋର ମନେଥିବ ମୁଁ ସେଥର ଯୋଉ ଷ୍ଟେୟାର୍‌କେସରୁ ଖସି ପଡ଼ିଥିଲି, ସେଇଟା ବି ସେଇ ନିଦ୍ରିତ ଅବସ୍ଥାରେ । ତୁ ନିଶ୍ଚୟ ଭାବୁଥିବୁ ମୁଁ ଆଜଯାଏ କାହିଁକି ତତେ ଏ କଥା କହିନାହିଁ—ଜଣେ ସୋମ୍ନାମ୍ବୁଲିଷ୍ଟ ସହିତ ଏକା ରୁମ୍‌ରେ ରହିବାଟା ସମସ୍ତେ ସହ୍ୟ କରି ପାରନ୍ତି ନାହିଁ—ବୁଝିପାରୁଥିବୁ ନିଶ୍ଚୟ—କେମିତି ଗୋଟାଏ ଅନୁକମ୍ପା ଫିଲିଂ ହୁଏ । କେବଳ ସେଇଥି ପାଇଁ ମୁଁ କଥାଟା ଚାପି ରଖିଥିଲି ଆଜଯାଏ ।"

ସରୋଜ କିଛି ଜବାବ୍ ଦେଲାନାହିଁ । କିଛି ସମୟ ପରେ ସଂକ୍ଷେପରେ ପଚାରିଲା, "ରେଖା କିଏ ସୀମାଦ୍ରି ?"

ସୀମାଦ୍ରି କହିଲା—"ସେ ସେକେଣ୍ଡ୍ ଇୟର୍ ସାଇନ୍‌ସର ଛାତ୍ରୀ—ଲେଡ଼ିଜ୍ ହଷ୍ଟେଲରେ ଥାଏ । ବୋଟାନିକାଲ୍ ଗାର୍ଡେନରେ ମୋର ତା ସହିତ ଅକସ୍ମାତ ଦେଖା ହୁଏ । ଆଳାପ ମଧ୍ୟ ହୁଏ ।"

ସରୋଜ କହେ, "ହୁଁ ।"

ଦୁଇ ବନ୍ଧୁ ହଷ୍ଟେଲରେ ପହଞ୍ଚିଯାଇଥିଲେ ।

## ( ଦୁଇ )

ସେ ଦିନ ଅତି ପରିଷ୍କାର ଜ୍ୟୋତ୍ସ୍ନା ପଡ଼ିଥାଏ । କେନାଲ କୂଳରେ ସେଇ ପରିମିତ ସ୍ଥାନର ବାଲୁକାଶେଯରେ ଶୋଇ ରହିଥାଆନ୍ତି ଦୁଇ ବନ୍ଧୁ ନୀରବରେ । ସେମାନଙ୍କର କହୁଣୀ ଉପରେ ଭାର ରଖି ସେମାନେ ଏକାଗ୍ରଚିତ୍ତରେ ଲକ୍ଷ୍ୟ କରି ରହିଥାଆନ୍ତି ସେଇ

ପରିତ୍ୟକ୍ତ, ବଗିଚା-ପରିସ୍ଥା, ଜରାଜୀର୍ଣ୍ଣ ଚଉରାଟାକୁ । ଏଇ କିଛି ଦିନ ତଳର ଗୋଟାଏ ନୂତନ ଆବିଷ୍କାରକୁ ନେଇ ଏକ୍‌ସପେରିମେଣ୍ଟ୍ କରିବାରେ ସେମାନେ ଆତ୍ମ-ବିସ୍ମୃତ ।

ସୀମାଦ୍ରି ଖୁବ୍ ଆସ୍ତେ ଆସ୍ତେ କହୁଥାଏ—"ଦେଖ, ତାର ବାଁ ପଟର କାଖରେ ସେ ଗୋଟାଏ କଳସୀ ଧରିଛି...ପୁଣି ଅଣ୍ଟା ପାଖରେ ତା ଦେହଟା ସାମାନ୍ୟ ଡାହାଣ ପଟକୁ ଟିକିଏ ଆସି ପୁଣି ଡାହାଣକୁ ଚାଲିଯାଇଛି, ମୁଣ୍ଡଟା ମଧ୍ୟ ଦେହର ଭାରସାମ୍ୟ ରକ୍ଷା କରିବାକୁ ଡାହାଣ ପଟକୁ ନଇଁଯାଇଛି ସାମାନ୍ୟ ।"

ସରୋଜ କହେ—"ହଁ, ତା'ର ଶାଢ଼ିର ଭାଙ୍ଗଗୁଡ଼ିକ ମଧ୍ୟ ଦେଖିହେଉଛି ତ !"

ସୀମାଦ୍ରି ଯୋଗକରେ—"ମୁଣ୍ଡରେ ନିଶ୍ଚୟ ଓଢ଼ଣା ନାହିଁ, ନ ହେଲେ ତା'ର ଏତେ ସୁନ୍ଦର କେଶବିନ୍ଧା ଗଣ୍ଠିଟା ଲୁଚି ଯାଇଥାଆନ୍ତା ।"

ଗୋଟାଏ ମୁହୂର୍ତ୍ତ ପାଇଁ ଦୁଇ ବନ୍ଧୁଙ୍କ ତନ୍ମୟ ଆଖି ଆଗରେ ଠିଆ ହୋଇ ରହେ ଗୋଟିଏ ସ୍ୱାସ୍ଥ୍ୟବତୀ ଗ୍ରାମବଧୂ ହାତରେ କଳସୀ ଧରି ।

ସରୋଜ କହେ, "ତା ନାଁ ରମିତା ।"

ସୀମାଦ୍ରି ପ୍ରତିବାଦ କରେ—"ମୁଁ କିନ୍ତୁ ତା ନାଁ ଦିଅନ୍ତି ଜ୍ୟୋତ୍ସ୍ନାରେଣୁ ।" ତର୍କ ବେଶି ଦୂର ଗ୍ଲେନା । ପ୍ରତ୍ୟେକର ନିଜସ୍ୱ ନାମକରଣରେ ପ୍ରତ୍ୟେକେ ସନ୍ତୁଷ୍ଟ ରହନ୍ତି । ତା' ପରେ ହଠାତ୍ ମନର ଟେନ୍‌ସନ୍ ହୁଗୁଳା କରି ଦିଅନ୍ତି ସେମାନେ, ଆଉ ତା ସାଙ୍ଗେ ସାଙ୍ଗେ କିଛି ଅନ୍ଧାର ଆଉ କିଛି ଜ୍ୟୋତ୍ସ୍ନାର ରେଣୁ ନେଇ ଗଢ଼ିଉଠିଥିବା ଗ୍ରାମ-ବଧୂଟିର ଅପମୃତ୍ୟୁ ହୁଏ ।

ସୀମାଦ୍ରି ଆଉ ସରୋଜ ଉଭୟେ ଜାଣନ୍ତି, ସେମାନେ ସେଇ ଜୀର୍ଣ୍ଣ ଚଉରାଟାକୁ ଚାହିଁ ଚାହିଁ ସେମାନଙ୍କର ମନ ଭିତରେ ଗୋଟାଏ ନିର୍ଦ୍ଦିଷ୍ଟ ମରୀଚିକା ସୃଷ୍ଟି କରୁଛନ୍ତି । ଚଉରାଠାରୁ ସେମାନଙ୍କର ଦୂରତ୍ୱ ପନ୍ଦର ଗଜରୁ କମ୍ ହେବ; କିନ୍ତୁ ଚଉରାଟାର ଏଇ ରହସ୍ୟମୟୀ ଅବସ୍ଥିତି ସେମାନଙ୍କର ଆଖି ପାଇଁ ସହସ୍ର ଇନ୍ଦ୍ରଜାଲ ତିଆରି କରି ଗ୍ଲେ । ପାଖରି କି ଗୋଟାଏ ନାଁ'—ନ ଜଣା ଗଛର ଗୋଟାଏ ବିଶୃଙ୍ଖଳ ଦୀର୍ଘ ଶାଖା ଲମ୍ବି ଆସି ଚଉରା ଉପରେ ଗୋଟାଏ ପ୍ରଶସ୍ତ ଆବରଣ ତିଆରି କରିଛି—ଆଉ ତା'ର ଭିତର ଦେଇ ଝରି ଝରି ପଡ଼େ ଅସଂଖ୍ୟ ଜ୍ୟୋତ୍ସ୍ନାରେଣୁ । ଅନେକ ଆଲୋକ-ରେଣୁ ଏବଂ ଅନ୍ଧାରରେଣୁ ଲୁଚକାଳି ଖେଳୁଛନ୍ତି ସେଇ ଚଉରା ଉପରେ । ସେମାନଙ୍କୁ କେବଳ ଅଖିର ଲେନ୍‌ସରେ ଧରି ନେଇ ସଜେଇବାକୁ ପଡ଼େ ଆପଣାର ମନ ଅନୁସାରେ ।

ଗ୍ରାମ-ବଧୂର ଅପମୃତ୍ୟୁ ପରେ ହୁଏତ ସେଠି ଆସ୍ତେ ଆସ୍ତେ ତିଆରି ହୁଏ ଗୋଟାଏ ଡାକ ପିଅନ୍ । ହୁଏତ ଯେଉଁ ଅନ୍ଧକାର ରେଣୁପୁଞ୍ଜରେ ନବବଧୂଟିର କେଶବିନ୍ଧା ଗଣ୍ଠି ତିଆରି

କରାଯାଇଥିଲା, ତା'କୁ ସାମାନ୍ୟ ସ୍ଥାନାନ୍ତରିତ କରି ପିଅନର ପୋଷ୍ଟବ୍ୟାଗ ତିଆରି କରାଯାଏ । ତା'ର ଗହଣ କଲାବାଲ ଉପରେ ଚକ୍‌ଚକ୍ କରୁଥିବା ରୁପା ଫୁଲ୍‌ଟିକୁ ନେଇ ତାକ ପିଅନର ଟୋପିର ବୋତାମ କରାଯାଏ । ଶାଢ଼ିର ଖଣ୍ଡଗୁଡ଼ାକ ନେଇ ତିଆରି ହୁଏ ଖାକି ଟ୍ରାଉଜର ।

ଏଇ ରୂପାନ୍ତରଟା ଠିକ୍ ବ୍ୟାସ୍ୟାମର ନିୟମ ଅନୁସାରେ ବା ଗଣିତର କ୍ରମ ଅନୁଯାୟୀ ହୁଏନା । ଏଇଟା ହୁଏ ଗୋଟାଏ ସମ୍ବେଦନଶୀଳ ମନର ସହଜ ଲୟ ସଞ୍ଚରଣରେ—ଯେମିତି ସନ୍ଧ୍ୟା ହେଲେ ଶତଦଳ ଧୀରେ ଧୀରେ ସଙ୍କୁଚିତ ହୁଏ—ଯେମିତି କୃଷ୍ଣନୀଳ ଯମୁନା ସହିତ ଗଙ୍ଗୋତ୍ରୀର ସ୍ୱଚ୍ଛ ଧାରା ଏକାକାର ହୋଇଯାଏ, ଯେମିତି କୌଣସି ନିୟମ ନଥାଇ କ୍ରମ ରକ୍ଷା ନକରି ସ୍ୱପ୍ନରେ ତରଳି ମିଶିଯାଏ ଆଉ ଗୋଟାଏ ସ୍ୱପ୍ନ ।

ପ୍ରଥମ କିଛି ଦିନ ଟିକିଏ ଅସୁବିଧାରେ ପଡ଼ିବାକୁ ହୁଏ ସେମାନଙ୍କୁ; କିନ୍ତୁ ଅଳ୍ପ କେଇଦିନର ଅଭ୍ୟାସରେ ଦୁଇବନ୍ଧୁ ଅଭ୍ୟସ୍ତ ହୋଇ ଗଲେଣି । ପ୍ରଥମେ ମନର ମାଂସପେଶୀଗୁଡ଼ାକୁ ଢିଲା କରିବାକୁ ହୁଏ--ତା'ପରେ ମନ ପ୍ରାଣ ଦେଇ ଗୋଟାଏ ନିର୍ଦ୍ଦିଷ୍ଟ ବସ୍ତୁକୁ ଆଖି ଆଗରେ ଫିକ୍ସ କରିନେଇ ତାର ଶୃଙ୍ଖପଟେ କିଛି କୁହୁଡ଼ି ଦେଇ ଶକ୍ତ କରିବାକୁ ହୁଏ । ଗୋଟାଏ ଅବୁଝା ପିଲାକୁ ଚକୋଲେଟ ଦେଖେଇ ଆଦର କଲା ପରି ମନକୁ ଆସ୍ତେ ଆସ୍ତେ ତୋଷାମୋଦ କରି ବିଶ୍ୱାସ କରେଇନେବାକୁ ପଡ଼େ ।

ପ୍ରତି ସନ୍ଧ୍ୟାରେ ସେମାନେ ଏମିତି ଅନେକ ଗ୍ଲାସ୍ୟାମୂର୍ତ୍ତି ଗଢ଼ନ୍ତି ଆଉ ଭାଙ୍ଗନ୍ତି । ପ୍ରଥମ ଅବସ୍ଥାରର ନିଶା ସେମାନଙ୍କର ଗ୍ରୁଡ଼ ଆସିଲାଣି । ହାଲୁକା ଆନନ୍ଦ ଭିତରେ ସେମାନେ ଖୋଜିବସିଲେଣି ଗୋଟାଏ କାର୍ଯ୍ୟକାରଣ ସମ୍ପର୍କ ।

ସେ ଦିନ ହଠାତ୍ ସୀମାଦ୍ରି ଗମ୍ଭୀର ହୋଇ କହିଲା, "ଏଇଟା ହିଁ ବୋଧହୁଏ ଯୋଗର ପ୍ରଥମ ସୋପାନ—ଆମେ ଯେଉଁ ଜିନିଷକୁ ପନ୍ଦରଗଜ ଦୂରରେ ଦେଖିପାରୁଛୁ, ଆଉ ଟିକିଏ ସାଧନା ପରେ ଆମେ ଠିକ୍ ସେଇ ଜିନିଷ ଦେଖି ପାରିବା ମାତ୍ର ପାଞ୍ଚଗଜ ଦୂରରୁ । ଆମେ ଆଖି ପାଇଁ ଯେଉଁ କୁହୁକ ସୃଷ୍ଟି କରିପାରୁଛୁ, ତା'କୁ ହୁଏତ ସ୍ପର୍ଶ ଓ ଗନ୍ଧ ପାଇଁ ତିଆରି କରି ପାରିବା ଆଉ କିଛି ଦିନର ସାଧନା ପରେ ।

ଖାଲି ସେତିକି ନୁହେଁ, ସୀମାଦ୍ରି କହିଚାଲେ—ଆଜି ମୁଁ ବା ତୁ କେବଳ ପରସ୍ପରକୁ ପ୍ରବଞ୍ଚିଇ ପାରୁଚେ; କିନ୍ତୁ ହୁଏତ ଆଉ କିଛିଦିନ ପରେ ଆମେ ଠିକ୍ ଏଇ ଇନ୍ଦ୍ରଜାଲ ଅନେକ ଲୋକଙ୍କ ପାଇଁ ତିଆରି କରି ପାରିବା । ସେଥିପାଇଁ ଖାଲି ଦରକାର ମନର କ୍ଷେତ୍ର ପ୍ରସ୍ତୁତ କରି ବିଶ୍ୱାସର ବୀଜାରୋପଣ...... ।

ସରୋଜ ବନ୍ଧୁପର ହସରେ ଫାଟିପଡ଼େ, "ହଁ ତା ନୁହେ ଆଉ କଣ, ଆଉ ଟିକଏ ସାଧନା କଲେ ହୁଏତ ଏଠି ଗୋଟାଏ ବର୍ଗ୍ରହ ସାଧାରଣ ସଣ୍ଣ ଡାକ ଆମ୍ଭେମାନେ ପ୍ରମାଣ କରି ପାରିବା ସେମାନେ ଯାହା ଦେଖୁଛନ୍ତି ତା' ଗୋଟାଏ ଭଙ୍ଗା ଚଉରା ନୁହେ— ସେ'ଟା ଗୋଟାଏ କୋଣାର୍କ ମନ୍ଦିରରୁ ସଦ୍ୟ ଆନୀତ ଜୀବନ୍ତ ଲାସ୍ୟମୟୀ ରୂପସୀ—ବୁଝିଲୁ ସୀମାଦ୍ରି କାଙ୍କେ—କାଙ୍କେ..."

ସୀମାଦ୍ରି ର ବରକ୍ତିର ସୀମା ରହେନାହିଁ । କ୍ୟାରମ ଖେଳର ନିକ୍ଷଲ ଶବାକ୍ଷିଣ୍ଟ ପରି ସେ ତା'ର ବେଗରେ ଉଠିଯାଏ ଅଜ୍ଞାତର ଦାର୍ଶନିକମାନଙ୍କର ରାଜ୍ୟକୁ; ଆଉ ଏ ପ୍ରକାରର ବିଷୟ ନେଇ କିଏ କେତେବେଳେ କଣ ମତାମତ ଦେଇଛନ୍ତି—ଆଉ ଠିକ୍ ତା ପରେ ସରୋଜକୁ ସେ ବିଷୟରେ ସଂପୂର୍ଣ୍ଣ ନିଷ୍ପୃହ ଦେଖି—ଠିକ୍ ସେଇ ବେଗରେ ଖସିଆସେ ଉପସ୍ଥିତ ଘଟଣାଚକ୍ର ଭିତରକୁ । ଚିତ୍କାର କରିଉଠେ, 'ସିନିକ୍—ସିନିକ୍—ହୁଜେନ୍...' ଏତେ ହାଲୁକା ମନ ନେଇ ତୋ ପକ୍ଷରେ ପ୍ରାଚ୍ୟ ଦର୍ଶନ ସଂପର୍କରେ ମୌଳିକ ଧାରଣା ମଧ୍ୟ କରିପାରିବା ସମ୍ଭବ ନୁହେଁ ।

ଦୁଇବନ୍ଧୁ ହଷ୍ଟେଲକୁ ଫେରିଆସନ୍ତି । ସରୋଜ ବିଛଣାରେ ପଡ଼ିରହି ଘୁଙ୍ଗୁଡ଼ିମାରେ, ଆଉ ସୀମାଦ୍ରି ବିଛଣା ଉପରେ ଇତସ୍ତତଃ ହୁଏ । ତା'ର ମନ ଭିତରେ ଗୋଟିଏ ମାତ୍ର ବାସନା ଉଙ୍କିମାରେ । ତା'ର ଭାରି ଇଚ୍ଛା ହୁଏ; ଯାଇ ଦେଖିବାକୁ ସେମାନେ ଆସିବା ପରେ ସେଇ ଚଉରାଟା କଣ କରୁଥିବ । ସେ ଚଉରାଟା ହୁଏତ ବର୍ଷପଛ ଦୀର୍ଘ ନିଃଶ୍ୱାସ ନେଇ ସେମାନଙ୍କୁ ଅଭିଶାପ ଦେଉଥିବ । ସେମାନଙ୍କ ପାଇଁ ତାକୁ ବହୁରୂପୀ ସାଜିବାକୁ ପଡ଼ୁଛି ମୁହୂର୍ତ୍ତିକୁ ମୁହୂର୍ତ୍ତି; କିମ୍ବା ହୁଏତ ସେ ବି ଶୋଇରହିଥିବ ସରୋଜ ପରି ଅଚେତ ନିଦରେ । ଅଦ୍ଭୁତ କୌତୁହଳ ହୁଏ ସୀମାଦ୍ରିର । ସେ ଯଦି ଯାଇ କୌଣସି ଗୋଟାଏ ଅସତର୍କ ମୁହୂର୍ତ୍ତିରେ ଛୁଇଁ ଦେଇ ପାରନ୍ତା ସେଇ ଚଉରାଟାକୁ, ତାହା ହେଲେ ହଠାତ୍ ଗୋଟାଏ ଗୁଣଗୁଣ୍ଡା ଧନୁ ପରି ହୁଏତ ସେ ଚମକି ଘଣ୍ଡା ଠିଆ ହୋଇ ପଡ଼ନ୍ତା । ଉଠନ୍ତା ଚଉରାର ପୋଷାକ ପିନ୍ଧି ପୁଣି ଥରେ । ନ ହେଲେ ସେ, ହୁଏତ ଆଉ ମା' କାହାଣୀର ଖୋଳପା ପୋଡ଼ିଯାଇଥିବା ରୂପସୀ ବେଙ୍ଗବତୀ କନ୍ୟା ପରି ବିକଳ ହୋଇ କହନ୍ତା, 'ଆହା, କଣ କଲ ମତେ ! ଛୁଇଁଦେଲ ତୁମେ ? ମୁଁ ଆଉ ରହିପାରୁନାହିଁ ଏଠି ।' ତା'ପରେ ହୁଏତ ସେ ତାର ଦୁଇ ଶୁଭ୍ର ଡେଣା ମେଲି ଉଡ଼ିଯାଆନ୍ତା ଶାପମୁକ୍ତ କିନ୍ନରୀ ଭଳି ତାର ଆଲୋକରେ ଆକାଶକୁ ଦୁଇ ଭାଗ କରି । ତା ଆରଦିନ ସନ୍ଧ୍ୟାରେ ସେ ସରୋଜକୁ ଆଣି ଏହି ଅନବଦ୍ୟ ମନର ମଧ୍ୟ ଉପଲବ୍ଧି କରାଇପାରନ୍ତା ହୁଏତ ।

ଏଇଟା କଣ କେବଳ ଆଖିର ଭୁଲ୍ ? ଗଭୀର ସନ୍ଦେହ ସୃଷ୍ଟି ହେଉଛି ସୀମାଦ୍ରିର ମନରେ । ପ୍ରାଚୀନ ଆର୍ଯ୍ୟମାନେ ଜଡ଼ ଭିତରେ ଯେଉଁ ଜୀବନ ଆବିଷ୍କାର କରିଥିଲେ, ତା

ହୁଏତ ସମ୍ପୂର୍ଣ୍ଣ ମିଥ୍ୟା ନୁହେଁ । ତାର ସମଗ୍ର ଶୈଶବକୁ ଆଚ୍ଛନ୍ନ କରି ରହିଛି ଏଇ ଧରଣର ଅସଂଖ୍ୟ କିମ୍ବଦନ୍ତୀ ଆଉ କାହାଣୀ । ନିଜର ସ୍ଥୂଳ ଶରୀରକୁ ପରିତ୍ୟାଗ କରି ଅନ୍ୟ ଏକ ଜଡ଼ପିଣ୍ଡରେ ଜୀବନ ସଞ୍ଚାର କରିବାର ଅନେକ ରୋମାଞ୍ଚକର କାହାଣୀ ଶୁଣିଛି ସେ । ସେଗୁଡ଼ା କଣ ସବୁ କେବଳ କଳ୍ପନା ?

( ତିନ )

ସରୋଜ ଖୁବ୍ ବୁଦ୍ଧିମାନ । ସେଥିପାଇଁ ତା'ର ବୁଦ୍ଧି ଓ ଚିନ୍ତାଶକ୍ତିର ପରିଧି ବାହାରେ ଯେ କୌଣସି ବିଷୟ ଆସିପାରେ ତା' ସେ ମାନିବାକୁ ଆଦୌ ପ୍ରସ୍ତୁତ ନୁହେଁ । ବିନ୍ଦୁ ବିନ୍ଦୁ କରି ବିଶ୍ୱାସ ସଞ୍ଚୟ କରି ସୀମାଦ୍ରି ଯେତେବେଳେ କ୍ଷୁଦ୍ର ପ୍ର ତିଆର କରେ, ଆଉ ତାର ସମସ୍ତଙ୍କୁ ଉପଭୋଗ କରିବାକୁ ଚେଷ୍ଟାକରେ, ସେତେବେଳେ ସରୋଜ ଠିକ୍ ତା'ର ଦୁର୍ବଳ ବିନ୍ଦୁଟିରେ ହିଁ ଆଘାତ କରେ ଆଉ ଆଖି ଆଗରେ ଦେଖାଇ ଦିଏ ଯେ ସୀମାଦ୍ରିର ସମସ୍ତ ସଞ୍ଚୟ ଗୋଟାଏ କ୍ଷୁଦ୍ର ମୌଳିକ ଭ୍ରମ ଉପରେ ପ୍ରତିଷ୍ଠିତ; କିନ୍ତୁ ଯେ ପର୍ଯ୍ୟନ୍ତ ସୀମାଦ୍ରି ଗୋଟାଏ କିଛି ହାତରେ ନ ପାଇଛି, ସେ ପର୍ଯ୍ୟନ୍ତ ସେ କୌଣସିମତେ ସରୋଜକୁ ବୁଝାଇଦେଇପାରୁ ନାହିଁ ଯେ ତା'ର ବୁଦ୍ଧିର ପରିଧି ଅତ୍ୟନ୍ତ କ୍ଷୁଦ୍ର-ଆଉ ସେଇ କ୍ଷୁଦ୍ର ପରିଧିକୁ ଆହୁରି ସୀମିତ କରି ଦେଇଛି ତା'ର ଅହଙ୍କାର ଆଉ ପ୍ରଚ୍ଛର କୁହୁଡ଼ି ।

ଆଜିକାଲି ସରୋଜକୁ ସାଙ୍ଗରେ ନ ନେଇ ସୀମାଦ୍ରି ଏକୁଟିଆ କେନାଲ କୂଳକୁ ଯାଏ । ପ୍ରତିଦିନ ସେଇ ନିର୍ଦ୍ଦିଷ୍ଟ ସ୍ଥାନରେ ଶୋଇରହି ସେ ଅନେକ ମୂର୍ତ୍ତି ଗଢେ ଆଉ ଭାଙ୍ଗେ । ସେଇଠି ବସି ବସି ମନକୁ ମନ ନିଜ ସହିତ କଣ କଥାବାର୍ତ୍ତା କରେ । ସେ ସ୍ଥାନଟା ଯେପରି ସୀମାଦ୍ରିର ଲାବରେଟରୀ । ସେ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ଆବିଷ୍କାର କରିବା ପୂର୍ବରୁ ଆଉ କିଏ ଆସି ତା'ର ଏକ୍ସପେରିମେଣ୍ଟରେ ବାଧା ଦେଉ ସେ ଚାହେଁନା । ସେ ଆଉ ତା'ର ଅବଜେକ୍ଟ ଭିତରେ ଆଉ କାହାର ଅବସ୍ଥିତି ଏକାବେଳକେ ଅସହ୍ୟ । ତା'ର ମନଟା ବି ଯା' ଭିତରେ ପୋଷା ମାନିଗଲାଣି । ମୂର୍ତ୍ତିଗୁଡ଼ିକୁ ରୂପ ଦେବା ପାଇଁ ଖୁବ୍ ଅଳ୍ପ ସମୟ ଓ ପରିଶ୍ରମ ଲାଗୁଛି ତା'କୁ । ପ୍ରାୟ ପ୍ରତିଦିନ ସୀମାଦ୍ରି ଯାଏ ସେଠିକି ଆଉ ଫେରିଆସେ ନୂଆ ବିସ୍ମୟ ଆଉ ବିଶ୍ୱାସ ନେଇ ।

'ଇଠମକ୍'ଟାକୁ ମଧ୍ୟ ସେ ପୂରାପୂରି କବଳିତ କରିପାରିଲାଣି । କେବେ କେବେ ସ୍କୁଲରେ ତା'ର ଝର୍କା ପାଖରେ ବସି ଶୂନ୍ୟ ଆକାଶରେ ସେ ଭଙ୍ଗା ବଉଦଟାକୁ

ଆଙ୍କିନିଏ । ଆଉ ତା' ପରେ ପରେ ତାକୁ ବହୁ ବିଚିତ୍ର ରୂପରେ ରୂପାନ୍ତରିତ କରେ । ଶୂନ୍ୟରେ ଚଉଘରଟାକୁ ବଢ଼େଇବାକୁ ଚେଷ୍ଟାକରେ ସେ । ଆକାଶର ମହାଶୂନ୍ୟରେ ଚଉଘରଟା ଅବିଶ୍ୱାସ ଭାବରେ ଲମ୍ବା ହୋଇଗଲେ···ଅନେକ ଲମ୍ବ କ୍ଷୁଦ୍ରାୟତନ ଚଉଘରଟା ଆକାଶର ପ୍ରଚ୍ଛଦପଟରେ ରହେ 'ପିସା'ର 'ଲିନିଂଟାୱାର' ପରି । ତା'ପରେ ହୁଏତ ସେଇ ଦୀର୍ଘ ସ୍ତମ୍ଭର ଚୂଡ଼ାଯାଇ ଆଘାତ କରେ ଗୋଟାଏ ଉଜ୍ଜ୍ୱଳ ନକ୍ଷତ୍ରକୁ । ସୀମାଦ୍ରିର ମୁହଁରେ ସନ୍ତୋଷର ଦୀପ୍ତି ଫୁଟି ଉଠେ । ପୋତାଶ୍ରୟର ଲାଇଟ୍‌ହାଉସ୍' ଠିକ୍ ଏମିତି ଦେଖାଯାଏ । କେନାଲ କୂଳରେ ସେଇ କାଣ୍ଡ ଚଉଘର ଆସି ଆକାଶରେ ହୋଇଛି ଗୋଟାଏ ବଡସ୍ତମ୍ଭ, କିଏ କହେ ଚଉଘରଟା ଜଡ଼, ନିର୍ବେଦ, ସ୍ଥାବର ? ସେଇ ଦୀର୍ଘ ଲାଇଟ୍‌ହାଉସ୍‌କୁ ପୁଣି ଡିଲିଟ କରିବାକୁ ଚେଷ୍ଟା କରେ ସୀମାଦ୍ରି ମନର ଲେନ୍ସରେ । ଅତ୍ୟନ୍ତ ଦ୍ରୁତ ଗତିରେ ଡିଲିଟ ହେବାକୁ ଆରମ୍ଭ କରେ ତାର ଅବଜେକ୍ଟ ଆଉ ଠିକ୍ ଚଉଘରର ଉଚ୍ଚତାକୁ ଆସି ସ୍ଥିର ହୋଇଯାଏ; କିନ୍ତୁ—ନା ଆହୁରି ଡିଲିଟ କରିବାକୁ ହେବ । ଟିକିଏ ପରିଶ୍ରମ କରିବାକୁ ପଡ଼େ ସୀମାଦ୍ରିକୁ । ତାର ମନେହୁଏ ସେ ଯେମିତି ଠିକ୍ କମାର ପରି ତା'ର ମନର ହାତୁଡ଼ିରେ ପିଟି ପିଟି ଡିଲିଟ କରୁଛି ଚଉଘରଟାକୁ । ଡିଲିଟ, ଆହୁରି ଡିଲିଟ—ଅନେକ ଡିଲିଟ ହେଇଯାଏ । ସେ ଯେମିତି ତା'ର ଆଖି ସାମ୍ନାରେ ଦେଖୁଛି ଆକାଶର ବିରାଟ ଚେସ୍‌ବୋର୍ଡ ଉପରେ ଠିଆ ହୋଇରହିଛି ଗୋଟିଏ ମାତ୍ର ନିଃସଙ୍ଗ ନିରୋଳା 'ପନ୍' । ବାଃ । ଖୁସି ହୋଇଯାଏ ସୀମାଦ୍ରି । କେତେ ଓଜନ ହେବ ସେଇ 'ପନ୍'ଟାର ? ତାର ଡାହାଣ ହାତର ବୁଢ଼ା ଆଙ୍ଗୁଠି ଆଉ କଣି ଆଙ୍ଗୁଠିକୁ ବଢ଼େଇବାକୁ ଚେଷ୍ଟାକରେ ସେ ମହାଶୂନ୍ୟରେ । ସ୍ୱପ୍ନ ଦେଖୁନାହିଁ ତ ସୀମାଦ୍ରି ! ତାର ଆଙ୍ଗୁଠିର ପବଗୁଡ଼ାକ ବଢ଼ିବାକୁ ଆରମ୍ଭ କରିଛି । ତା'ପରେ ତା'ର ପାପୁଲି···ଆଉ ଧିରେ ଧିରେ ତାର ସମଗ୍ର ହାତଟା ଅନେକ ବାଟ ଲମ୍ବି ଗଲାଣି ଆକାଶ ଭିତରକୁ । ଆଉ ମାତ୍ର କେଇ ଇଞ୍ଚ ବାଟ ଆନନ୍ଦରେ ସୀମାଦ୍ରିର ଆଙ୍ଗୁଠି ଦୁଇଟା ଥରି ଉଠୁଛି । ସତରେ କଣ ସେ ଆକାଶରୁ ତୋଳି ଆଣିପାରିବ ସେଇ କ୍ଷୁଦ୍ରାୟତନ 'ପନ୍'ଟାକୁ । ଦୁଇ ଆଙ୍ଗୁଠିର ସ୍ୱଳ୍ପ ବ୍ୟବଧାନ ଭିତରେ ସେ ସ୍ପଷ୍ଟ ସ୍ପର୍ଶ କରିପାରୁଛି—ସେ ନିର୍ଭୁଲ ଭାବରେ ଅନୁଭବ କରୁଛି କିଛି ଗୋଟାଏ ଜିନିଷ ଧରିଛି ସେ । ଏଥର ଆକୁଞ୍ଚନ । ତାର ମନେହେଉଛି, ସେ ଯେପରି ଆକାଶରୁ କୋହିନୂର ତୋଳି ଆଣୁଛି । କିଂ ମିଡ଼ାସ୍ ବୋଧହୁଏ ଖଣ୍ଡେ ସୁନାର ଇଟାକୁ ସେଠାରୁ ଅଧିକ ସାବଧାନତାର ସହିତ ଆଣି ନ ଥାନ୍ତେ । ପୁଣି ଥରେ ଡିଲିଟ ହେଇଆସୁଚି ତାର ହାତ—ତାର ପାପୁଲି—ଆଉ ତାର ଆଙ୍ଗୁଠି ସବୁ । ତାର ଚିର ଈପ୍ସିତ ବସ୍ତୁଟିକୁ ସୀମାଦ୍ରି ଆଣି ରଖିଛି ତାର ବାଁ ହାତର ପାପୁଲି ଉପରେ । ଆଖି ଅପରେସନ୍ କରୁଥିବା ସର୍ଜନ ବୋଧହୁଏ ଅଧିକ

ସାବଧାନତାର ସହିତ ଫରସେପ୍‌ରେ ଧରିପାରି ନ ଥାନ୍ତା ଆଖିର ଡୋଳାକୁ । ତା'ର ପ୍ରସାରିତ ପାପୁଲି ଉପରେ ସେ ତା'ର ଓଜନ ପର୍ଯ୍ୟନ୍ତ ଅନୁଭବ କରିପାରୁଛି । ନୂତନ ଆବିଷ୍କାରରେ ସୀମାଦ୍ରିର ଆଖି ଦୁଇଟା ଉଜ୍ଜ୍ୱଳ ହୋଇଉଠିଛି । ସେ ଭାବୁଛି ଏଇ ମୁହୂର୍ତ୍ତରେ ଯଦି ଏଠି ଥାଆନ୍ତା ମୂର୍ଖ ସବ୍ରୋଜ, ତାହାହେଲେ ତାକୁ କହନ୍ତା, "ଗୋ, ରନ୍—କେନାଲ କୂଳକୁ ଯା' ଦେଖିଆସିବୁ ସେ ଚଉରିଟା ଆଉ ସେଠି ନାହିଁ । ତାକୁ ମୁଁ ଲୁଚି କରି ଆଣିଛୁ ମନର ଜୋରରେ । ଆଉ ସେ ଯେତେବେଳେ କେନାଲ କୂଳରୁ ବିସ୍ମିତ ହୋଇ ଫେରିଆସନ୍ତା, ସେତେବେଳେ ସେ ତାର ଆଖି-ଆଗରେ ଆସ୍ତେ ଆସ୍ତେ ବାଁ ହାତର ବନ୍ଦ ମୁଷ୍ଟି ଖୋଲି ଦେଖାଇ ଦିଅନ୍ତା ତାର ଏଇ କ୍ଷୁଦ୍ର ସଂସ୍କରଣଟିକୁ ।

ଖୁବ୍ ପାଟିକରି ହସି ହସି ଦଳେ ପିଲା ପଶିଆସିଲେ ସୀମାଦ୍ରିର ରୁମ୍ ଭିତରକୁ । ଚମକି ପଡ଼ିଲା ସୀମାଦ୍ରି । ତା'ର ବାଁ ହାତର ପାପୁଲି ତଥାପି ଖୋଲାଅଛି; କିନ୍ତୁ ତା'ର ପ୍ରିୟ ପଦାର୍ଥଟି ଆଉ ତା ଉପରେ ନାହିଁ । ଆଖିପିଛୁଳାକରେ ଯେମିତି ତା'ର ପାପୁଲି ଉପରେ ସେଟା ମିଳେଇଗଲା ସମୁଦ୍ର କୂଳର ଉଜ୍ଜ୍ୱଳ ଜେଲି-ଫିସ୍ ପରି । ମନେ ମନେ ଅସମ୍ଭବ ବିରକ୍ତ ହୋଇ ଉଠିଲା ସୀମାଦ୍ରି । ରୁକ୍ଷସ୍ୱରରେ କଣ ସେ ସେମାନଙ୍କୁ କହିଲା ବୋଧହୁଏ—ନୀରବରେ ସେମାନେ ଫେରିଗଲେ । ରାତି ଦଶଟା ବାଜିଗଲାଣି ।

ଶୋଇବାକୁ ଚେଷ୍ଟାକଲା ସୀମାଦ୍ରି ।

× × × ×

ଅନେକ ରାତି ହେଲାଣି ।

ଦେଖିଲେଇ ଜଣାଯାଏ ସୀମାଦ୍ରି ଶୋଇ ରହିଛି ନିଘୋଡ଼ ନିଦରେ; କିନ୍ତୁ ସୀମାଦ୍ରି ତା'ର ମୁଦ୍ରିତ ଆଖିଆଗରେ ସ୍ପଷ୍ଟ ଦେଖି ପାରୁଛି କେନାଲ କୂଳର ସେଇ ଚଉରିଟାକୁ । ସେ ଚଉରିଟା ଆଉ ଷ୍ଟାଣ୍ଡ ନୁହେଁ—ସୀମାଦ୍ରିର ମନର ରଶ୍ମି ନେଇ ଯେପରି ତାର ସ୍ନାୟୁ ସବୁ ବଞ୍ଚିଉଠିଲେଣି । ରୁଗ୍‌ଣ ମାଂସପେଶୀ ସବୁ ଜୀବନ୍ତ ହୋଇ ଉଠିଲେଣି । ପବନ ବହୁଛି ବୋଧହୁଏ—ଆଉ ସେଇ ପବନରେ ସେଇ ପଥରର ଚଉରିଟା ଦୋଲି ଖେଳୁଛି ହାଲୁକା ମନରେ । ଥରେ ଥରେ ଗୋଟାଏ ଝାଙ୍କ ପବନରେ ଚଉରିଟା ଏକାଥରକେ ନଇଁଯାଉଛି ତଳକୁ—ଯେମିତି ସେଇଟା ଗୋଟାଏ ଚଉଖୁଣ୍ଟିଆ ରବରର ସ୍ତମ୍ଭ । ତାର ମନେହେଲା ଯେମିତି ସେଇ ସ୍ତମ୍ଭଟା ଦୋହଲି ଦୋହଲି ନିମନ୍ତ୍ରଣ କରୁଛି ତାକୁ ସେଠିକି ଯିବା ପାଇଁ ।

ବିଛଣାରେ ହଠାତ୍ ଉଠି ବସିଲା ସୀମାଦ୍ରି ।

ତାକୁ ଏଇ ମୁହୂର୍ତ୍ତରେ ହିଁ ଯିବାକୁ ହେବ ସେଠିକି । ରୁମ୍‌ର ଆଲୁଅ ଦେବାକୁ

ମନେ ନାହିଁ ତାର । ସରୋଜ ଅଛି କି ନାହିଁ ସେଥିପାଇଁ ଭ୍ରୂକ୍ଷେପ ନାହିଁ । ହଠାତ ତା'ର ମନକୁ ମନ ଉଠିଗଲା ଦରଜାର ଛିଟ୍କିଣି ଖୋଲିବାକୁ । ହଷ୍ଟେଲର ଲମ୍ବା ବାରଣ୍ଡାଟା ଏକାଥରକେ ନିର୍ଜନ । ଜଣେ ହେଲେ କେହି ପିଲା ନାହିଁ । ଗୋଟାଏ ମଳିନ ଆଲୋକର ଆସ୍ତରଣ ତଳେ ଚାଲିଛି ସେ ମନ୍ତ୍ରମୁଗ୍‌ଧ ପରି । ତା ପରେ ଷ୍ଟେଆର୍‌କେସ୍‌, ନିର୍ଭୁଲ ଭାବରେ ପ୍ରତିଟି ସିଡ଼ିରେ ଓହ୍ଳାଇ ଓହ୍ଳାଇ ଚାଲିଛି ସୀମାନ୍ତ, ଆଉ ତା ପରେ ପରେ ମେନ ଗେଟ୍ ଦେଇ ଏକାଥରେ ବାହାର ରାସ୍ତାକୁ ।

ରାସ୍ତାଟା ମଧ୍ୟ ଅତ୍ୟନ୍ତ ନିର୍ଜନ । ଟ୍ରେନ୍‌ର ଶବ୍ଦ ଭାସିଆସୁଛି ଷ୍ଟେସନରୁ ଶୁଣାଯାଉଛି ମଝିରେ ମଝିରେ । ଧାଡ଼ି ଧାଡ଼ି ରାସ୍ତା ଲାଇଟ୍‌ଗୁଡ଼ାକ ସୀମାନ୍ତକୁ ଦେଖାଯାଉଛନ୍ତି ଆକାଶରୁ ତଳକୁ ଓହ୍ଳାଇ ଆସିଥିବା କେଇଟା ଆଶ୍ଚର୍ଯ୍ୟ ତାରକା ପରି । ଗୋଟାଏ ନିଶାଖୋର ରିକ୍‌ସାବାଲା ଖରବେଗରେ ରିକ୍‌ସା ଚଳାଇ ନେଇଗଲା ସୀମାନ୍ତର ଦେହରେ ପ୍ରାୟ ଘଷି ହୋଇ; କିନ୍ତୁ ସୀମାନ୍ତ ତାର ଚାରିପାଖର ସମସ୍ତ ଘଟଣା ପ୍ରତି ସଂପୂର୍ଣ୍ଣ ନିର୍ଲିପ୍ତ, ନିର୍ବିକାର ତା'ର ଦୁଇଟି ଅର୍ଦ୍ଧ-ନିମୀଳିତ ଆଖି ଆଗରେ କେବଳ ଦୋଳି ଦୋଳି ଇଙ୍ଗିତ କରୁଛି ସେଇ ରାତିଟା । କସ୍ତୁରି-ମୃଗ ପରି ସମ୍ପୂର୍ଣ୍ଣ ଆତ୍ମବିସ୍ମୃତ ହୋଇ ସୀମାନ୍ତ ଟାଣି ହୋଇଯାଉଛି ଗୋଟାଏ ଅଦୃଶ୍ୟ, ଅପରିହାର୍ଯ୍ୟ ଶୃଙ୍ଖଳର ଆକର୍ଷଣରେ ନିୟନ୍ତ୍ରିତ ହୋଇ ।

ତରଳ ରୁପା ପରି ଜହ୍ନଆଲୁଅ ବର୍ଷି ହୋଇପଡ଼ୁଛି । ସେଇ ଜହ୍ନର ଯାଦୁରେ କେନାଲ ପାଣି, ବାଲି ଆଉ ଗଛ ସବୁ ଯେମିତି ରୁପା ପାଲଟିଯାଇଛି । ସମସ୍ତ ପରିବେଶକୁ ଆଚ୍ଛନ୍ନ କରି ରଖିଛି ଏକ ଅବ୍ୟକ୍ତ ନିର୍ଜନତା । ଏଇ ଅତି-ନିର୍ଜନ ପରିବେଶରେ ମନେହୁଏ ଯେପରି ପୃଥିବୀର ପାର୍ଶ୍ୱ ପରିବର୍ତ୍ତନ ମନ୍ଥର ହୋଇଆସିଛି ତାର ଆଖି ସ୍ମୃତିପଟେ । ଖୁବ୍ ଆସ୍ତେ ଆସ୍ତେ ପାଦ ପକାଇ ଚାଲିଛି ସୀମାନ୍ତ; ଟିକିଏ ଜୋର ରେ ଚାଲିଲେ ଯେମିତି ଏଇ ରହସ୍ୟମୟୀ ପରିବେଶର କୁହୁକ ନଷ୍ଟ ହୋଇଯିବ । କେତେ ରାତି ହେଲାଣି ଜାଣିବାର ଉପାୟ ନାହିଁ । ଉଜ୍ଜ୍ୱଳ ଚନ୍ଦ୍ର ଆଲୋକର ପ୍ରଚ୍ଛଦପଟରେ ଗଛର ସାନ୍ଦ୍ର ଦୀର୍ଘ ଶାଖାଗୁଡ଼ାକ ଦେଖାଯାଉଛି ଆହୁରି କୃଷ୍ଣକାୟ । ଗଛର ନାଁ ସୀମାନ୍ତ ଜାଣେନା । ତେବେ ଗଛଗୁଡ଼ାକର ସ୍ୱାତନ୍ତ୍ର୍ୟ ଅଛି । ପ୍ରତ୍ୟେକଟି ଗଛକୁ ଦେଖିଲେ ମନେହୁଏ ଯେମିତି ସେମାନେ କୌଣସି ଆର୍ଟିଷ୍ଟ-ହାତରେ ଅଙ୍କା ଅସମାପ୍ତ ପେଣ୍ଟିଂ ।

ପାଖରେ ଗାର୍ଲସ ହଷ୍ଟେଲ୍‌ ଦ୍ୱିତଳ କୋଠା ଦେଖାଯାଉଛି । ତା'ର ଭିତରେ ଅନେକ ତରୁଣୀ ନିଦ୍ରା ଯାଇଥିବେ । ଯେମିତି କେଉଁ ଦୈତ୍ୟର କୁହୁକ ମନ୍ତ୍ରରେ ଅଚେତ ହୋଇପଡ଼ିଛନ୍ତି ସେମାନେ । ସେମାନଙ୍କ ଭିତରେ ମଧ୍ୟ ଶୋଇ ରହିଛି

ସ୍ୱାତୀ । ଆହା, କେତେ ଅତ୍ୟାଶ୍ଚରିତା ସ୍ୱାତୀର ଯୌବନ । ସ୍ୱାତୀ କଣ ଚାହେଁନା ଏଇ ଚନ୍ଦ୍ର-ଆଲୁଅରେ ଲେଟିବାକୁ ଏଇ ଶୀତଳ ବାଲୁଶେଯରେ । ସେ କଣ ଅସହାୟ ଭାବରେ ଚାହିଁ ନ ଥିବ ଖସିପଡ଼ନ୍ତାନ୍ତି ଏଇ କାନ୍ଥର ଇଟାଗୁଡ଼ାକ ଏଇ ମାଛାଲ ଚନ୍ଦ୍ର-ଆଲୁଅରେ ବରୁଷ୍ଟ ବରୁଷ୍ଟ ।

ମୁହୂର୍ତ୍ତିକରେ ସୀମାଦ୍ରିର ମନ କରୁଣା-ଆର୍ଦ୍ର ହୋଇଉଠିଲା । ସ୍ୱାତୀକୁ କଣ ଉଦ୍ଧାର କରି ହବ ଯକ୍ଷପୁରୀ ଭିତରୁ ? ହୁଏତ ସମ୍ଭବ । ତାକୁ ଆସିବାକୁ ପଡ଼ିବ ଯେନେ ରାଜପୁତ୍ର ପରି ପାଣିର ସନ୍ଧାନ କରି······ତା'ପରେ ହୁଏତ ଘୋଡ଼ାର ଜିନ୍ ଉପରେ ତାର ଉଷ୍ଣୀଷ ରଖିଦେଇ ତାକୁ ଉଠିବାକୁ ପଡ଼ିବ ଲୁହାର ପାଇପ୍ ଧରି ଦୋଛାଲ ଉପରକୁ ।···ତା'ପରେ ହୁଏତ···ସୀମାଦ୍ରି ଦୃଷ୍ଟି ଫେରାଇଲା ସେଇ ଜୀର୍ଣ୍ଣ ଚଉରା ଆଡ଼କୁ, ଏଇ ଚଉରାଟାକୁ ଯଦି ସେ କରିପାରନ୍ତା ଆଲ୍ଲାଉଦ୍ଦିନ୍‌ର ସେଇ ଆଶ୍ଚର୍ଯ୍ୟ ଦୀପ-ଦୈତ୍ୟ, ତାହାହେଲେ ହୁଏତ ତାକୁ ସେ ଆଦେଶ କରିପାରନ୍ତା ସ୍ୱାତୀକୁ ଉଦ୍ଧାର କରି ଆଣିବାକୁ । ଓଃ, ଅରେ—ଅଳକ ପାଇଁ ଯଦି ସେ ଚେତନା ସଞ୍ଚାର କରିପାରନ୍ତା ଏଇ ଜଡ଼ ପ୍ରସ୍ତରିତ ଜୀର୍ଣ୍ଣ ଚଉରାଟା ଦେହରେ ।

ଅନିମେଷ ଦୃଷ୍ଟିରେ ସୀମାଦ୍ରି ଚାହିଁ ରହିଛି ସେଇ ଚଉରାଟାକୁ, ସେ ଆଜି କିଛି ଭାବିବାକୁ ଚାହେଁନା । ଆଜି କେବଳ ସେ ଅପେକ୍ଷା କରି ରହିବ ତାର ନିଜସ୍ୱ କ୍ରମ-ପରିବର୍ତ୍ତନକୁ । ପ୍ରଥମେ ତାର ମନେହେଲା ଯେମିତି ସେଇ ଚଉରା ଉପରେ ଅନେକଗୁଡ଼ାଏ ଆଲୋକ ଆଉ ଅନ୍ଧାର ରେଖା ଭାସି ବୁଲୁଛନ୍ତି ଅନିର୍ଦ୍ଦିଷ୍ଟ ଭାବରେ । ତା'ପରେ ମନେହେଲା, ଯେପରି ସେଇ ଭାସମାନ ରେଖାଗୁଡ଼ିକ ଆସ୍ତେ ଆସ୍ତେ ସ୍ଥିର ହୋଇଆସୁଛନ୍ତି···ସେମାନେ ରୂପ-ପରିଗ୍ରହ କରୁଛନ୍ତି ।

ଉଚ୍ଛୃଙ୍ଖଳ ଜ୍ୟୋତ୍ସ୍ନା ଝରୁଛି ଆକାଶରୁ ।

ଏଇ ଭରା ଚନ୍ଦ୍ରାଲୋକରେ ମଣିଷମାନେ କୁଆଡ଼େ ପାଗଳ ହୋଇଯାଆନ୍ତି । ସୀମାଦ୍ରି ଆଉ ପାଗଳ ହୋଇଯାଉ ନାହିଁ ତ ? ତା'ର ଏଇ ଏକସ୍‌ପେରିମେଣ୍ଟଟା ଗୋଟାଏ ପାଗଳାମି ନୁହେଁ ତ ? ଠିକ୍ କିଛି ବୁଝିପାରୁନାହିଁ ସେ । ପୁଣି ଥରେ ଚଉରାଟା ଆଡ଼େ ଚାହିଁଲା ସୀମାଦ୍ରି ମୁହୂର୍ତ୍ତିକ ପାଇଁ । ତାର ମନେହେଲା ଯେପରି ସେଇ ଚଉରାଟା ରୂପାନ୍ତରିତ ହୋଇଯାଇଛି ଗୋଟାଏ ମନୁଷ୍ୟର ପ୍ରତିକୃତିରେ ······ଗୋଟାଏ ଖାକି ରଙ୍ଗର ଫୁଲପ୍ୟାଣ୍ଟ ପିନ୍ଧିଛି ଲୋକଟା । ସରୁ ଅଣ୍ଟାଠାରୁ ଉପରକୁ ଉଠିଯାଇଛି କ୍ରମ-ପ୍ରଶସ୍ତ ଛାତିର ଦୁଇ ସୀମା ଟ୍ରାପିଜିୟମ୍‌ର ବାହୁ ପରି । ବାଁ ଆଖି ଉପରେ ଫେଲ୍‌ଟ୍ ଟୋପିଟା ନଇଁ ଆସି ମୁହଁଟା ଠିକ୍ ଦେଖାଯାଉ ନାହିଁ । ସୀମାଦ୍ରି ଆସ୍ତେ ଆସ୍ତେ ଆଗେଇବାକୁ ଚେଷ୍ଟାକଲା ସେଇ ଲୋକଟା ଆଡ଼କୁ ।' ସେ

ଯେମିତି ଯାଉଛି ଗୋଟାଏ ଅଶରୀରୀ ସହିତ ପରିଚୟ କରିବାକୁ, କିନ୍ତୁ ସେଇ ଲୋକଟା ଠିଆ ହୋଇ ରହେ ଅବିଚଳିତ ହୋଇ । ନିକଟକୁ···ଖୁବ୍ ନିକଟକୁ ଆସିଲଣି ସୀମାଦ୍ରି—ସୀମାଦ୍ରିର ନିଃଶ୍ୱାସ ବୋଧହୁଏ ବାଜୁଛି ସେଇ ଲୋକଟା ଉପରେ - କିନ୍ତୁ ସେ ଲୋକଟାର କୌଣସି ପରିବର୍ତ୍ତନ ହୁଏନା । ଆଖିରେ ଅବିଶ୍ୱାସ ବିସ୍ମୟ ନେଇ ସୀମାଦ୍ରି ଗ୍ୱହିଁରହେ ସେ ଲୋକଟାକୁ । ଆଗରୁ କେଉଁଠି ଦେଖିଛି ଦେଖିଛି ବୋଲି ମନେହୁଏ ତାର ।···କିନ୍ତୁ ଭୁଲିଯାଉଛି ସୀମାଦ୍ରି···ଭୁଲିଯାଉଛି ସେ । ଖୁବ୍ ଆସ୍ତେ ଆସ୍ତେ ଗ୍ୱପାକଣ୍ଠରେ ପଗ୍ୱରେ ସୀମାଦ୍ରି--"ତମେ କିଏ ?" ନିଃଶ୍ୱାସର ମୃଦୁ ଶବ୍ଦପରି କଥାଗୁଡ଼ାକ ମିଳେଇଗଲା ପବନରେ । ଚମକି ଉଠିଲା ସୀମାଦ୍ରି । ନିର୍ଜନ ପରିବେଶ ଭିତରେ ଏଇ ସାମାନ୍ୟ କେଇପଦ କଥା ଅତି ବେଖାପ ଶୁଣାଯାଏ କାନକୁ । କିଏ କଥା କହିଲା ? ସେ ନିଜେ, ନା ତା ସାମ୍ନାରେ ଠିଆହୋଇଥିବା ଏଇ ଅଶରୀରୀ ଯୁବକ, ଠିକ୍ କିଛି ବୁଝିପାରୁନାହିଁ ସେ । ସବୁ ଯେମିତି ଗୋଳମାଳିଆ ହୋଇଯାଇଛି ତା'ର ମୁଣ୍ଡ ଭିତରେ ।

ସୀମାଦ୍ରିର ମେରୁଦଣ୍ଡ ଦେଇ ହଠାତ୍ ଯେମିତି ଖେଳିଗଲା ଗୋଟାଏ ବିଦ୍ୟୁତ୍ ତରଙ୍ଗ । ତା'ର ମନେହେଲା, ସେ ଯେମିତି ନିଜକୁ ଦେଖିପାରୁଚି ଗୋଟାଏ ବିରାଟ ଦର୍ପଣ ଭିତରେ । ତା'ର ଏଇ ଅପରିଚିତ ତରୁଣ, ହୋଇ ଏତେ ସମୟ ଧରି ଠିଆହୋଇଚି ସେ ନିଜେ ! ହଁ—ଠିକ୍ ତ । ନିର୍ଭୁଲ ଭାବରେ ସୀମାଦ୍ରି ଠିଆ ହୋଇ ରହିଛି ତାର ସାମ୍ନାରେ, କିନ୍ତୁ ଏ କଥା କଅଣ ସମ୍ଭବ ? ଆଜିଯାଏ ତ କେବଳ ସୀମାଦ୍ରି ଏଇ କଥା ତପସ୍ୟା କରିଆସିଅଛି । କେତେ ରାତି 'ସେ' କଳ୍ପନା ନ କରିଛି ନିଜକୁ ସେ ଉଜ୍ଜୀବିତ କରିବ ଏଇ ନିର୍ବାକ୍, ଜଡ଼ ପଥର ଦେହରେ । ଆଜି ହୁଏତ ଅକସ୍ମାତ୍ ଆସିଚି ସେଇ ଚିରଈପ୍ସିତ ମୁହୂର୍ତ୍ତ । ଯେପରି କ୍ଳାନ୍ତ ହୋଇପଡ଼ୁଚି ସୀମାଦ୍ରି । ସେ ଆଉ କିଛି ଭାବିପାରୁନାହିଁ । ଧୀରେ ଧୀରେ ତାର ଅଙ୍ଗପ୍ରତ୍ୟଙ୍ଗ ସବୁ ନିର୍ଜୀବ ହୋଇ ଆସୁଛି । ପକ୍ଷାଘାତ ବୋଧହୁଏ ଠିକ୍ ଏଇପରି ଆରମ୍ଭ ହୁଏ । ଅତି ଅସହାୟ ଭାବରେ ସେ ତିଳେ ତିଳେ ପ୍ରସ୍ତରିତ ହୋଇଯାଉଛି···ସେ ଚଳଚ୍ଛକ୍ତିରହିତ ।

ସୀମାଦ୍ରିର ପ୍ରସ୍ତର ସମାଧି ସମ୍ପୂର୍ଣ୍ଣ ହୋଇଯାଇଛି । ତାର ଆଖିପତା ମଧ୍ୟ ଚଳେଇବା ଆଉ ସମ୍ଭବ ନୁହେଁ । ଏଥର କିନ୍ତୁ ଚ୍ୱଲିବାକୁ ଆରମ୍ଭ କରିଛି ସେଇ ଅନ୍ୟ ଲୋକଟି ସୀମାଦ୍ରିର ଦ୍ୱିତୀୟ ସଂସ୍କରଣ । ସେ ଯେମିତି କେବଳ ଅପେକ୍ଷା କରି ରହିଥିଲା ସୀମାଦ୍ରିର ଏଇ ରୂପାନ୍ତରକୁ; କିନ୍ତୁ ସୀମାଦ୍ରିର ମସ୍ତିଷ୍କ କାର୍ଯ୍ୟ କରୁଛି ଠିକ୍ । ସେ ଠିକ୍ ଜାଣିପାରୁଛି ସେ ଲୋକଟା ଯିବ ଗାର୍ଲସ ହଷ୍ଟେଲ୍ ପାଖକୁ । ଏଟା ସୀମାଦ୍ରିର ନିଜସ୍ୱ ଭାବନା ନୁହ । ସେଇ ଲୋକଟାର ପ୍ରତିଟି ଚିନ୍ତାଧାରା ଯେପରି କେଉଁ ଅଜ୍ଞାତ ବେତ୍ର

ବଳରେ ପ୍ରତିବିମ୍ବିତ ହେଉଛି ସୀମାନ୍ତ୍ରର ମନରେ । ସୀମାନ୍ତ୍ର ଆଦୌ ଅନୁମାନ କରିବାକୁ ଚେଷ୍ଟାକରୁନାହିଁ; ତଥାପି ସେ ଜାଣିପାରୁଛି ତାର ପ୍ରତିଟି ଚଳାଧାରା ।

ସ୍ପଷ୍ଟ ଦେଖିପାରୁଛି ସୀମାନ୍ତ୍ର ଜନ୍ମ-ଆଲୁଅରେ···ସେଇ ଲୋକଟା ଗାର୍ଲସ ହଷ୍ଟେଲରେ ପାଇପ୍ ଧରି ଉଠୁଛି ଉପରକୁ । ଖୁବ୍ ପରିଶ୍ରମ କରିବାକୁ ପଡ଼ୁଛି ସେଇ ଲୋକଟାକୁ ନିଶ୍ଚୟ···ସୀମାନ୍ତ୍ରର ପ୍ରସ୍ତରିତ ଗୋଡ଼ର ମାଂସପେଶୀ ସବୁ ଫାଟିପଡ଼ୁଛନ୍ତି ସେଇ ଲୋକଟାର ଉଠିବାର ଚେଷ୍ଟାରେ । ତା' ପରେ ସେଇ ଲୋକଟା ଚାଲୁଛି ଗୋଟାଏ ନାତିପ୍ରଶସ୍ତ ପାଚେରି ଉପରେ କୌଣସି ମତେ ନିଜର ଭାରସାମ୍ୟ ରକ୍ଷା କରି କରି—ଆଉ ଠିକ୍ ସେଇ ସ୍ପନ୍ଦନ ଅନୁଭବ କରିପାରୁଚି ସୀମାନ୍ତ୍ର—। ସେ ବି ଟଳୁଚି କେତେବେଳେ ବାଁକୁ, ପୁଣି କେତେବେଳେ ଡାହାଣକୁ । ଏକ ଅପରିହାର୍ଯ୍ୟ ଦୋଳନରେ ଦୋଳାୟିତ ହେଉଛି ସୀମାନ୍ତ୍ର···ତା' ପରେ ଲୋକଟା ଉଠୁଛି ସନ୍ତର୍ପଣରେ ଗୋଟାଏ ସଙ୍କୀର୍ଣ୍ଣ ପାରାପିଟ୍ ଉପରକୁ, କାନ୍ଥରେ ପିଠି ଘଷି ଘଷି ଚାଲୁଛି ଲୋକଟା···ସେ ନିଶ୍ଚୟ ଯାଉଛି ସୀତାର ରୁମ୍ ଝରକା ପାଖକୁ; କିନ୍ତୁ ତାକୁ ଆହୁରି ଅନେକ ଦୂର ଯିବାକୁ ପଡ଼ିବ ସେଇ ସଙ୍କୀର୍ଣ୍ଣ ପଥ ଦେଇ । ସୀମାନ୍ତ୍ରର ପାଦତଳୁ ଯେମିତି ଗୁଡ଼ାଏ ମାଟି ଖସିଗଲା ହଠାତ୍ ! ତା ପାଦତଳେ ଖାଲି ରହିଚି ଗୋଟାଏ ଅପ୍ରଶସ୍ତ ମାଟିର ହିଡ଼ । ସୀମାନ୍ତ୍ରର ଭାରସାମ୍ୟ ମଧ୍ୟ ଆନ୍ଦୋଳିତ ହବାକୁ ଆରମ୍ଭ କରିଛି । ଇଃ, କି ଆଶ୍ଚର୍ଯ୍ୟ ଭାବରେ ସେଇ ଲୋକଟାର ପ୍ରତିଟି ବିଷୟ ସୀମାନ୍ତ୍ରକୁ ପ୍ରଭାବିତ କରି ଚାଲିଛି ।

ନା—ସୀମାନ୍ତ୍ର ପକ୍ଷରେ ଆଉ ଠିଆ ହୋଇ ରହିବା ସମ୍ଭବ ନୁହେଁ ବୋଧହୁଏ । ସେ ପ୍ରାୟ ପଡ଼ି ଯାଉ ଯାଉ ରହିଗଲା ଥରେ; କିନ୍ତୁ ଏଇ କେତୋଟି ମୁହୂର୍ତ୍ତ ଅତ୍ୟନ୍ତ ଅନିଶ୍ଚିତ—କିଛି କୁହାଯାଏନା । ହଠାତ୍ ଶୂନ୍ୟକୁ ଝୁଙ୍କି ପଡ଼ିଲା ସୀମାନ୍ତ୍ର—ଏଥର ଆଉ କିଛି ପ୍ରତିବନ୍ଧକ ନାହିଁ । ସାମ୍ନାର ଶୂନ୍ୟତା ଭିତରକୁ ଓଜାଳ ହୋଇ ପଡ଼ିଲା ସୀମାନ୍ତ୍ର ଖଣ୍ଡେ ଶୁଖିଲା କାଠ-ଗଡ଼ ପରି । ଠିକ୍ ତା ପରେ ହିଁ ସୀମାନ୍ତ୍ରର ଚେତନାଶକ୍ତି ଲୋପ ପାଇ-ଯାଇଛି···

( ଚାରି )

ଗାର୍ଲସ ହଷ୍ଟେଲ ପଛଆରେ ଅନେକ ଲୋକଙ୍କର ଭିଡ଼ ଜମିଛି । ସୀମାନ୍ତ୍ର ଛାତ ଉପରୁ ପଡ଼ିଯାଇଛି ଅସତର୍କ ହୋଇ; ସରୋଜ ବି ଆସିଚି ସେଠିକି । ସୀମାନ୍ତ୍ରର ମୁଣ୍ଡର ଖପୁରିଟା ଛେଚି ହୋଇଯାଇ ମୁହଁଟା କପରି ବିକୃତ ଦେଖାଯାଉଛି । ତା'ର ପିନ୍ଧିବା ଲୁଗାକୁ

ଗୁଡ଼ଦେଲେ ତାଙ୍କୁ ସୀମାଦ୍ରି ବୋଲି ଚହ୍ଣଟ କରିବା ସମ୍ଭବ ନୁହେଁ ।

ପୁଲିସ ଅନୁସନ୍ଧାନ କରୁଛି । ସରୋଜ ଏ ଦୁର୍ଘଟଣା ସମ୍ପର୍କରେ କୌଣସି ଆଲୋକପାତ କରିପାରିନାହିଁ । ସହରର ସମସ୍ତ ଜନତା ଅବଶ୍ୟମ୍ଭାବୀ ଉପସଂହାରରେ ଉପନୀତ ହୋଇ ରାୟ ଦେଇଛନ୍ତି ଯେ ସୀମାଦ୍ରି କୌଣସି ପ୍ରେମଜନିତ ବ୍ୟାପାରରେ ଜଡ଼ିତ ହୋଇପଡ଼ି ହୁଏତ ଦୁର୍ଘଟଣାର ସମ୍ମୁଖୀନ ହୋଇଛି ବା ଆତ୍ମହତ୍ୟା କରିଛି ।

ସରୋଜ କେବଳ ତାର ଦୁଇ ହାତକୁ ଗୁନ୍ଥ ଉପରେ ଛକ ଦେଇ ଚନ୍ତିତ ଭାବରେ ବୁଲୁଚ ଏପଟରୁ ସେପଟ । କିଛି କୂଳକିନାରା ମିଳେନା ସରୋଜକୁ । ବୁଲି ବୁଲି କେନାଲ କୂଳକୁ ଆସେ ସରୋଜ, ଆଉ ସେଠି ଦେଖେ—

ସେଇ ଜୀର୍ଣ୍ଣ ଚଉଗଛିଟି ମଧ୍ୟ ଭାଙ୍ଗି ପଡ଼ିଛି ମୂଳରୁ—ପଡ଼ିବାର ଧକ୍କାରେ କେଇ ଖଣ୍ଡ ଇଟା ଛିଟିକି ପଡ଼ିଚ ଦୂରକୁ ।

ସରୋଜ ବସ୍ମିତ ହେଉଛି—କାଲି ରାତିରେ ବର୍ଷା ବା ଝଡ଼ର ବନ୍ଦୁମାତ୍ର ସୂଚନା ନ ଥିଲି···ତେବେ ଭାଙ୍ଗିଲି କପରି ? ହୁଏତ ସୀମାଦ୍ରି ଶେଷ ପର୍ଯ୍ୟନ୍ତ ଏଇ ପଥର ଖୁଣ୍ଟାର ଆତ୍ମା ଭିତରକୁ ପ୍ରବେଶ କରି ପାରିଥିଲା ।

## ( ପାଞ୍ଚ )

ଦଶବର୍ଷ ଅତବାହ୍ତ ହୋଇଯାଇଚ ।

ସରୋଜ ତାର ସ୍ତ୍ରୀକୁ ନେଇ ଗାଡ଼ିରେ ଯାଉଥିଲା ସେଇ ବାଟ ଦେଇ । କେନାଲ କୂଳର ସେଇ ନର୍ଦ୍ଦିଷ୍ଟ ସ୍ଥାନଟି ପାଖରେ ସରୋଜ ଗାଡ଼ି ଠିଆକରେ । ଗାଡ଼ିରେ ତା'ର ସ୍ତ୍ରୀକୁ ଅପେକ୍ଷା କରିବାକୁ କହି ସରୋଜ ଓହ୍ଲେଇ ପଡ଼ି ଚାଲେ କେନାଲ ବନ୍ଧ ଉପରକୁ । ଯେ ବୋଧହୁଏ ଦଶବର୍ଷ ପରେ ତାର ବନ୍ଧୁ ସୀମାଦ୍ରିକୁ ସ୍ମରଣ କରିବାକୁ ଚାହେଁ ସେଇ ପରିବେଶ ଭିତରେ ।

ଆଜ ବି ସେଇ ବାଲି ସବୁ ରୂପା ପାଲଟିଯାଇଛନ୍ତି ଜହ୍ନର କାଉଁରୀ-କାଠିରେ । ଆଜ ବି ସେଇ ଗଛସବୁ ସେମିତ ଠିଆହୋଇ ରହିଛନ୍ତି ପ୍ରତ୍ୟେକଟି ଗୋଟିଏ ଗୋଟିଏ ମୂର୍ତ୍ତିମନ୍ତ ରହସ୍ୟ ପରି ।

ଦୂରରୁ ଅସ୍ପଷ୍ଟଭାବରେ ଦେଖାଯାଉଛି କିଏ ଜଣେ ଭଦ୍ରଲୋକ ମୁଣ୍ଡ ତଳକୁ କରି ବୁଲୁଛନ୍ତି ସେଠି । ଏଇ ଚର ନର୍ଜ୍ଜନ କେନାଲ କୂଳରେ ସେ ବୋଧହୁଏ ଜଣେ ସହରର କୋଳାହଳ-ଅତ୍ୟାଚାରିତ ଆଶ୍ରୟପ୍ରାର୍ଥୀ । ଦୂରରୁ ସରୋଜ ଆସିବାର ସାମାନ୍ୟ

ସଙ୍କେତ ପାଇ ସେ ଭଦ୍ରଲୋକ ଯେପରି ହଠାତ୍ ନିଶ୍ଚଳ ହୋଇଗଲେ ମୁହୂର୍ତ୍ତିକ ପାଇଁ, ଆଉ ଭୟ ପାଇଲା ପରି ତତ୍‌କ୍ଷଣାତ ବସିପଡ଼ିଲେ ବାଲିରେ ।

ସରୋଜ ବାଲି ଉପରକୁ ଉଠିଲା । କେଇ ପାଦ ଆଗକୁ ଯାଇ ସେ ଦେଖେ, ଭଦ୍ରଲୋକ ବସିପଡ଼ିଥିବା ଜାଗାରେ ମନୁଷ୍ୟର କୌଣସି ଚିହ୍ନବର୍ଣ୍ଣ ପର୍ଯ୍ୟନ୍ତ ନାହିଁ । ସେଠି ସେହିପରି ନିର୍ବାକ୍ ହୋଇ ପଡ଼ିରହିଛି ସେଇ ଭଙ୍ଗା ଚଉରାଟା । କାଳର ଅତ୍ୟାଚାରରେ ତା ଉପରେ ଶିଉଳି ମାଡ଼ିଗଲାଣି···ଇଟାର ଫାଟରେ ଘାସ ଉଠିଗଲାଣି ପ୍ରଚୁର ।

ଅଭିଭୂତ ହୋଇ କେଇ ମୁହୂର୍ତ୍ତ ଠିଆହୋଇ ରହିଲା ସରୋଜ । ମନେ ମନେ ଉଚ୍ଚାରଣ କଲା ସେ···"ସେଇ ଦିନଠାରୁ ଏଇଠି ତୁ ଶୋଇରହିଛୁ ସୀମାନ୍ତ···କେତେ ରାତି ଆମେ ଏଇଠି ଶୋଇ ଶୋଇ କଳ୍ପନା ନ କରିଛେ ଆମର ବାହାଘର କଥା—ମୁଁ ବାହା ହେଉଛୁ—ଆ—ଦେଖିବୁ ଆ' ମୋର ସ୍ତ୍ରୀକୁ···କେମିତି ଦେଖେଇବ ତତେ···"

ସରୋଜର ଆଖିରେ ଲୁହ ଟଳମଳ କରୁଥିଲା ।

ସରୋଜ ଫେରିଆସିଲା ଗାଡ଼ି ପାଖକୁ ।

ସରୋଜର ସ୍ତ୍ରୀ ପଚାରିଲା, "କିଏ ସେ ଭଦ୍ରଲୋକ ଜଣକ ଏତେ ରାତିରେ ବୁଲୁଥିଲେ ଏଠି··"

ସରୋଜ ରୁମାଲରେ ଆଖି ପୋଛି ନେଇ ନେଇ କହିଲା, "ଚାଲ ଘରକୁ ଯିବା" ।

# ସୁମିତ୍ରାର ହସ

## ମହାପାତ୍ର ନୀଳମଣି ସାହୁ

ମୁହଁଟା ହାତରେ ଧରି ସୁମିତ୍ରା ହସିଦେଲା । ହସିବ ନାହିଁ ? ଆଉ କଣ କାନ୍ଦିବ ? ସେ ଯୋଗ୍ୟତା କଣ ତାର ଅଛି ? ଅନେକ ଝିଅଙ୍କୁ ସେ ଦେଖିଛି—ଯେଉଁମାନେ କାନ୍ଦିଲେ ଖୁବ୍ ଚମତ୍କାର ମାନେ ତାଙ୍କର ମୁହଁଗୁଡ଼ିକୁ । ମୃଷାମାଟି ଭଣଭଣ—ଢଳେଇ ଗୁହ ସଣସଣ—ଅମୁହାଁ ଘର ଭିତରେ ଜେମାଦେଇମାନେ କବାଟ କିଲି ଭୂଇଁରେ ମୁହଁମାଡ଼ି କାନ୍ଦୁଥିଲେ ସେ କାଳେ । କାନ୍ଦିଲେ ସେମାନଙ୍କ ଆଖିରୁ ମୁକ୍ତା ଝରେ । ମୁହଁର ଲବଣୀ ଜଳରେ ଧୂଆଧୋଇ ହୋଇ ଯୋଡ଼ିଏ ଦରବୁଜା ଲାଜକୁଳୀ ନୀଳକଇଁ ଭଳି ଆଖି ଭିତରୁ ଥୋପି ଥୋପି ହୋଇ ମହୁ ଝରେ । ସଜ ସକାଳର ଗୋଲାପ ପାଖୁଡ଼ା ଅଳ୍ପ ପବନରେ ଫୁଲ୍‌ଫୁଲ୍ ଉଠିଲା ଭଳି ନରମ ଓଠ ଦୁଇଟି କମ୍ପି ଉଠେ । ଉଦାସ ମନରେ ତଳକୁ ମୁହଁ ପୋତି ନଖରେ ଭୂଇଁ ଖୋଳି ଖୋଳି—କମ୍ପା କନ୍ୟାସ୍ତମ୍ଭ ଉପରେ କହୁଣୀ ଭରି ଦେଇ ଆନମନାଭାବେ ଉପର ଛାତର ଧାରରେ ପାରାବତ ଦମ୍ପତିଙ୍କର ଚଞ୍ଚୁ ଚୁମ୍ବନଲୀଳା-ବିଳାସକୁ ଦେଖି ଦେଖି କିବା ସୁବର୍ଣ୍ଣ ପିଞ୍ଜରା ଭିତରେ ଶୁକପକ୍ଷୀର ଥଣ୍ଟରେ ଆଦର-ସୋହାଗ-ଭରା ଚମ୍ପକ ଆଙ୍ଗୁଳି ଦୁଇଟିରେ ଆଧାର ଦେଉଁ ଦେଉଁ—କମ୍ପା ବାତାୟନର ବାଡ଼ ଧରି ବହୁଦୂରରେ ହଜିଯାଇଥିବା କାହାର ଚଲାପଥକୁ ଚାହିଁ ଚାହିଁ କମ୍ପା ଚନ୍ଦ୍ରଶାଳା ଉପରେ ଠିଆ ହୋଇ ଆଷାଢ଼ ଆକାଶରେ କେଉଁ ଏକ ଅଜଣା ଘରଛଡ଼ା ଆଖିଖେଳା ତରୁଣ ସନ୍ନ୍ୟାସୀର ଘନକୃଷ୍ଣ ଜଟା ଭଳି ମୋଡ଼ି ମୋଡ଼ି ମେଘଦେହକୁ ଧଳା ଫୁଲର ମାଳ ଖସିପଡ଼ିଲା ଭଳି ଧାଡ଼ି ବାନ୍ଧି ଉଡ଼ିଯାଉଥିବା ଧଳା ବଗମାନଙ୍କୁ ଦେଖି ରାଜକୁମାରୀମାନେ କାନ୍ଦନ୍ତି । କେତେ ଚିତ୍ରପଟରେ ସେ ଦୃଶ୍ୟ ଦେଖିଛି । ଖୁବ୍ ଚମତ୍କାର ମନାଏ ସେମାନଙ୍କୁ ଏଭଳି କାନ୍ଦ । ସେକାଳେ ସେମାନେ କାନ୍ଦୁଥିଲେ ।

ଏକାଳେ ବି ତ କାନ୍ଦୁଛନ୍ତି ସେମାନେ—ରେଣୁ, ଉଷା, ମାଧବିକା ଆଉ ବିନୋଦିନୀ-ମାନେ । ଚିଫ୍ ଇଂଜିନିଅରଙ୍କ ଝିଅ ରେଣୁ—ଜିଲ୍ଲା ମାଜିଷ୍ଟ୍ରେଟଙ୍କ କନ୍ୟା ଉଷା—ବଡ଼ ଡାକ୍ତରଙ୍କ ଦୁଲାଲୀ ବିନୋଦିନୀ—ଆଉ କଣ୍ଟ୍ରାକ୍ଟର-ତନୟା ମାଧବିକା । ହାୟ ! କିଏ କୁଆଡ଼େ ଗଲେଣି ସେମାନେ । ସେ ଦିନର ମାଜିଷ୍ଟ୍ରେଟଙ୍କ କନ୍ୟା ଆଜି ଡାକ୍ତରଙ୍କ

ସହଧର୍ମିଣୀ । ସେଦିନର କଣ୍ଟ୍ରାକ୍ଟର-ତନୟା ଇଂଜିନିଅରଙ୍କ ହୃଦୟେଶ୍ୱରୀ । ସେମାନେ ସେତେବେଳେ କାନ୍ଦୁଥିଲେ—ଲୁହ ଜମୁଥିଲା ମୁନା ଆଳଆରେ । ସେମାନେ ଆଜ ବି କାନ୍ଦୁଛନ୍ତି—ଲୁହ ଝରୁଛି ରତ୍ନ ଆଲମାରିରେ । ସେମାନେ ଧନ୍ୟ ।

କିନ୍ତୁ ସ୍ତ୍ରୀ ବୋଲି ସୁମିତ୍ରା କାନ୍ଦିବ ନା କଣ ? କୋଉଠି ବା କାନ୍ଦିବ ? କାନ୍ଦିବାକୁ ଏଠି ଜାଗା କାହିଁ ? ଏଇ ସେକ୍ରେଟାରିଏଟ୍‌ରେ କଣ ବସି କାନ୍ଦିହୁଏ ? ଟାଇପ୍ ମେସିନ୍ ଉପରେ କଣ ଲୁହ ଢାଳିବା କଥା ? ହେଇ, ସେଠି ବହୁ ଦୂରରେ ଯେଉଁ ନଈଟା ବଙ୍କେଇ ହୋଇ ବହିଯାଉଛି—ଆଉ ତା'ର ଠିକ୍ କୂଳରେ ସେଇ ଯେଉଁ ଭଙ୍ଗା ଦେଉଳଟା ଅଛି—ସେଇ ଦେଉଳର କଟା ପଥରଟା ଉପରେ ସଞ୍ଜବେଳେ ଯଦି ନିର୍ଦ୍ଦ୍ୱନ୍ଦ୍ୱରେ ବସି ହୁଅନ୍ତା, ତେବେ ଚମତ୍କାର କାନ୍ଦି ହୁଅନ୍ତା, କିମ୍ବା ନ ହେଲେ ଏଇ ଅଳ୍ପ ଦୂରରେ ସେଇ ଯେଉଁ ପାର୍କଟା—ଆଉ ତା ଭିତରେ ସବା ଶେଷ କୋଣରେ ଅନ୍ଧାରିଆ ମଧୁମାଳତୀ କୁଞ୍ଜତଳେ ଯେଉଁ ସିମେଣ୍ଟ ବେଞ୍ଚଟା ପଡ଼ିଛି—ସେଠି ବି ଯଦି ନିର୍ଭୟରେ ଏକୁଟିଆ ବସି ହୁଅନ୍ତା—ତେବେ କେତେ ଆରାମରେ କାନ୍ଦି ନ ହୁଅନ୍ତା ! କିମ୍ବା ନିହାତ ନ ହେଲେ ଯଦି ଗୋଟେ ଏକୁଟିଆ ନିର୍ଜନ ବଖରାଏ ଘର ମିଳନ୍ତା—ତେବେ ସେହି ଘରେ କବାଟ କିଳି ବିଛଣା ଉପରେ ମୁହଁ ମାଡ଼ି ଶୋଇ ନାକ ସୁଁ-ସୁଁ କରି କାନ୍ଦି କାନ୍ଦି ଆଖିରୁ ଅସରାକୁ ଅସରା ଲୁହ ଢାଳି ତକିଆକୁ ଓଦା କରି ଦେଇ ହୁଅନ୍ତା । ଆଉ କିଛି ସମୟ ପରେ ସେହି ଓଦାକୁ ଦେଖି ତୃପ୍ତିରେ ମନ ଭରିଉଠନ୍ତା । ନିଜର ଓଜନ ଉପରେ କେତେ ପ୍ରତ୍ୟୟ ବଢ଼ିଯାଆନ୍ତା । ପୁଣି କେତେ ଉଲ୍ଲାସ ଲାଗନ୍ତା—କେତେ ହାଲୁକା ଲାଗନ୍ତା—ଆଉ କେତେ ଓଜନିଆ ବି ନ ଲାଗନ୍ତା ! ଆଉ ଏଠି । ଏଇ ସେକ୍ରେଟାରିଏଟ୍ ଭିତରେ ଟାଇପ୍ ମେସିନ୍ ପାଖେ ଯୋଡ଼ା ଯୋଡ଼ା ନେଫେଡ଼ା ହସର ଆଖି ତଳେ ବସି କଣ କାନ୍ଦିହୁଏ ?

ହସିବା ଇ ଉଚିତ । ସମସ୍ତେ ଏଠି ହସିବାକୁ ଚାହାନ୍ତି । ହସ ମଧ୍ୟ ଦେଖିବାକୁ ଚାହାନ୍ତି ।

ସନ୍ଧ୍ୟା ପାଞ୍ଚଟା ବାଜିଲାଣି । ଭୋକ ମଧ୍ୟ ହେଲାଣି । ମୁଣ୍ଡଟା ବଥାଉଛି ! ଫାଇଲଗଦା ଭିତରୁ ଉଠି ଘରକୁ ବାହୁଡ଼ିଲେ ହୁଏ । ଘର ତ ନୁହଁ—ମେସ୍ ! ତିନି ଚାରିଜଣ ଝିଅ ମିଶି ଗୋଟିଏ ମେସ୍ କରିଛନ୍ତି । ମେସ୍‌ରେ କଣ କବାଟ କିଳି ନିର୍ଦ୍ଦ୍ୱନ୍ଦ୍ୱରେ ନିର୍ଜନତା ଭିତରେ କାନ୍ଦିହୁଏ ? ସେଠି ଭଲ କିଏ କାନ୍ଦେ ? ନିରୁବାଳା, ବାସନ୍ତୀ, ଭାରତୀ ଆଉ ହର୍ଷମଣି । ସବୁଗୁଡ଼ାକ ହସକୁଡ଼ୀ—ଘୋଡ଼ୀ ଭଳି ଦିନରାତି ହିଁ ହିଁ ହୋଇ ହସୁଥିବେ । ମେସ୍, ନା ଗାତ ଚୁଲି ।

ତଥାପି ସେଇଠିକି ଯିବାକୁ ହେବ । ଭୋକ ହେଲାଣି—ମୁଣ୍ଡ ବଥାଇଲାଣି ।

ସାହେବଙ୍କୁ ଚନ୍ଧିବୁ ?

ସେନାପତି ସାହେବ ??? ସୁମିତ୍ରା ଚମକି ପଡ଼ିଲା । ତାଙ୍କର ଡିପାର୍ଟମେଣ୍ଟର ଡେପୁଟି ସେକ୍ରେଟାରୀ ମିଷ୍ଟର ଅମରେଶ ସେନାପତି ଆଇ. ଏ. ଏସ୍ । ଇଲେ ମାଆ ଲୋ ! ମଣିଷ ଏ ନୁହେଁ—ବାଘ । ଏଡ଼େ ଲମ୍ବା—ଏଡ଼େ ଓସାର—ବପୁମନ୍ତ ମଣିଷ—ଏଡ଼େ ବଡ଼ ମୁହଁ—ଜଳଜଳ ଭଲ ଆଖି—ବାଘ ହେଣ୍ଟାଳ ଭଳି ହାଉଁ ମାଉଁ ଗାଉଁ କଥା—ପାଖରେ ଠିଆହେଲେ ପାଟିରୁ ବଚନ ବାହାରେ ନାହିଁ । ଦେହ ଥରେ—ଆଖି ବୁଜି ହୋଇ ଆସେ । କିଏ ସେ ବାଘର ଆଗକୁ ଯିବ ଲୋ ମାଆ ? ସେଇ ବାଘର ନାକରେ ଦଉଡ଼ି ଲଗାଇ କାନ ଧରି ଟାଣି ଟାଣି ନେବାକୁ ଆସିଚି—ରେଣୁ—ମିସେସ୍ ରେଣୁ ସେନାପତି । ତା'ର ପିଲାଦିନର କଲେଜପଢ଼ୁଆ ସାଙ୍ଗ ସେ ଦିନର ରେଣୁ ଦେଈ । ନୁରୁବୁ-ପୁରୁବୁ ଲାଜକୁଳୀ ଲତା ସାହିତ୍ୟରେ ଅନର୍ସ ନେଇ ବି. ଏ. ପଢ଼ୁଥିଲା । ଟିକିଏ କଥାରେ କାନ୍ଦି-ପକାଏ । ଭାରି ନାକ-ସଙ୍କେଇ...(କାନ୍ଦିଲେ କିନ୍ତୁ—ଭାରି ସୁନ୍ଦର ମାନେ ତାକୁ) ମୁହାଁମୁହିଁ କାହା ଆଗରେ ଠିଆ ହୋଇ ପାରେନାହିଁ । କାହାର ଉଚ୍ଛୃଙ୍ଖଳ ସହିପାରେ ନାହିଁ । ଟିକିଏ ତାତରେ ଝାଉଁଳିପଡ଼େ । ସେହି ରେଣୁ ଦେଈ—କୁଆଡ଼ୁ ଆସିଲା ତାର ଏତେ ବଳ ? ଏତେ ଦମାକ ? ଏତେ ତେଜ ? ଆସିଚି ସେନାପତି ସାହେବର ନାକରେ ଦଉଡ଼ି ଲଗାଇ କାନ ଧରି ଟାଣି ଟାଣି ନେବ ଅଫିସରୁ...

ସୁମିତ୍ରା ଓଠରୁ ଶୁଖିଲା ହସଟି ଝଡ଼ି ପଡ଼ି ଉଡ଼ିଗଲା ।

ସେହି ଡିପାର୍ଟମେଣ୍ଟରେ ରେଣୁ ଦେଈ ! ଗୋଟା ବାଘକୁ ଏକୋଇଶିଟା ଛେଳି । ବାଘ ବଜାଷ୍ଟ ଖେଳ ତ ଦେଖିଛ !! ଗୋଧା ଜଗି ଜଗି ଚାଲିବା କାମ ଆମର । ବାଘକୁ ଅଟେଇ କରି ଚନ୍ଧିବା ସହଜ ନୁହେଁ ଆମ ପକ୍ଷେ—ଦରକାର ବି ନାହିଁ । ଘରକୁ ବାରହୁଏ—ହେଣ୍ଟାଳରୁ ଜାଣିହୁଏ—ସବୁ ବାଘ ସମାନ—ତୁମେ ସିନା ବାଘ ଖେଳାଉଛ ସେ...

ସୁମିତ୍ରା କଥା ଶୁଣି ରେଣୁ ହସି ହସି କାଶିଉଠିଲା ।

ଯାଃ—ପାଗଳ୍ । ଯାହାହେଉ ସୁମୀ, ତୁମେମାନେ ଖୁବ୍ ଫରଚୁନେଟ । ମୁଁ ତ ଦେଖୁଚି—ପାଞ୍ଚବର୍ଷ ତଳେ ତୁ ଯାହା ଥିଲୁ—ବର୍ତ୍ତମାନ ଅବିକଳ ସେଇଆଁ ଅଛୁ । ସେହିପରି ହସୁଚୁ, ଆଉ ହସାଇପାରୁଚୁ । ଦେଶ୍ ସ୍ୱାଧୀନ ଆଉ ନିର୍ଦ୍ୱନ୍ଦ୍ୱ ଜୀବନ—କିନ୍ତୁ ଦେଖ ତ ଆମର ଅବସ୍ଥା...

ସୁମିତ୍ରାର ରକ୍ତସ୍ନାନ ଆଖିରେ କୌତୁକ ଝଲମଲ ହେଲା ।

ତୁମେ କଣ କାନ୍ଦୁଚ ରେଣୁ ଦେଈ ?

କାନ୍ଦିବାଠାରୁ ବଳେ ସୁମିତ୍ରା !! ଏଇମିତି ଗୋଟାଏ ଗୋଟାଏ ବାଘକୁ ନେଇ ଘର

ସୁମିତ୍ରା ଛତାଟି ଧରି ବାହାରିଲା । ତରତର ହୋଇ ସିଢ଼ିରୁ ଖସି ଆସି ଫାଟକ ପାର ହୋଇ ପୋର୍ଟିକୋ ତଳକୁ ଆସୁ ଆସୁ ହଠାତ୍ ତାର ପାଖରେ ସର୍ କିନା ଗୋଟାଏ କାର୍ ବ୍ରେକ୍ ଦେଲା । ସୁମିତ୍ରା ଚମକି ପଡ଼ି ବାମ ପଟକୁ ଆଢ଼େଇଗଲା ଅତି ସନ୍ତର୍ପଣରେ । କେହି ଜଣେ ଉପରସ୍ଥ ସାହେବ କମ୍ବା···କିନ୍ତୁ ସେ ଚମକି ପଡ଼ିଲା । କାର୍ ଭିତରୁ ପାଞ୍ଚବର୍ଷ ତଳର ଗୋଟିଏ ପରିଚିତ କଣ୍ଠରେ କିଏ ଜଣେ ଡାକିଲା—

କିରେ ସୁମିତ୍ରା ଯେ !!

ସୁମିତ୍ରା ଚାହିଁଲା । ରେଣୁ ବସିଛି କାର୍ ଭିତରେ । ନିଜେଇ ଧରିଛି ଷ୍ଟିଅରିଂ । ବାମ ପଟକୁ ଦୁଇଟି ଗୋରା ଆଉ ମୋଟାସୋଟା କଉତୁକିଆ ଛୁଆ । ପୁଅଟିଏ—ଝିଅଟିଏ । ରେଣୁ ଆଗ ଅପେକ୍ଷା ଖୁବ୍ ମୋଟି ହୋଇଯାଇଛି; କିନ୍ତୁ ଏତେକ ମାଂସ ନ ଥିଲେ କି ଏତେ ବଡ଼ ଗାଡ଼ି ପୂରି ଉଠିବ ନାହିଁ । ପ୍ରସାଧନର ଯଥେଷ୍ଟ କୃତ୍ରିମତା ଭିତରେ ବି ରେଣୁର ସ୍ୱଭାବ-ସୁନ୍ଦର ଲାବଣ୍ୟ ଆଗ ଅପେକ୍ଷା ବରଂ ବେଶି ଉଜଳି ଉଠିଛି ।

ସୁମିତ୍ରା ନମସ୍କାର କରି କାର୍ ବାଡ଼କୁ ଧରି ଠିଆହେଲା । ରେଣୁ ସେଇଭଳି ବସିଛି କାର୍ ଭିତରେ ଷ୍ଟିଅରିଂରେ ହାତ ପକାଇ । ପିଲା ଦୁଇଟି ବି ବସିଛନ୍ତି ଖୁବ୍ ନିଶ୍ଚଳ ଆଉ ଗମ୍ଭୀର ଭାବରେ । ରେଣୁ ଟିକିଏ ହସିଦେଇ କହିଲା—

ଆଉ ? ତୁ ? ତୁ ବୋଧହୁଏ ଏଇଠି···

ଏଲ୍. ଡି. ଆସିଷ୍ଟାଣ୍ଟ । —ସୁମିତ୍ରା ବାକ୍ୟଟିକୁ ଶେଷ କଲା ।

ତୁମେ କୁଆଡ଼େ ଏଣେ ରେଣୁ ଦେଈ ?

ଆଉ କୁଆଡ଼େ ? ତୁମମାନଙ୍କର ସବୁକାମ ସରିଲାଣି; କିନ୍ତୁ ତୁମ ସାହେବମାନଙ୍କର ଆଉ ଘରକଥା ମନେପଡ଼େ ନାହିଁ । ଆଜି ଗୋଟାଏ ଜାଗାକୁ ଯିବାର କଥା ଥିଲା; ଅଥଚ ଭଦ୍ରଲୋକଙ୍କର ସେ କଥା ଖିଆଲ ନାହିଁ । ତିନି ଥର ଫୋନ୍ କଲି···ହେଇ ଯାଉଛି—ହ୍ୱାଭ୍ ପେସେନସ୍—ଡୋଣ୍ଟ ଡିଷ୍ଟର୍ବ୍—ଶୁଣି ଶୁଣି ବିରକ୍ତ ହୋଇ ନିଜେଇ ଶେଷକୁ ଆସିଲି···ଇସ୍—ଦେଶଟାକୁ ଏଇମାନେ ସତେ କି ମୁଣ୍ଡେଇ ଧରିଛନ୍ତି !!!

ସୁମିତ୍ରା ସବୁ ବୁଝିପାରିଲା । ମାତ୍ର ବୁଝିପାରିଲା ନାହିଁ କେଉଁ ସାହେବଙ୍କ କାନ ଧରି ଅଫିସରୁ ଟାଣି ନେବାକୁ ରାଗରେ ନାଲି ପଡ଼ି ଭମଭମ ହୋଇ ଛୁଟିଆସିଛି ଏଇ ମିସେସ୍ ରେଣୁ···କିଏ ହୋଇପାରେ—ପ୍ରଧାନ—ନା ଶତପଥୀ—ନା ମହାପାତ୍ର—ନା ଚଉଧୁରୀ—ନା ସେନାପତି ?

କେଉଁ ସାହେବଙ୍କ କଥା କହୁଛ ରେଣୁ ଦେଈ ? ସାହେବମାନେ ତ କେତେବେଳୁଁ କାମେରା ଛାଡ଼ିଲେଣି ।

ଏଇ ତୁମର ସେନାପତି ସାହେବ, ତୋର କେଉଁ ଡିପାର୍ଟମେଣ୍ଟ ସୁମିତ୍ରା ? ସେନାପତି

କଲେ ଜୀବନ କେମିତ କଟେ ଜାଣିଚୁ ନା ???

ସୁମିତ୍ରା ସତକୁ ସତ ହସିଦେଲା ।

ଘରକୁ ଗଲେ ବାଘ ପୋଷା ମାନେନା ରେଣୁ ଦେଇ ?

ବାଘ କେବେ ପୋଷା ମାନନ୍ତି ଲୋ ଓଲି ?

ସୁମିତ୍ରା କଣ କହିବ ବୋଲି ଯାଉଥିଲା; ମାତ୍ର ହଠାତ୍ ପିଛଆଡ଼କୁ ଗୁହିଁ ରେଣୁର ପିଲମାନେ ପାଟି କରି ଉଠିଲେ—ଓ, ଡାଉଡ଼ି – ଡାଉ୍ଡ଼ି...

ବଡ଼ପିଲଟି ଖୁବ୍ ଗମ୍ଭୀର ହୋଇ ବସିଥିଲା; ମାତ୍ର ସେ ମଧ୍ୟ ଗାଡ଼ି ଭିତରେ ଠିଆ ହୋଇ ଚିତ୍କାର କରିଉଠିଲା —

ଡାଡ଼ୁଡ଼ି ଇଜ୍ ଏ ନଟି ବଏ !!

ଡାଡ୍ଡ଼ି ଇଜ୍ ଟୁଉ୍ ଲେଏଟ୍!!

ସୁମିତ୍ରା ଅବସ୍ଥା ବୁଝି ବିଦାୟ ନେଇ ପଳାଇ ଆସୁଥିଲା; ମାତ୍ର ରେଣୁ କହିଲା—

ରହ ସୁମିତ୍ରା ! ପଳାଉଚୁ କାହିଁକି । ରହ—ତୋତେ ଇଣ୍ଟ୍ରୋଡ଼ିଉସ୍ କରି ଦେବି ତାଙ୍କ ସାଙ୍ଗେ । ମୋର ଗାଡ଼ିରେ ବି ତୋତେ ଛାଡ଼ିଦେଇ ଆସିବି ତୋ ବସାରେ... ରହନା...

ନାଇଁ ନାଇଁ ରେଣୁ ଦେଇ...ଅଶେଷ ଧନ୍ୟବାଦ...ମୁଁ ଯାଏଁ ...

ସୁମିତ୍ରା ନମସ୍କାର ଜଣାଇ ସେଠାରୁ ଶୀଘ୍ର ଚୁଲିଆସିଲା । ବାଘ ଆସୁଚି—ବାଘ । ଇଲୋ ମାଆ ଲୋ ! ରେଣୁ ହାତରେ ବନ୍ଧୁକ ଗୁଳି । ଯନ୍ତା ଖୋଲିଦେବ – ବାଘ ପଶିଯିବ ଯନ୍ତା ଭିତରେ ଘାଉଁ ଘାଉଁ ହୋଇ...ଇଲୋ ମାଆ ଲୋ...

ଧନ୍ୟ ରେଣୁ...!!!

ରେଣୁକୁ ଇର୍ଷା କରିବା କଥା; ମାତ୍ର ତା ପ୍ରତି ବରଂ ମନ ପ୍ରଶଂସାରେ ଭରିଉଠୁଛି । ବେଶ୍ ଭାଗ୍ୟବତୀ ଝିଅ ରେଣୁ । ବାପା ଋିଟାୟର୍ଡ଼୍ ମାଜିଷ୍ଟ୍ରେଟ—ବି. ଏ. ପାସ୍ କରୁ କରୁ ଆଇ. ଏ. ଏସ୍. ବର । ପାଞ୍ଚ ଛଅ ବର୍ଷ ଭିତରେ ଦୁଇଟି ଚମତ୍କାର ପିଲା । ପୁଅଟିଏ, ଝିଅଟିଏ...କେଡ଼େ ଗମ୍ଭୀର ହୋଇ ବସିଥିଲେ ଅଥଚ ଯେମିତି ବାପକୁ ଦେଖିଲେ – ସାଙ୍ଗେ ସାଙ୍ଗେ କି ଚଞ୍ଚଳ ହୋଇଉଠିଲେ ଡାଡ୍ଡ଼ି ଇଜ୍ ଏ ନଟି ବଏ !!!

ହୁଃ ହୁଃ ହୁଃ...

ସୁମିତ୍ରା ମନେ ମନେ ହସିଉଠିଲା ।

ଇଶ୍ୱର ତାର ମଙ୍ଗଳ କରନ୍ତୁ ! ଭଲ ଝିଅଟିଏ ରେଣୁ । ମୂଳରୁ ବି ଭଲ ଥିଲା ସେ । ଆଜି ତ ଫେର୍ ଦେଖି ଚହ୍ଲିଲି । ହଉ ପଛେ ଟିକେ ଫୁଲେଇ । ରେଣୁ କାନ୍ଦିଲେ ତାକୁ କେଣ୍ ମାନେ । କାନ୍ଦ କାନ୍ଦ ବୋଧେ ସେ ସେନାପତି ସାହେବଙ୍କୁ ନଚାଉଛି । କାନ୍ଦ-

ଜାଣିଲେ ବାଘ ବ ନାଚବ, ରେଣ୍ଡ ଭଲ…

ଈଶ୍ୱର ତାର ମଙ୍ଗଳ କରନ୍ତୁ ! ହେଉ ପ୍ରଭୁ ! ତୁମ ଜଗତରେ ସବୁ ଝିଅ ବି. ଏ. ପାସ୍ କରି ଅଭିଆଡ଼ୀ ହୋଇ ରହୁନାହାନ୍ତି । ସେକ୍ରେଟାରିଏଟ୍‌ରେ ଏଲ୍. ଡି. ଆସିଷ୍ଟାଣ୍ଟ ହୋଇ ମେସ୍‌ରେ ରାନ୍ଧ ଖାଉନାହାନ୍ତି । ମେସ୍ !

ଇସ୍ ! ମେସ୍ କଥା ମନେ ପଡ଼ିଲେଇ ମୁଣ୍ଡ ବେଶି ବଥାଏ । ଖାଲି ହେଁ ହେଁ—ଫେଁ ଫେଁ—ସବୁ କଦର୍ଯ୍ୟଗୁଡ଼ାକ । ଯେଉଁ ଯେଉଁ ଟୋକୀଟା, ଭାରତୀ । ବଡ଼ ଲଘୁମନା ଝିଅଟା, କୌଣସି କଥାକୁ ଗୁରୁତ୍ୱ ଦେଇ ଦେଖିପାରେନାହିଁ । ସବୁବେଳେ ଗୋଟେ ହିଁ ହିଁ ହେଉଥିବ । କମ୍ ଅଶ୍ଳୀଳ ବ ନୁହେଁ । ଅଫିସରୁ ଆସିଲା ତ—ସବୁ ଅଫିସରଙ୍କର କ୍ୟାରେକେଚର୍ ଆରମ୍ଭ କରିଦେବ । କଣ ତାକୁ ସେଥିରୁ ମିଳେ କେଜାଣି । ଆସିଷ୍ଟାଣ୍ଟ ସେକ୍ରେଟାରୀ ପ୍ରଫୁଲ୍ଲ ବାବୁଙ୍କୁ ସେ କାହିଁକି ଏତେ ଥଟ୍ଟା କରେ ?

ସିଏ ଫାଜିଲ୍ ଝିଅଟା । ହଁ—ପ୍ରଫୁଲ୍ଲ ବାବୁ କୁଆଡ଼େ ତାକୁ ଟିକେ ବେଶି ଡାକନ୍ତି ।

ଆଜି ଯାଏଁ ପ୍ରଫୁଲ୍ଲ ବାବୁ ବାହା ହୋଇନାହାନ୍ତି ।

ଦେଖିବାକୁ ମଧ୍ୟ ପ୍ରଫୁଲ୍ଲ ବାବୁ ସୁନ୍ଦର ।

ହସନ୍ତି କେଡ଼େ ସୁନ୍ଦର ।

ଅଥଚ ହସିବାରେ ଆଡ଼ମ୍ବର ନାହିଁ ।

କନ୍ଥ ଟିକଏ କେମିତି ମାଇଚିଆ !!

ସିଏ ଥିର ଥିର କଥା—ସତେ କି କ'ଣ ଭାବୁଛନ୍ତି…

ଆଖି ଦୁଇଟି ବଡ଼ ଉଦାସିଆ ଦିଶେ—

ଚାହିଁବେ ଏମିତି—ସତେ ସେ ତୁମର ଅନୁଗ୍ରହକୁ ଅପେକ୍ଷା କରୁଛନ୍ତି ।

କୋଉଠି ଗୋଟାଏ ଗଡ଼ଜାତ ରଜାର ଦାନଘର ।

ହେଲା ତ—ତୁ ଗୋଟାଏ ଫାଜିଲଙ୍କ ପରି ତାଙ୍କ ପଛରେ ତାଙ୍କୁ ସମସ୍ତଙ୍କ ଆଗରେ କ୍ୟାରେକେଚର୍ କରୁଚୁ କାହିଁକି ?

ପ୍ରେମ କରିବା କଥା ତ ପ୍ରେମ କର ।

କିଏ ମନା କରୁଛି ?

ଯେ ପ୍ରେମ କରେ—ସେ କଅଣ ଏମିତି ତାର ପ୍ରେମିକକୁ ନେଇ ଏମିତି ଅନ୍ୟମାନଙ୍କ ଆଗରେ ଘୋଡ଼ୀ ଭଳି ହିଁ ହିଁ ହୋଇ ହସେ ?

ପ୍ରେମ କରୁଚୁ ତ କାନ୍ଦ୍ । ଦେଖିବୁ—ତୋର ଆଖିର ଲୁହରେ ଅଭିଷେକ ହେବା ଲାଗି ରଜାପୁଅ ଧାଇଁଆସିବ ହାତୀରେ ଚଢ଼ି—ଘୋଡ଼ାରେ ଚଢ଼ି ।

ପ୍ରଫୁଲ୍ଲ ବାବୁ କୁଆଡ଼େ ନୂଆ ମଟରଟାଏ କିଣିଛନ୍ତି । ଭାରତୀ ସେ ମଟରରେ ଦୁଇ

ସ୍ବର ଥର ବସିଲାଣି ।

ଭଲ କଥା...

କିନ୍ତୁ ତୁ ଏମିତ ଗୋଟାଏ ଘୋଡ଼ୀ ଭଳି ହିଁ ହିଁ କାହିଁକି ହେଉଛୁ ?

ଟିକିଏ ସିରିଅସ୍ ହୁଅ ।

କାନ୍ଦିପାରୁନୁ ?

ତୁମିଜା ଆସି ଛକ ପାଖରେ ହୋଇଗଲାଣି । ଠିକ୍ ବାଁ କଡ଼କୁ ପାର୍କଟା । ଆଉ ଟିକିଏ ସିଧା ଆଗେଇଗଲେ ହେଇ ସେପଟକୁ ତାଙ୍କ ମେସ୍‌ଟା ।

ମେସ୍, ନା ଗାତ ଚୁଲି !!

ପାର୍କରେ ଆଲୁଅ ଜଳିଲାଣି । ନେଳୀ ଆଲୁଅ । ଇସ୍—କେତେ ନେଳୀ ! ଆଗରେ ଅଶୋକ ଗଛଟାରେ ଭର୍ତ୍ତି ହୋଇଛି ନାଲି ଫୁଲ । ଅଶୋକ—ସୁନ୍ଦର ନାଁଟିଏ । ଅଶୋକମରବିନ୍ଦଞ୍ଚ ଚୂତଞ୍ଚ ନବମଲ୍ଲିକା । ନୀଳୋତ୍ପଳକୁ ମିଶାଇ କନ୍ଦର୍ପର ପାଞ୍ଚଟା ବାଣ । ଓଡ଼ିଆ ଅନର୍ସ କ୍ଲାସରେ 'ଲାବଣ୍ୟବତୀ' କାବ୍ୟ ପଢ଼ିଲାବେଳେ ଘୋଷିଥିଲି ଏ ଶ୍ଲୋକଟି—"ଉନ୍ମାଦଂ ଅରବିନ୍ଦେ ସ୍ୟାତ୍ ରସାଲୋ ଖେଦଦାୟକଃ ।

ଦାହୋ ନୀଳୋତ୍ପଳେନ୍ଦ୍ରଃ ପି ସଶୋକ ନବମାଳିକା ।

ଉଚ୍ଚାଟନ ଅଶୋକେ ସ୍ୟାତ୍ ଇତ୍ୟନଙ୍ଗ ଶରାଃ ଗୁଣାଃ ।"

ପ୍ରକୃତରେ ଫୁଲଭରା ଅଶୋକ ଗଛ ଦେଖିଲେ ମନଟା ଉଚ୍ଚାଟ ଲାଗେ । ଏତେ ନାଲି !! ମନରେ ନିଆଁ ଲଗାଇଦିଏ ଯେପରି !! ଆଉ ସେଇ ନିଆଁ ଲଗା ମନଟା ଲାଗି ଶେଷରେ କାନ୍ଦିବାକୁଇ ଇଚ୍ଛା ହୁଏ । ନାଁଟି ସିନା ଅଶୋକ; କିନ୍ତୁ ତା'ର ମୂଳରେ ବସିଲେ—ବେଳେ ବେଳେ ମନହୁଏ କାନ୍ଦିବାକୁ । ଇସ୍—ଏତେ ନାଲି !! ଏତେ ନିଆଁ !! ଏତେ ଦହନ !! ଏତେ ଉଚ୍ଚାଟ !!

ଏଇ ଅଶୋକ ବଣରେ ରାବଣ ନେଇ ରଖିଥିଲା ସୀତାଙ୍କୁ । ଭାବିଥିଲା—ସୀତାଙ୍କ ମନରେ ନିଆଁ ଲଗାଇଦେବ ଏଇ ଅଶୋକ; କିନ୍ତୁ କ'ଣ ହେଲା ? ନିଆଁ ଲାଗିଲା ଲଙ୍କାରେ ! ଅଶୋକବଣଟା ସୀତାଙ୍କ ଲୁହରେ ଭାସିଗଲା ।

ଅବଶ୍ୟ ସୀତାଙ୍କ ଲାଗି ବେଶ୍ ଥିଲା ସେ ବଣଟା । ଅଶୋକବଣରେ ନରହି ସେ ଯଦି ଗୋଟାଏ ମେସ୍‌ରେ ରହିଥାନ୍ତେ, ଭଲ କାନ୍ଦି ପାରିଥାନ୍ତେ ? ଆଉ ଯଦି ସେ ମେସ୍‌ରେ ଏଇ ଭାରତୀ ଭଳିଆ ଟୋକୀଟେ ଥାଆନ୍ତା !!

ଭାରି ପାଗଳ୍ ଟୋକୀ !

ଏଇଭଳି ଝିଅ ତ ପ୍ରେମ କରନ୍ତି !!!

ଅଦ୍ଭୁତ !!

ବଡ଼ ହାଲୁକା···

ପାଇବ ଯେବେ କଟଡ଼ା···

ପ୍ରଫୁଲ୍ଲ ରାୟ ଗାଉଥିଲା ଏଭଳି ଫଚଫଚ କୋରାଣୀରେ···ପ୍ରେମ କଣ ଏଡ଼େ ସହଜ କଥା ?

ବଡ଼ କଠିନ ସେ ପ୍ରୀତି ପାଳିବା···

ଭରତ ଖାଇବ ଯେବେ ଶକ୍ତ କଟଡ଼ା !!

ଚୁଲିକି ଯାଉ ଭରତ !!

ଅଶୋକ ଗଛଟାର ଏ ପଟେ ଫୁଲଭର୍ତ୍ତି କୃଷ୍ଣଚୂଡ଼ା ଗଛ । ସେଥିରେ ବି ନିଆଁ ଲାଗିଛି । ଏଠି ଫଗୁଣ ଫଗୁରେ ହୋରି ଖେଳୁନାହିଁ, ନିଆଁରେ ହୋରି ଖେଳୁଛି । ପାର୍କର ନେଳୀ ଆଲୁଅ ତଳେ ବାଷ୍ପ ହୋଇ ପଡ଼ୁଛି । ସୁନ୍ଦର ପବନ ବହୁଛି । ଏ ପବନଟା ବି କେମିତି ଗୋଟେ ମତାଇଦିଏ । ଯିବ କି ଟିକେ ପାର୍କ ଭିତରକୁ ? ଘଡ଼ିଏ ବସି-ଗଲେ ହୁଏ । ଖେଳ ଅବଶ୍ୟ ହେଲାଣି । ମୁଣ୍ଡଟା ବି ବଥାଉଛି । ମେସ୍‌କୁ ଗଲେ ଅବଶ୍ୟ ଖାଇବାକୁ ମିଳିବ, ମାତ୍ର ମୁଣ୍ଡ ବଥାଇବ ବେଶି !

ସେଠି ଆଉ ତିନି ଚାରିଟା ଝିଅଙ୍କ ଆଗରେ ଭରତ କ୍ୟାରେକ୍ଟର ଦେଖାଉଥିବ ପ୍ରଫୁଲ୍ଲ ରାୟର । ଅନ୍ୟମାନେ ହିଁ ହିଁ ହୋଇ ହସି ଗଡ଼ୁଯାଉଥିବେ ।

ଛି—

ମେସ୍, ନା ଗାଡ଼ି ଚୁଲି !!

ତା ଅପେକ୍ଷା ବରଂ···

ସୁମିତା ପାର୍କ ଭିତରକୁ ଗଲା । ଅଶୋକ ଗଛ ମୂଳେ ଗୋଟାଏ ସିମେଣ୍ଟ ପିଣ୍ଡି ଗୋଲାକାର ହୋଇ ଗଛଟାକୁ ଘେରାଇ ରହିଛି । ପାର୍କର ନେଳୀ ଆଲୁଅ ପଡ଼ୁଛି ସେଠି । ସେଠାରେ କେହି ନାହାନ୍ତି । ଟିକିଏ ଜଣକୁ ସେ ଜାଗାଟା । ଆଉ ସବୁଆଡ଼େ ହାଉଜାଉ ହେଉଛନ୍ତି ଲୋକେ । ଯୋଡ଼ିଜାଉଳି ପ୍ରଜାପତି ପରି ଉଡ଼ୁଛନ୍ତି ପୁଅଝିଅ । ସେଠି ପାଣିକୁଣ୍ଡ ପାଖେ ବେଙ୍ଗଙ୍କ ଉପରକୁ ଟେକା ପକାଉଛନ୍ତି କେତେକ ସାନ ସାନ ପିଲା । ତାଙ୍କୁ ମଜା ଲାଗୁଛି । ହେଇଟି, ସେ କଣରେ କେଇଟା ବଜାରୀ ଟୋକା ଖାଲି ଟହଲ ମାରୁଛନ୍ତି । କେତେ ଜାତିକା ରଙ୍ଗଢଙ୍ଗିଆ ହାଓ୍ୱାଇ—ଖାଲି ହାଓ୍ୱାରେଇ ଖସୁଛନ୍ତି । ଆଉ ଏ ଟୋକୀ ପଞ୍ଝାକ ବି ଆଜିକାଲି ସେମିତି ହେଲେଣି । ଏଇ ସେପଟକୁ ଲାଲ, ହଳଦିଆ, ନେଳିଆ ଓଢ଼ଣୀ ଉଡ଼ାଇ···କୋଉ ଏବେ କମ୍ ?

ହାଓ୍ୱାରେ ଉଡ଼ିଯାଏ—ଲାଲ ଓଢ଼ଣୀ ମୋର—ଫର ଫର ଫର ଫର ଓଢ଼ଣୀ ମୋର···

ସେମାନେ ହାଓ୍ୱାରେ ଡଗ୍‌ପହଁରା ଦେଉଛନ୍ତି । ହସୁଛନ୍ତି—ନାଚୁଛନ୍ତି—ମାରୁଛନ୍ତି—ହେଇଟି ସେ ଟୋକା ପଞ୍ଝାଟା କଣ ହେଉଛନ୍ତି ସେଠି ? ହଠାତ୍ ଲଙ୍ଗ୍‌ଜମ୍ପ ଖେଳ ଆରମ୍ଭ ହୋଇଗଲା କାହିଁକି ?

ବଜାଗ୍ !!

କିନ୍ତୁ ହେଇ ସେଇ ଯେଉଁ ଟୋକାଟି—ଧଳା ଫୁଲ୍ ସାର୍ଟ ଆଉ ଧଳା ଫୁଲ୍‌ପ୍ୟାଣ୍ଟ ପିନ୍ଧି ଦୁଇଗୋଡ଼କୁ ଫରକଟା କରି ଗ୍ରୁଡରେ ଦୁଇ ହାତକୁ ଛକି ଠିଆହୋଇ ରହିଛି—ମୁଣ୍ଡରେ ଖୁବ୍ ସାନ ସାନ ବାଳ—ଡେଙ୍ଗା ଆଉ ସିଧା ଟୋକା—ଟିକିଏ ଗମ୍ଭୀର—ତା'କୁ ସେ ଦେଖିଛି ବହୁଥର—ବୋଧେ କଲେଜରେ ଉଚ୍ଚ କ୍ଲାସରେ ପଢ଼ୁଛି । ଖୁବ୍ ଭଲ ଟୋକାଟିଏ ଭଳି ଲଗେ । ସାର୍ଟ ଧରେ; କିନ୍ତୁ ଏମାନଙ୍କ ଭଳି ଆଦୌ ଫର-ଫରିଆ ନୁହେଁ । ମିଶୁଛି ସିନା ଏମାନଙ୍କ ସଙ୍ଗେ; ନ ହେଲେ ସେ ବୋଧେ ଅଲଗା—ସବୁ ଦେଖେ—ସବୁ ଶୁଣେ—ମାତ୍ର…ଭଲ ଟୋକାଟିଏ…ବୋଧେ କବିତା ଲେଖୁଥିବ କିମ୍ବା ଗପ… ।

ଆଉ ସେ ଗେଧା ହୋଇ ବାଙ୍ଗରା ଟୋକାଟା—ହାପ୍ ପ୍ୟାଣ୍ଟ ଉପରେ ଖିଲ୍‌କରି ଗୋଟାଏ ଜାକିନ୍ ଲଗାଇଛି—। ଖୁବ୍ ଟାଣୁଆ ବି ଅଛି । ଅଛି—କଣ ତା' ମନକୁ ବେଳେ ବେଳେ ଡ଼ କୁଛି—ଗୋଟାଏ ସାର୍ଟ ଚକ୍‌କରି ମାରିଦେଇ ସମସ୍ତଙ୍କ ପଛପଟେ ଥରେ ବଜୁଲି ଭଳି ଘୂରିଆସି ପୁଣି ଗ୍ରୁଡ ଫୁଲେଇ ଠିଆହୋଇଯାଉଛି ଡ୍ରିଲ କରିବା ଭଙ୍ଗୀରେ । କାହିଁକି ସେ ଏମିତି ଅମରମହଣ୍ଟ ହେଉଛି ? ଭାରି କିନ୍ତୁ ଏନ୍‌ରଜି ଅଛି ଟୋକାଟାର । ଗୋଡ଼ହାତ ତାର ସମଳା ପଢ଼ନ୍ । ଖୁବ୍ ଦୁଷ୍ଟ ସେ । ଏଇମିତି ଟୋକା ତ ଝିଅଙ୍କ ସିଟ୍‌ରେ ଚଡ଼ଚଡ଼ୀ ବାଣ ଖଞ୍ଜିଦିଅନ୍ତି— । ସିନେମା ଦେଖିଲାବେଳେ ଝିଅଙ୍କର ପଛପଟୁ ବେଣୀ କାଟିଦିଅନ୍ତି—କେତେବେଳେ ବା ପଣତରେ ସିଗ୍ରେଟ ଲଗାଇ ପୋଡ଼ି କଣାକରି ଦିଅନ୍ତି—। ପୁଣି କେତେବେଳେ କିଛି ନ କରି ପାରିଲେ—ଗହଳି ଦେଖି ଝିଅଙ୍କ ହାତକୁ ପିନ୍‌କଣ୍ଟାରେ ଟିକିଏ ଫୋଡ଼ିଦିଅନ୍ତି ।

ମାତ୍ର ସେତିକି । ଆଉ ବେଶି ଆଗାନ୍ତୁ ନାହିଁ ସେମାନେ । ଖାଲି କଉତୁକ । ଖୁବ୍ ଦୁଷ୍ଟଟୋକା ସେ । ଏମିତି ଗୋଟାଏ ଟୋକା ଶାଢ଼ୀକୁ ସିଗ୍ରେଟରେ ପୋଡ଼ିଦେଲେ କିମ୍ବା ହାତକୁ ଆଙ୍ଗୁଠିଆଳରୁ ଆଇ ଛୁଞ୍ଚିରେ ଫୋଡ଼ିଦେଲେ ସିନା ଚିଡ଼ଲାଗେ—ମାତ୍ର ଏମିତି ଗୋଟେ ଟୋକା ଯଦି ସାନଭାଇ ହୋଇଥିବ, ତେବେ ତା ସଙ୍ଗେ କଜିଆ କରିବାକୁ ଖୁବ୍ ଭଲ ଲାଗିବ ନିଶ୍ଚେ ।

ନାଃ—ସେମାନେ ଏଣିକି ଚାହିଁଲେଣି ସମସ୍ତେ । ହେଇ, ସମସ୍ତେ ଏଣିକି ମୁହଁ କଲେଣି । ସେମାନଙ୍କର କୌତୂହଳ ବଢ଼ିଲାଣି । ତାକୁ ଦେଖି ସେମାନେ ବୋଧେ

ଖାବୁଛନ୍ତି—ଏଇ ଅଶୋକ ବୃକ୍ଷ ତଳେ କେହି ଜଣେ ବିରହିଣୀ ତରୁଣୀ ବାସକସଜ୍ଜା ହୋଇ ଅପେକ୍ଷା କରି ବସିରହିଛି—କେଉଁ ଏକ ସପନପୁରର ରାଜକୁମାରକୁ—

ସେମାନେ କ'ଣ ଫୁସ୍‌ଫାସ୍ ହେଲେଣି···

କେହି ଜଣେ ଠାରିବା ଭଙ୍ଗୀରେ କଣ କହୁଛି ।

ହେଇଟି, ସେ ଯେଉଁ ଧଳା ଫୁଲପ୍ୟାଣ୍ଟ ଓ ଫୁଲସାର୍ଟ ପିନ୍ଧା ଡେଙ୍ଗା-ସିଧା ଟୋକାଟି—ମୁଣ୍ଡରେ ଯାହାର ଛୋଟ ଛୋଟ ବାଳ ମେଣ୍ଢାରୁମ ଭଳି, ସେ କପଟ ଗୋଟାଏ ସବ୍‌ଜାନତା ଭଙ୍ଗୀରେ ଠିଆ ହେଲଣି । ଆଉ ସେଇ ନେଳିଆ ଜାକିନ ସଙ୍ଗେ ହାଫ୍‌ପ୍ୟାଣ୍ଟ ପିନ୍ଧି ସାଇଁ ଚକ୍‌କର ମାରୁଥିଲା ଯେଉଁ ଚଗଲା ଗୋଧା ଟୋକାଟା—ସେ କାହାକୁ ଧରିବାଲାଗି ଛକିବା ଭଙ୍ଗୀରେ ନଇଁପଡ଼ିଲାଣି । ଦୁଇ ହାତକୁ ଆଗକୁ ମେଲାଇ ପାପୁଲି ଦୁଇଟାକୁ ତଳ ଉପର କରି ବଙ୍କାଇ—ସତେ ବା ସେ ଛକିଲାଣି—ଏଇ ଅଶୋକ ଗଛ ତଳେ ଆଉ କେଉଁ କଳ୍ପିତ ଯୁବକଟିର ଗ୍ରୀଜ ପଡ଼ିଲେଇ ସେ ତାଲାଟେ ମାରି ମେକ୍ସିକାନ୍ ଭଳି ଗୋଟାଏ ପାଟି କରି ଉଠିବ—ଖାଁ ଖାଁ—ଖେଁ—ଝିକ୍ ଫିକ୍ ।

ନାଁ—ଏଥର ଏପଟୁ ମୁହଁ ଫେରାଇ ଆରପଟକୁ ଚାହିଁବା ଉଚିତ ।

ସୁମିତ୍ରା ସେମାନଙ୍କ ଆଡ଼ୁ ମୁହଁ ଫେରାଇ ଅନ୍ୟ ପଟକୁ ଚାହିଁଲା । ଯାଃ—ଏମାନେ ଟିକେ ଏକୁଟିଆ ନିର୍ଦ୍ଦ୍ୱନ୍ଦ୍ୱରେ ବସି ଜୀବନର ଗୋଟାଏ ଏତେ ବଡ଼ ମୂଲ୍ୟବାନ୍ ଟ୍ରାଜେଡ଼ିଟାକୁ ଗଭୀର ଭାବେ ଅନୁଭବ କରି କାନ୍ଦିବାକୁ ଦେବେ ନାହିଁ ।

ଏ ପୃଥିବୀରେ ଏତେ ଜାଗା ପଡ଼ିଛି । ଅଥଚ ସୁମିତ୍ରା ଲାଗି ଏତେ ଟିକିଏ ନିରୋଳା ଜାଗା କୋଉଠି ନାହିଁ—ଯୋଉଠି ବସି ସେ ଟିକିଏ କାନ୍ଦି ପାରିବ । ଅଥଚ କାନ୍ଦିବା ଲାଗି ତା'ର କେଡ଼େ ମୂଲ୍ୟବାନ୍ ଘଟଣାଟିଏ ଭଲା ନାହିଁ ।

ସୁମିତ୍ରା ଆଙ୍ଗୁଠିରୁ ସେଇ ମୁଦିଟା କାଢ଼ି ହାତରେ ଧରିଲା । ଖୁବ୍ ଛୋଟ ସରୁଆ ଠିକଣା—ସେପ୍‌ରି ଚକ୍ ଚକ୍ ସୁନାମୁଦିଟିଏ । ତା' ଭିତରେ ନୀଳା ରଙ୍ଗର ମୀନା ଦେହରେ ଗୋଟିଏ ନାଲିଆ ପଦ୍ମ । ଆଉ ଠିକ୍ ତା ତଳକୁ ଛୋଟ ଅକ୍ଷର ଦୁଇଟି—

"ସୁମୀ ।"

ସେଇ ମୁଦିଟା ଆଜ ସେକେଟାରିଏଟରେ ଫେରାଇ ଦେଇଗଲେ ଶରତ୍ ଭାଇ ।

ଶରତ୍ ପଟ୍ଟନାୟକ । ତାର ବହୁ ଦୂର-ସମ୍ପର୍କୀୟ ମାଉସୀପୁଅ ଭାଇ । ସେତେବେଳକୁ ସୁମିତ୍ରା ମେସ୍‌ରେ ରହୁ ନ ଥିଲା । ଏଇ ମେସ୍‌ଟା ଥିଲା ତା'ର ନିଜର କ୍ୱାଟରସ୍ । ଛୋଟ ଟାଇପ ଫୋର୍ ଘରଟିଏ । ଆଗରେ ଛୋଟ ଫୁଲ ବଗିଚାଟି । ଆଉ ଘରେ ଗୋଟିଏ ଜନତା ଷ୍ଟୋଭ୍ ।

ସୁମିତ୍ରା ଚାଲିଯାଉଥିଲା । ତା'ର ଆଉ କିଏ ବା ସଂସାରରେ ଅଛି ? ବାପା ତ

ପିଲାଦିନୁ ମରିଥିଲେ । ବାକି ଥିଲେ ବୋଉ ଓ ଗୋଟିଏ ବଡ଼ଭାଇ । ସେମାନେ ସବୁ ମାମୁଁଙ୍କ ପାଖେ ରହି ମଣିଷ ହୋଇଥିଲେ । ମାମୁ ସେତେବେଳେ ଥିଲେ କଲେକ୍ଟରିର ଜଣେ ସାମାନ୍ୟ ମୋହରିର । ବଡ଼ଭାଇ ପାଠ ପଢ଼ିସାରି ମତ୍ସ୍ୟ ବିଭାଗରେ ଚାକିରି କରୁଥିଲେ । ସରକାରୀ ବୃତ୍ତି ପାଇ ସେ ଗଲେ ଜାପାନ୍ ସାମୁଦ୍ରିକ ମାଛଚାଷ ସମ୍ପର୍କରେ ଗବେଷଣା କରିବାକୁ । ଏକବର୍ଷ ପରେ ଫେରିଆସିବା କଥା; ମାତ୍ର ସେ ଆଉ ଫେରି-ଆସିଲେ ନାହିଁ ।

ସାଗରରେ ଗୋଟିଏ କ୍ଷୁଦ୍ର ନୌକାରେ ସାମୁଦ୍ରିକ ମାଛମାନଙ୍କର ଗତିବିଧି ପର୍ଯ୍ୟବେକ୍ଷଣ କରୁ କରୁ ନୌକାଟି ବୁଡ଼ିଗଲା ସମୁଦ୍ରର ଅତଳ ଗର୍ଭରେ; ଆଉ ତା ସଙ୍ଗେ ସଙ୍ଗେ ସେମାନଙ୍କର ସବୁ ଆଶା ଭରସା ମଧ୍ୟ ।

ଏକମାତ୍ର ପୁଅର ଏଇ ଶୋଚନୀୟ ମୃତ୍ୟୁ ଖବର ଶୁଣିବା ପରେ ବୋଉ ମଧ୍ୟ ଆଉ ବେଶି ଦିନ ବଞ୍ଚିଲେ ନାହିଁ । ସମସ୍ତ ଦୁର୍ଭାଗ୍ୟ ଓ ଦୁର୍ଯୋଗକୁ ସହିପାରିବା ଯୋଗୁଁ ହିଁ ସେହି କେବଳ ମାମୁଙ୍କ ଆଶ୍ରୟରେ ବଞ୍ଚି ରହି ବି. ଏ. ପାସ୍ କଲା । ବିବାହ ଦେବା ଲାଗି ମାମୁ ବହୁ ଚେଷ୍ଟା କରିଥିଲେ; ମାତ୍ର ତାହା କ'ଣ ଏତେ ସହଜ ?

ବି. ଏ. ପାସ୍ କରି ସାରି ସୁମିତ୍ରା ଚାକିରି କଲା । ଆଉ କଣ ବା କରିଥାନ୍ତା ? ଚାଲି ମଧ୍ୟ ଯାଉଥିଲା ବେଶ୍ । ମୂଳରୁ ତ ବରଂ ବେଶ୍ ଭଲ ଲାଗୁଥିଲା । ସନ୍ତୋଷ ମଧ୍ୟ ଆସୁଥିଲା । ସ୍ୱାଧୀନ, ସ୍ୱତନ୍ତ୍ର ଆଉ ଆତ୍ମନିର୍ଭରଶୀଳ ଜୀବନ ।

କେତେ ତ ଏମିତି ରହିଛନ୍ତି । ଆଶାଲତା ଷଡ଼ଙ୍ଗୀ ଏବେ କଣ ? ଏଇ ଚାକିରି କରି ତ ଆସି ବୁଢ଼ୀ ହେଲେଣି । ନୀଳିମା ସାହୁ ତ ପେନ୍‌ସନ ନେଲେଣି—ଚିର କୁମାରୀ । ଏବେ କେଉଁଠି ଗୋଟେ ସାନପିଲା ଆଣି ପାଳୁଛନ୍ତି ଅନାଥାଶ୍ରମରୁ । ବହୁତ ଏମିତି ଅଛନ୍ତି । ସମସ୍ତେ କଣ ବାହା ହେବେ ନା କଣ ? ବାହା ହେବାର ଦରକାର ବା କଣ ? ନିଜ ଗୋଡ଼ରେ ବଳ ଅଛି । ତାରି ଉପରେ ନିର୍ଭର କରି ଚାଲିହେବ । ତା' ଛଡ଼ା କାହାକୁ ବାହା ହେବେ ?

ସରକାରୀ ଚାକିରିରେ ପ୍ରୋଭିଡେଣ୍ଟ ଫଣ୍ଡ୍ ଆଉ ପେନ୍‌ସନ୍ ଅଛି । ଜୀବନ ଚାଲୁଥିଲା ଭଲ ।

କିନ୍ତୁ କଅଣହେଲା ?

ଏଇ ଶରତ୍ ଭାଇ ! !

ଦିନେ ଆସି ପହଞ୍ଚିଲେ ଝଡ଼ ପରି ସୁମିତ୍ରା ବସାରେ ।

ଚିହ୍ନି ପାରୁଛୁ ସୁମୀ ?

ମନ୍ତ୍ର—କାଚ ଆଖି ଲଗାଇଛ ନା କଅଣ ? ତୁମେ କୁଆଡ଼େ ଶରତ୍ ଭାଇ !! ମୁଁ

କମିତ ତୁମର ମନେପଡ଼ିଲ ?···ମନେ ରଖିଛ ତା' ହେଲେ !! ଆସ ଆସ । ଗୋଡ଼ ଧୁଅ । ବ୍ୟାଗ୍ ରଖ । କେଉଁଠି ଅଛ ଆଜକାଲ । କଅଣ କରୁଛ ?

କୋଉଠି ନାହିଁ ସୁମୀ···ତୋର ପାଖରେ ରହିବାକୁ ଆସିଛୁ ଟିକିଏ ଜାଗା ଦେଇ ପାରିବୁ କିଛୁ ଦିନ—ମାନେ······

ସୁମିତ୍ରା ଚମକି ପଡ଼ିଥିଲା । ଶରତ୍ ଭାଇ । କନ୍ଦରପୁର ମାଉସୀଙ୍କର ବଡ଼ ଯାଆର ପୁଅ । ପିଲାଦିନେ ମାଉସୀଘରକୁ ଯାଇଛୁ କେତେଥର । କେତେ ଦୁଷ୍ଟ ଥିଲେ ସେତେବେଳେ ଏଇ ଶରତ ଭାଇ । ବୟସରେ ଗୁରି ଛଅମାସ ସେ ବଡ଼ ହେବେ । ବୋତାମଛିଣ୍ଡା କନା ହାଫ୍ ପ୍ୟାଣ୍ଟଟିଏ ନାହିତଳକୁ ପିନ୍ଧି ଗୁରିଆଡ଼େ ଡେଇଁ ବୁଲୁଥିବେ । ଦେଖିବାକୁ ସରୁଆ ଆଉ ଡେଙ୍ଗା ଥିଲେ ସେତେବେଳେ; କିନ୍ତୁ ଖୁବ୍ ଟାଣୁଆ ଥିଲେ । ଗଛଚଢ଼ାରେ ମାଙ୍କଡ଼ ବି ତାଙ୍କୁ ପାରିବ ନାହିଁ । ପାଣିକୁଆ ଭଳି ଦିନଯାକ ନଈପାଣିରେ ବୁଡ଼ୁଥିବେ ମାଛ ଧରିବାକୁ । ଭାରି ଦୁଷ୍ଟ । ଭାରି ଟାଣୁଆ । ହାତଟାକୁ ମୋଡ଼ି ବଙ୍କେଇ ଦେବେ । ନିଜ ପାପୁଲି ଭିତରେ ଗୋଟିଆ ଗୋଡ଼ ଲୁଚେଇ ରଖି ତାର ପାପୁଲିଟିକୁ ଚିପି ଧରି ରଗଡ଼ିଦେବେ । ହେଲେ ଭଲ ମଧ୍ୟ ପାଉଥିଲେ ଖୁବ୍ । ଗଛରେ ଚଢ଼ି ଆମ୍ବ ପାରିଦିଅନ୍ତି···ବୁଦାରୁ ବେତକୋଳି···ଭଇଁଚ କୋଳି ତଡ଼େଇ ଦିଅନ୍ତି । ଭାରି ଚଢ଼ାନ୍ତି···ଚୁଗୁଲିନ୍ତି । ହେଲେ କାନ୍ଦିବାର ଦେଖିଲେ କେତେ ଲାଞ୍ଚ ଦେଇ ବୋଧ କରନ୍ତି । ଦ୍ୱିପ୍ରହରେ ଘରୁ ଲୁଚେଇ ଆଣି ଚେଲୁଲି, ଆମ୍ବ ଆଚାର··· କେତେ କଥା !

କେଡ଼େ ସୁନ୍ଦର ଦିନ ସେ ସବୁ । ଗଛରେ ଦୋଳି ବାନ୍ଧି···ରଜ ଦୋଳି । ବୋହୂ-ବୋହୂକା ଖେଳ ।

ତାପରେ···କିଏ କୁଆଡ଼େ ଗଲେ । ବୋଉ ମଲାଦିନୁ ମାଉସୀ ଘର ଯାତାୟାତ । କଲେଜରେ ପଢ଼ୁଥିଲାବେଳେ ଶରତ୍‌ଭାଇ ସଙ୍ଗେ ମାମୁଘରେ ଥରେ ଦୁଇଥର ଦେଖା-ହୋଇଛୁ । ଶେଷଥର ଦେଖା ହୋଇଥିଲା କଟକ ଷ୍ଟେସନରେ, ତା ପୁଣି ଖୁବ୍ କମ୍ ସମୟ ଲାଗି ।

ଟ୍ରେନ୍ ଛାଡ଼ିବାକୁ ଅଳ୍ପ ସମୟ ଅଛି । ତାଙ୍କ ସାଙ୍ଗେ ବିଜୁଳି ଭଳି ଦେଖା ହୋଇଗଲା । ସେ କୁଆଡ଼େ ଯାଉଥିଲେ ଦଳବାନ୍ଧି ଏନ୍. ସି. ସି. କ୍ୟାମ୍ପରେ । ଭାରି ଭଲ ଦିଶୁଥିଲେ ସେତେବେଳେ ସେ ଏଇ ଏନ୍. ସି. ସି. ପୋଷାକରେ । ପିଲାଦିନର ସେ ଧେଡ଼େଙ୍ଗା ନାହିଖସା ପ୍ୟାଣ୍ଟପିନ୍ଧା ଶରତ୍‌ଭାଇ ଆଉ ନ ଥିଲେ । ସେଇ ଏନ୍. ସି. ସି. ପୋଷାକରେ ସେ ଦିଶୁଥିଲେ ଖୁବ୍ ଗୋଟାଏ ବଡ଼ ସେନାପତି ଭଳି । ହସି ଦେଇ ପଗ୍ଚରିଦେଲେ ।

କରେ ସୁମି ! ଚିହ୍ନି ପାରୁଛୁ ? ଏଣେ କୁଆଡ଼େ ଯାଉଛୁ ?

ସୁମିତା ନମସ୍କାର ହୋଇଥିଲା ।

ଭୁବନେଶ୍ୱର ଯାଉଛୁ ଶରତ୍ ଭାଇ ? ତମେ ସବୁ କୁଆଡ଼େ ଏଇ ବୀରବେଶରେ ?

କ୍ୟାମ୍ପ ପଡ଼ିଛୁ ସୁମି ! ହଉ ଆ···ଗାଡ଼ି ଛାଡ଼ିଦେବ । ମନେ ରଖିଥିବୁ ।

ତା'ପରେ ହସିଦେଇ ସେ ପୁଣି ହଜିଗଲେ କ୍ୟାଡ଼େଟ୍‌ଙ୍କ ମେଳରେ ।

ସେ ଚାଲିଗଲା ପରେ ମନଟା କପରି ନରମ ହୋଇ ଆସିଥିଲା । ତାଙ୍କୁ ଆଉ ଟିକଏ ଦେଖିବାକୁ, ଆଉ ଦୁ'ପଦ କଥା ହେବାକୁ ମନ ଡାକୁଥିଲା···ମାତ୍ର ସେ ଚାଲିଗଲେ—ଟ୍ରେନ ଛାଡ଼ିଦେଲା । ବହୁତ ବେଳଯାଏଁ ମନଟା ଅକାରଣ ବେଦନାର୍ଦ୍ର ହୋଇ ଉଠିଥିଲା ।

ଆଜି ଠିକ୍ ଚାରିବର୍ଷ ପରେ ସେହି ଶରତ୍ ଭାଇ—ଜମାରୁ ଭାବି ନାହିଁ ତାଙ୍କ କଥା—ହଠାତ୍ ସେ ଏମିତି ଆସି ପହଞ୍ଚିଯିବେ···

···ଏ କ'ଣ ସ୍ୱପ୍ନ ନା ସତ୍ୟ ?

ମନ ପୁଲକି ଉଠିଥିଲା ।

ଚେତନା ମାତିଉଠିଥିଲା ।

ଦେହ ଉଲୁସି ଉଠିଥିଲା ।

× × × ×

ତା'ପରେ କେତେ ଅପବାଦ, କେତେ ଗଞ୍ଜଣା···କେତେ ଗୁଜବ···କେତେ ଅପମାନ ଭିତରେ ବି ସେ ଶରତ ଭାଇଙ୍କୁ ଘରେ ସ୍ଥାନ ଦେଇଥିଲା ।

ଶରତ୍ ଭାଇ ଓ. ଏ. ଏସ୍. ଲାଗି ପ୍ରସ୍ତୁତ ହେଉଥିଲେ । ସବୁ ନିନ୍ଦା, ଗଂଜଣା, ଅପମାନ ଓ ପରିହାସକୁ ଆଖି ବୁଜିଦେଇ ସୁମିତା ସ୍ୱପ୍ନ ଦେଖୁଥିଲା ।

କେତେ ମିଠା ସେ ସ୍ୱପ୍ନ !

କେତେ ନିଶା ସେ ସ୍ୱପ୍ନର !!

ଶରତ ଭାଇ ଆଜି ଆସି ଅଫିସ ଭିତରେ ତାର ମୁଦିଟା ଫେରାଇ ଦେଇଗଲା—ହସି ହସି—ସତେ କି କିଛି ହୋଇନାହିଁ ।

ତୋର ମୁଦିଟା ମୋ ପାଖେ ରହିଯାଇଥିଲା ସୁମି !···ଫେରାଇ ଦେବାକୁ ଆସିଲି । ···ନେ ନେ—କିଛି ମନେ କରିବୁ ନାହିଁ—ହଉ ଆ—ମୁଁ ଯାଉଛୁ—ଆସିଥିଲି ଗୋଟାଏ କାମରେ—କ୍ୟାପିଟେଲ—ଆଜି ସନ୍ଧ୍ୟା ଗାଡ଼ିରେ ହେଡ୍‌କ୍ୱାଟରକୁ ଫେରି ଯାଉଛୁ, କଳାହାଣ୍ଡି ।

କଳାହାଣ୍ଡିରେ ଶରତ ଭାଇ ଡେପୁଟୀ ମାଜିଷ୍ଟ୍ରେଟ । ମୁଦିଟି ହାତରେ ଧରି ଆଉ

ନାହିଁ କହି ପାରିଲା ନାହିଁ ସୁମିତ୍ରା । ତାଙ୍କ ମୁହଁକୁ ମଧ୍ୟ ଚାହିଁ ପାରିଲା ନାହିଁ । ଅଫିସ୍‌ରେ କେତେ ଲୋକ । ସମସ୍ତେ ଆଖି ପକେଇ କଣେଇ କରି ଚାହିଁ ରହିଛନ୍ତି ତାଙ୍କରି ଆଡ଼େ । ସୁମିତ୍ରା ତଳକୁ ମୁହଁ ପୋତି, ଓଠ କାମୁଡ଼ି ମୁଦିଟିକୁ ଜୋରବରେ ଆଣି ଆଙ୍ଗୁଠିରେ ପିନ୍ଧି ପକାଇଲା । ଶରତ ଭାଇ ଚାଲିଗଲେ··· କହିଗଲେ—କିଛି ମନେକରିବୁ ନାହିଁ ।

ଏତିକି ଶୁଣି ସେ ହସି ଦେଇଥିଲା ।

ସତେ ? କଣ ଆଉ ମନେ କରିବାର ଅଛି ? କଣ ମନେ କରି ସେ ତାଙ୍କ ହାତରେ ଦିନେ ଏଇ ମୁଦିଟାକୁ ପିନ୍ଧେଇ ଦେଇଥିଲା ?

କାଲିପରି ମନେ ପଡ଼ୁଛି ।

ସେଦିନ ରାତିରେ ଜାଗର ଅମାବାସ୍ୟା, ଶରତ ଭାଇଙ୍କ ··· ଯାଉଛି । (ଭାରି ପରିଶ୍ରମ କରୁଥିଲି କିନ୍ତୁ; ମାତ୍ର ଦେଖିଲାଗି ସୁମିତ୍ରା କୋଉଠି ··· କିମ୍ !!) ବୁଢ଼ୀମାନେ ଟକ୍‌ସୀରେ ବସି ଲିଙ୍ଗରାଜ ମନ୍ଦିରକୁ ଜାଗର ଦେଖିବାକୁ ଯାଇଥିଲେ । ଏହିଭଳି ବସନ୍ତରାତ୍ରି ସେଇଟା । ଅନେକ ଆଉ କୃଷ୍ଣଚୂଡ଼ା ଗଛମାନେ ନାଲି ଫୁଲରେ ଲଦି ହୋଇ ଆଧେ ଉଚାଟ ହେଉଥିଲେ, ଆଉ ସମସ୍ତଙ୍କୁ ବି ଉଚାଟ କରୁଥିଲେ । ସନ୍ଧ୍ୟା ପୂର୍ବରୁ ସେମାନେ ବାହାରି ଥିଲେ ।

ଲିଙ୍ଗରାଜଙ୍କ ମନ୍ଦିର ବେଢ଼ାରେ ଶହ ଶହ ସ୍ତ୍ରୀ ପୁରୁଷ । ସହସ୍ର ଦୀପାଳୀର ନର୍ତ୍ତିତ ଆଲୋକ ଉତ୍ସବରେ ବେଢ଼ା ଝଲମଲ ଦିଶୁଥିଲା । ଆଜି ପରି ସେତେବେଳେ ମଧ୍ୟ ମଳୟ ବହୁଥିଲା ଆଉ ସେଥିରେ ଭରି ରହିଥିଲା ମନ ମୁଗ୍ଧ ଅଶ୍ୱାସ ବିଶ୍ୱାସ—ସ୍ୱପ୍ନ । ଆଉ ଯେ କୌଣସି ଗୁରୁତର ଶପଥ ନେଇଯିବା ଲାଗି ମଦମତ୍ତ ଆବେଗ ଓ ଉଚ୍ଛ୍ୱାସ ପ୍ରବଣତା ।

ମନ୍ଦିରର ପଣ୍ଡା ବୁଝି ପାରିଥିଲେ ସେମାନେ ସ୍ୱାମୀ ସ୍ତ୍ରୀ ।

ସେହିଭଳି ସମ୍ବୋଧନ ବି କରିଥିଲେ । ସେଇଆ ଭାବି ବୁଢ଼ୀଙ୍କ ନାମରେ ମଙ୍ଗଳ ଲାଗି ଠାକୁରଙ୍କ ଉପରେ ପାଣି ଢାଳିଥିଲେ, ଫୁଲ ଚଢ଼ାଇଥିଲେ, ଦୀପ ଜାଳିଥିଲେ ।

ଶରତ ଭାଇ ପ୍ରତିବାଦ କରି ନ ଥିଲେ । ସେ ବା କିପରି ପ୍ରତିବାଦ କରିଥାନ୍ତେ ? ସେଠାରୁ ଫେରି ଠାକୁରାଣୀଙ୍କ ମନ୍ଦିର ଭିତରେ ମୁଷ୍ଟାଏ ସିନ୍ଦୂର, ଚନ୍ଦନ ଆଉ ଫୁଲ ଆଣି ଦେଇଥିଲେ ଶରତ ଭାଇଙ୍କ ହାତରେ ।

ଶରତ ଭାଇ ଧରିଥିଲେ ।

ମନ୍ଦିର ଭିତରେ ଅନ୍ଧକାର ଓ ସ୍ୱଳ୍ପ ଦୀପାଲୋକର ପରିବେଶ ରହସ୍ୟ । ସେଠି ଖାଲି ··· ବିଶ୍ୱାସକୁ ଅନ୍ୟ ରୂପରେ ଲଦି ଦେଇ ନିଜକୁ ଅନ୍ୟ ହାତେ ସହଜ ଓ ସରଳ ଭାବରେ ସମର୍ପଣ କରିଦେବାର ଏକ ବ୍ୟାକୁଳ ଭାବାବେଗର ଅନୁଭୂତି

ପ୍ରବେଦନା । ଦେଉଳ ଭିତରର ସେହି ସୁପ୍ତାନ୍ଧକାର ମଧ୍ୟରେ ବାହ୍ୟ ଜଗତର ସ୍ପଷ୍ଟ ଆଲୋକିତ ସୂର୍ଯ୍ୟ, ଚନ୍ଦ୍ର ଓ ଗଣସ୍ତୂର ସ୍ଥାନ ନ ଥିଲା । କେବଳ ସରଳ ଓ ସହଜ ଆଦିମ ବିଶ୍ୱାସରେ ମନ ଭରି ଉଠିଥିଲା, ସେହି ବିଶ୍ୱାସର ସହଜ ମନରେ ମନେହୋଇଥିଲା ଶରତ ଭାଇ ତା'ର ଜନ୍ମ-ଜନ୍ମାନ୍ତର ସାଥୀ ।

ସୁମିତ୍ରା ମଥା ନୁଆଁଇ ଶରତ ଭାଇଙ୍କ ଆଗରେ ଠିଆ ହୋଇ ଯାଇଥିଲା । ଆଉ ଶରତ ଭାଇ ତା'ର ମଥାରେ ଲଗାଇ ଦେଇଥିଲେ ଠାକୁରାଣୀଙ୍କ ସିନ୍ଦୂର...

ସେତିକିରେ ସୁମିତ୍ରା ଶରତ ଭାଇର ହାତ ଧରି ପକାଇଥିଲା ଆଉ ପ୍ରାଣର ଆବେଗରେ ଥରି ଥରି କାନ୍ଦି କାନ୍ଦି ତାଙ୍କର ଆଙ୍ଗୁଠିରେ ପିନ୍ଧାଇ ଦେଇଥିଲା ଏଇ ମୁଦିଟା...ଏଇ ମୁଦିଟା....

ଆଜି ଶରତ ଭାଇ ସେଇଟିକୁ ଫେରାଇ ଦେଇଗଲା ।

ହଉ ସେଥିରେ କିଛି ଯାଏ ଆସେନା । ଭଲହେଲା ।

ପଚିଶ ଭରି ସୁନା—ପାଞ୍ଚହଜାର ଟଙ୍କା ଯଉତୁକ—କେତେ ମୂଲ୍ୟବାନ ଉପହାର—ଅପୂର୍ବ ସୁନ୍ଦରୀ କନ୍ୟା—ଜିଲା ମାଜିଷ୍ଟ୍ରେଟ୍ ଶଶୁର ।

ଶରତ ଭାଇ ଡେପୁଟୀ ମାଜିଷ୍ଟ୍ରେଟ୍ ।

ସୁମିତ୍ରା ମାଟି ଦୀପରେ ତେଲ ଭରି ଜାଗର ଜାଳିଥିଲା ରାତିଟିଏ ।

ମାଜିଷ୍ଟ୍ରେଟର ଅଲିଅଳୀ ଦୁଲାଳୀ ସୁନା ଦୀପରେ ଘିଅ ଭରି ଜାଗର ଜାଳୁଥିବ ଏଣିକି ଜୀବନଯାକ ।

ଭଲ ହେଲା ।

ଶରତଭାଇ ସୁଖରେ ରହୁ । ମାଜିଷ୍ଟ୍ରେଟର ସୌଭାଗ୍ୟବତୀ ଅଲିଅଳୀ କନ୍ୟାର କାତ ବଜ୍ର ହେଉ । ତା'ର ସୀମନ୍ତରେ ସିନ୍ଦୂର ଜଳୁଥାଉ ଦାଉ ଦାଉ ହୋଇ ଚିରଦିନ । ପ୍ରଭୁ ସେମାନଙ୍କୁ ସୁଖରେ ରଖନ୍ତୁ ।

କିନ୍ତୁ ଏଇ ମୁଦିଟା ! ! !

କଅଣ ଖରାପ କରୁଥିଲା ଏଇ ମୁଦିଟା ସେମାନଙ୍କର ? ଶରତ ଭାଇର ଦଶଟା ଆଙ୍ଗୁଠିରୁ ଗୋଟାଏ ଆଙ୍ଗୁଠିରେ କୁଆଡ଼େ ଲୁଚି ଯାଇଥାନ୍ତା ଏ ମୁଦିଟା । ଏ ମୁଦିଟା ବି ଏତେ ସରୁଆ ଯେ ତାଙ୍କର ମୋଟା ଆଙ୍ଗୁଠିରେ କୁଆଡ଼େ ମିଶିଗଲା ଭଳି ଦିଶେ । ତାଙ୍କୁ ମଧ୍ୟ ମାନୁ ନ ଥିଲା ସେ ମୁଦିଟା । ହେଲେ ମଧ୍ୟ ଏ ମୁଦିଟାକୁ ସେ ପିନ୍ଧିଥିଲେ । ଆଉ ସେ କେବଳ ପିନ୍ଧିଥିଲେ ବୋଲି ସୁମିତ୍ରାକୁ ଭଲ ଲାଗିଥିଲା ।

କିନ୍ତୁ ଏମିତି କ'ଣ ଅଡୁଆ କଲା ଏ ମୁଦିଟା ସେମାନଙ୍କର ?

ମଧୁ ସାଗରର ନିତ୍ୟ ମନ୍ଥନରେ ସେମାନଙ୍କର ସ୍ୱର୍ଗ ଜୀବନ କେତେ ଅମୃତର

ରସମାଧୁର୍ଯ୍ୟରେ ଫେନାୟିତ ହୋଇ ଉଠିବ ! ଆଉ ସେମାନଙ୍କର ସ୍ୱର୍ଗ ଜୀବନର ବିଚିତ୍ର ସୁନ୍ଦର ରଙ୍ଗମଞ୍ଚ ଉପରେ ଫୁଟି ଉଠିବ ନାଚ କେତେ ଐଶ୍ୱର୍ଯ୍ୟର ଛଳଛଳ ଚପଳ ଲୀଳା ।

ତା' ଭିତରେ ବସ୍ଥିବ ଏଇ ମୁଦିଟା ! କେତେ କ୍ଷୁଦ୍ର !!

କିନ୍ତୁ ଏତେ କ'ଣ ତୀକ୍ଷ୍ଣ ?

ସେ ଫେରାଇ ଦେଇ ନ ଆସିବାଯାଏ ବାଟ ଦିଶିଲା ନାହିଁ ? ?

ଶରତ ଭାଇର ସ୍ତ୍ରୀ ! ( ଆହା ଈଶ୍ୱର ତାଙ୍କୁ ସୁଖୀ କରନ୍ତୁ ) ଏତିକି ଟିକିଏ ଟିକିଏ ସୁନାମୁଦିର ଓଜନ ବି ସହିପାରିଲା ନାହିଁ !! ପଚିଶ ଭରି ସୁନାର ଔଜ୍ଜ୍ୱଲ୍ୟ ତେଜ, ଯାହା ଆଜି ଗରିମା କ'ଣ ମ୍ଳାନ କରିଦେଇପାରିଲା ନାହିଁ—ଏଇ କ୍ଷୁଦ୍ର ମସାର ଗୋଟିଏ ନକଲି ସୁନାମୁଦିର ଅଳଙ୍କୃତ ଉଜ୍ଜ୍ୱଳତାକୁ ?

ସେ ଫେରାଇ ଦେଇ ନ ଯିବା ଯାଏ ଫେର୍ ବାଟ ଦିଶିଲା ନାହିଁ !!

ଶରତ ଭାଇଟା ବି କମିତ ମାଇଚିଆ !! ଏତେ ଟିକିଏ ବି ବୁଦ୍ଧି ଥାନ୍ତା ଭଲ ମଗଜରେ !!!

ଛେନା ଡେପୁଟୀ ମାଜିଷ୍ଟ୍ରେଟ !

ମୁଦିଟାକୁ ନଈରେ ଫିଙ୍ଗି ଦେଇଥିଲେ ଚଳି ନ ଥାନ୍ତା ?

ନା ଭୟ ହେଲା—ମାଛ ଗିଳିବ—ସେ ମାଛକୁ ଧରିବ ଫେର ଗୋଟେ କେଉଟ—ସେଇଠୁ, ଫେର୍—ଜାକିଦେଲା ନାହିଁ ?

ମୂଷା ଗାତରେ ପକାଇ ଦେଲେ ନାହିଁ ? ?

ମୁଦିଟା ଆଣି ଫେରାଇ ଦେଇଗଲେ ।

ଏଇଟା ଭାରି ସହଜ କଥା ନୁହେଁ ? ?

ମୁଦିଟାଏ ବୋଲି ସିନା ! !

ଆଉ କ'ଣ ମୋର ସେ କିଛି ରଖି ନାହାନ୍ତି ?

ଫେରାଇ ଦେଇଗଲେ ନାହିଁ ?

ଫେରାଇ ଦେଇପାରିବେ କି ?

ଓ ! ! ! ସେତକ ଫେରାଇଦେବା ଦରକାର ନାହିଁ ପରା—

ସେତକ ମାଜିଷ୍ଟ୍ରେଟର ଅଲଅଲୀ ଝିଅ ଆଖିରେ ପଡ଼ିନାହିଁ ପରା ! ! !

ଶରତ ଭାଇଙ୍କ ସ୍ତ୍ରୀଟା ବି ଭାରି ବୋକୀ ! ! (ଆହା ! ବସ୍ତ୍ରର ସିନ୍ଥିରେ ଚନ୍ଦ୍ର, ସୀମନ୍ତରେ ସିନ୍ଦୂର ଉଜଳୁଥାଉ ଚିରଦିନ) ।

ବୋକୀ ନୁହେଁ ?

ଭାବୁଛି—ମୁଦିଟାଇ ତା'ର ସହଚରୁଣୀ ! ! ଆଜିଯାଏ ସେ କେବଳ ତା'ର ଆଜ୍ଞାଧୀନ—

ପ୍ରେମାଧୀନ ଦେବତାଟିର ଏଇ ମୁହଟି ଦେଖିଛୁ ।

ଆଉ କଣ ଦେଖି ନାହିଁ ?

ନା ଦେଖି ମଧ ଆଖି ବୁଜି ଦେଇଛୁ ?

ତା' ହେଲେ ବ କେଡ଼େ ବୋକା ! !

ସୁମିତ୍ରାକୁ ଅକାଳ ହସ ମାଡ଼ିଲା ।

ବାହାହେଲା ପରେ ସବୁ ପୁରୁଷ ବୋଧେ ଏମିତ ମାଇଚିଆ ହୋଇଯାନ୍ତି । ଆଉ ସବୁ ଟୋକାଗୁଡ଼ାକ ବ ଏମିତ ପାଲଟିଯାନ୍ତି ବୋକା !

କିନ୍ତୁ କଅଣ ମିଳବ ବା ତାକୁ ଏତେ କଥାରୁ ? ସେ ମୁହଟା ଦେଇଥିଲ, ଆଉ ସେଇ ମୁହଟାକୁ ଫେରିମାଇଛୁ ।

ବରଂ ଭଲ ହେଲା । ଏହାଦ୍ୱାରା ବରଂ ସେ ନିଶ୍ଚିନ୍ତ ହେଲା; କିନ୍ତୁ ଏମିତ ମାନେ ମାନେ (ସମ୍ମାନର ସହିତ) ଫେରି ନ ଆସି ସେ ଯଦି ତେଣେ ଶରତ ଭାଇର ସମ୍ପୂର୍ଣ୍ଣ ଅଜାଣତରେ କୋଉଠି ହଜି ଯାଇଥାନ୍ତା—ଆଉ ଏଣେ ସେ ବସି ବସି ଭାବୁଥାନ୍ତା ଗାଲରେ ହାତଦେଇ—ଯେ—

"ଆହା ! ମୁହଟା ମୋର ବଗିଚା ଉପରେ ଅଛୁ ! ! କଏ ସେଠି ତା' କଥା ବୁଝୁଥିବଟି ! ! କାହାକୁ ଭଲ ସେଠି ଦେଲ ଥିବ ତା' କଥା ବୁଝିବାକୁ ? ମହୋତ୍ସବରେ ପ୍ରମତ୍ତ କୋଳାହଳ ମଧ୍ୟରେ ବଗିଚା କାହିଁ ଅଇଲା ପରି ତାଙ୍କ ଅଙ୍ଗୁଠିର କୋଉ କୋଣରେ ଲାଗି ରହିଥିବ—ଅରକ୍ଷିତ ଟିଏ ଭଳି—କାହାର ତା ଆଡ଼କୁ ନଜର ହେବ ? କାହାର କରୁଣାକୋମଳ କରସ୍ପର୍ଶରେ ସେ ପୁଲକି ଉଠୁଥିବ ? କାହାର ସ୍ନେହ ତାପିତ ହୃଦୟର ଦୀର୍ଘ ଶ୍ୱାସରେ ସେ ସତେଜ ହୋଇଉଠୁଥିବ ?'

କାହାର ନୁହେଁ—କାହାର ନୁହେଁ ।

ସେଠି ସେମାନଙ୍କର ନିତ୍ୟ ମହୋତ୍ସବ ।

ଆଉ ସେଠି ବଗିଚାର । ମୁହଟିର ନିତ୍ୟ ଅବହେଳା । ଭଲ ହୋଇଛୁ । ମୁହଟି ସେ ତାର ଫେରପାଇଛୁ । ଭଲ ହୋଇଛୁ ।

ସୁମିତ୍ରା ମୁହଟିକୁ ହାତରେ ଧରି ଆଖି ଆଗକୁ ଆଣିଲା । କେଡ଼େ ନିରୀହ, ଶାନ୍ତ, ସ୍ନେହ ଅଥଚ ଅଭିମାନୀ ହୁଆଟିଏ ଭଳି ଦିଶୁଛୁ ! ! କେଡ଼େ ଦୁର୍ବଳ ? ଅଥଚ କେଡ଼େ ତୀକ୍ଷ୍ଣ । କେଡ଼େ ଉଜ୍ଜ୍ୱଳ ! ଆଉ କେଡ଼େ ଉଦ୍ଧତ ! !

କାହିଁକି ଆଜି ସେ ସେଠାରେ ରହନ୍ତା ? କଏ ଆଉ ସେଠି ଅଛୁ ତା କଥା ବୁଝିବାକୁ ? ଏଡ଼େ ନିଠୁର ଅସହଣୀ ଅବହେଳା ଭିତରେ ସେ ରହନ୍ତା କୁଆଡ଼ୁ ? ଏଠି ପଛେ ସେ ନ ଖାଇ ମରିବ । ଶୁଖି ଶୁଖି ମରିବ । ସେଠି ସେ ରହିପାରିବ

ନାହିଁ—ରହି ପାରିଲା ନାହିଁ—ବିଚରା ପଳେଇଆସିଛି ।

ସତେ କି ମଣି ମାମୁ ଟେକି ନେଇଯାଇଥିଲେ ବାପଛେଉଣ୍ଡ ଦରିଦ୍ର ଶିଶୁ ଭଣଜାଟିକୁ ତା'ର ଦୁଃଖିନୀ ମାଆର କୋଳ ଭିତରୁ; କିନ୍ତୁ ସେଠାରେ ମାଇଁର ଅତ୍ୟାଚାର ସହି ନ ପାରି ପଳେଇ ଆସିଛି ଏବଂ ଶୀର୍ଣ୍ଣ ଦୁର୍ବଳ, କ୍ଳାନ୍ତ ଅଥଚ ଅଭିମାନୀ ଛୁଆଟି ତା'ର ଦରିଦ୍ର ମାଆ କୋଳକୁ । ଏଠି ସେ ଶୁଖି ଶୁଖି ମରିବ—, କିନ୍ତୁ ସେଠି ସେ ଦୁଧ ଘିଅ ମହୁର ପ୍ରାଚୁର୍ଯ୍ୟ ଭିତରେ ଅବହେଳା ସହିପାରିବ ନାହିଁ । ପଳେଇ ଆସିଛି—ପଳେଇ ଆସିଛି—ମୁଦି ତ ନାହିଁ ତାର ରକ୍ତମାଂସର ଆଶା ଆକାଂକ୍ଷାର ଆଉ ପ୍ରାଣପୂର୍ତ୍ତିର ଉଜ୍ଜ୍ୱଳ ସଙ୍କେତ—ସେ ତାଆର ସନ୍ତାନ—ସେ ଅବହେଳା ସହି ନ ପାରି ପୁଣି ବାହୁଡ଼ି ଆସିଛି ।

ସୁସ୍ମିତା ଦୁଇ ପାପୁଲିରେ ମୁଦିଟିକୁ ଜାପ୍‌ଟି ଧରି ମୁହଁରେ ଲଗାଇଲା—ତାର ସମସ୍ତ ଅନ୍ତର ଏକ ଗଭୀର ବେଦନାରେ ଥରିଉଠିଲା । ମୁଦିଟିକୁ ବ୍ୟାକୁଳଭାବରେ ମୁହଁରେ ଲଗାଇ ସେ ଆର୍ଦ୍ର କଣ୍ଠରେ ବାହୁନି ଉଠିଲା—

ଆରେ ମୋ ଦୁଃଖୀ ଧନରେ !

ଆରେ ମୋ ଦୁଃଖ ସଂଖାଳୀରେ !

ଆରେ ମୋ ରଙ୍କ ରତନରେ !

ଆରେ ମୋ·········

ତାର ଆଖିର ଲୁହରେ ମୁଦିଟା ଓଦା ହୋଇଯାଇଥିଲା ।

ହଠାତ୍ କାହାର ଡାକରେ ସୁସ୍ମିତା ଚମକିପଡ଼ି ପ୍ରକୃତିସ୍ଥ ହୋଇଉଠିଲା ।

ସୁସ୍ମି ଅପା ? ?

କିଏ ? ରାଧାରାଣି ? ହର୍ଷମଣି ?

ତୁମେମାନେ କ'ଣ—କୁଆଡ଼େ—ମାନେ କଅଣ ହେଲା ?

ତୁମେ ଏଠି ଆସି ବସିଛ ସୁସ୍ମି ଅପା ? ଆମେ ତେଣେ ଖୋଜି ଖୋଜି ଥକିଲୁଣି । ରାତି ଆସି ଆଠଟା ହେଲାଣି ।

ଭାରତୀ କଥା ଶୁଣିଲଣି ସୁସ୍ମି ଅପା ? ଆରେ—ତୁମ ଆଖିରେ ଲୁହ କ'ଣ ! କାନ୍ଦୁଥିଲ ନା କଅଣ ? କଅଣ ହେଲା ତୁମର ସୁସ୍ମି ଅପା ?

ସୁସ୍ମିତା ଏ ସବୁ ନ ଶୁଣି ପଚାରିଲା—

ଭାରତୀ କଥା କଅଣ ହେଲା କହୁଥିଲ ? କଣ ହେଲା ଭାରତୀର ? ଆଗ କହନା ଭାରତୀର କଅଣ ହେଲା ?

ଭାରତୀ ନାହିଁ ଯେ—

କୁଆଡ଼େ ଗଲ ?

ମଲ ତୁମେ ଜାଣିନ ? ଆଜି ପ୍ରଫୁଲ୍ଲ ରାଏ ଆସି ତାଙ୍କୁ ମେସରୁ ନେଇଗଲ କାର୍‌ରେ । ଆଜି ସେମାନେ କଟକ ଯାଇଥିବେ ।

ହବ ଆଉ କ'ଣ ସୁମି ଅପା ? ତୁମେ ଏମିତ ଚମକିଲ ଭଳି ହେଉଛ କାହିଁକି ? ଏ କଥା ତ ଆମେ ଆଗରୁ ଜାଣିଥିଲୁ । ଆଜି ସେମାନେ କଟକ ଗଲେ । କାଲି ତାଙ୍କର କୋର୍ଟରେ ବାହାଘର ହେବ ଯେ ।

ବାହାଘର ?

ହଁ ହ ବାହାଘର । ଦୁଆଅ ଘର ନୁହେଁ ସୁମି ଅପା—ବାହାଘର । ଭାରତୀ ଶେଷକୁ ପ୍ରଫୁଲ୍ଲ ରାଏକୁ—ଭଲହେଲ ଭାରତୀ ଗୋଟେ କୂଳରେ ଲଗିଗଲ । ହେଲେ ଆମେ ଏଠି ମଲୁ ।

ସୁମିତାର ଓଠ ଥରି ଉଠିଲ । ତା'ର ଆଖିର ଡୋଳା ଦୁଇଟା ଜଳଉଠି ପଦାକୁ ବାହାରି ଆସିଲ । ସେ ଖୁବ୍ ବେଖାତିର ଭାବରେ ଆଦେଶ ଦେବା ଭଙ୍ଗିରେ ପଚାରିଲ—

କାହିଁକି ? ତୁମେ ସବୁ ଏଠି ମରିବ କାହିଁକି ?. ଆଉ ସେ କଥା ପଚାରୁଛ ? ଭାରି ହସାଉଥିଲ ଭାରତୀ । ଆଜିଠାରୁ ମେସରେ ଆମର ହସ ଲଭିଗଲ ସୁମି ଅପା ! !

ସୁମିତାର ସମଗ୍ର ଦେହଟା ଥରି ଉଠିଲ । ତାର ମୁହଁଟା ବୁଲାଇଦେଲ । ତାକୁ ଲଗିଲ—ଯେମିତ ଚାରିଆଡ଼ୁ ହସର ତୋଫାନ ମାଡ଼ିଆସୁଛି ।

ହାଃ ହାଃ ହାଃ,

ହିଃ ହିଃ ହିଃ,

ହୋ ହୋ ହୋ—

ତାର ମୁଣ୍ଡ ବିଗିଡ଼ି ଗଲ । ଥିଏଟର ପେଣ୍ଡାଲ ଉପରେ ଏକ ଉନ୍ମାଦିନୀ ନାୟିକାର ଆବେଗତପ୍ତ ପ୍ରଗଲ୍‌ଭ ବଚନିକା ଭଳି ସେ ହାତ ହଲଇ ବକ୍ତୃତା ଆରମ୍ଭ କରିଦେଲ ।

ଆରେ ଯାଃ—ଏଇଥିଲାଗି ତୁମେ ସବୁ ମରିଯିବ ବୋଲି ଭାବୁଛ ? ଆଲେ—ଭାରତୀ ଚାଲିଗଲ ବୋଲି ତା' ପଛେ ପଛେ ଏ ମେସ୍‌ରୁ ହସ ଗୋଡ଼ାଇ ଯିବ ନାହିଁ । ଯାଉ ସେ କୋଉ ଗାଡ଼ ଚୁଲିକି ଯାଉଛି ଯାଉ । ତେମେ ସବୁ ଚାଲ—ଚାଲ ଫେରି ଚାଲ ମେସ୍‌କୁ । ଦେଖିବ ମୁଁ କମିତ ଆଜିଠାରୁ ତୁମକୁ ସବୁ ହସାଉଛି । ଚାଲ—ଚାଲ ବେଇଗି ଚାଲ । ହସ ଲାଗି ମରିଯିବ କାହିଁକି ଲେ ? ଚାଲ—ଚାଲ—ମେସକୁ ଚାଲ ଆଜି ରାତରେ ଇ ମୁଁ ତୁମ୍ଭମାନଙ୍କୁ ଖୁବ୍ ଗୋଟାଏ ମଜାଦାର ହସକଥା କହିବ । ହସି ହସି ଗଡ଼ିଯିବ ତୁମେମାନେ, ହସି ହସି ଲେଟିଯିବ ଲେ—ହସି ହସି କାନ୍ଦ ଉଠିବ ।

ଖାସ୍ ମଜାର କଥା ଲୋ ଖାସ୍ ମଜାର କଥା·····

ହ ହ ହ ହ,

ହ ହ ହ ହ ।

ସୁମିତ୍ରା ଉନ୍ମାଦିନୀ ଭଳି ହସି ଉଠିଲା ଉଚ୍ଚ କଣ୍ଠରେ ।

ହର୍ଷମଣି, ବାସନ୍ତୀ ଆଉ ରାଧାମଣି ସୁମିତ୍ରାର ଏ ହସ ଦେଖି ସନ୍ତ୍ରସ୍ତ ହୋଇ ଉଠିଲେ ।

ସେମାନେ ପାଟି କରି ଉଠିଲେ ।

ସୁମିତ୍ରିଅପା—ସୁମିତ୍ରିଅପା—ଆରେ ଏମିତି କଅଣ ହେଉଛ ସୁମିତ୍ରିଅପା ? ସୁମିତ୍ରା ତଥାପି ହସି ଲାଗିଛି ଲହରୀକୁ ଲହରୀ ହସ—

ହ ହ ହ

ହ ହ ହ ।

ସୁମିତ୍ରିଅପା—ଓହୋ—ସୁମିଁ ଅଁ ପାଁ—ଏଁ—କଅଣ ହେଲା ତୁମର ?

ଇଲୋ ମାଆଲୋ··ଆଲୋ ଏ କଅଣ ହେଲା ?

ଏଁ ଏ ଏଁ ଏଁ ଏଁ ସୁମିତ୍ରିଅପା···

ସେମାନେ ସମସ୍ତେ କୁଣ୍ଢାଇଆ କୁଣ୍ଢି ହୋଇ କାନ୍ଦି ଉଠିଲେ···

ସୁମିତ୍ରା ତଥାପି ହସୁଛି ।

ହ ହ ହ,

ହ ହ ହ,

ହ ହ ହ ।

# ଭୋଜି

## ବସନ୍ତକୁମାରୀ ପଟ୍ଟନାୟକ

ନାନୀ କହୁଛି କାଲି ମା' ପ୍ରାତଃବେଳେ ଭୋଜି—ସେ ନାନୀ ସାଙ୍ଗରେ ଇସ୍କୁଲକୁ ଯିବ ।

ରାତିସାରା ବବିର ଆଖିରେ ନିଦ ନାହିଁ ; ଥରକୁ ଥର ମା'ଙ୍କୁ ନିଦରୁ ଉଠେଇ ପଚାରୁଛି ସକାଳ ହେଲାଣି କି ନାହିଁ । ନାନୀ କହୁଛି ଆଜି ତାକୁ ଇସ୍କୁଲକୁ ନେଇଯିବ । ଟେଚର ପିଲାଙ୍କ ସାଥିରେ ଚିହ୍ନା କରେଇ ଦେବ । ବିଛଣାରେ ପଡ଼ି ପଡ଼ି ବବି ଭାବୁଛି ସେଇ କଥା । ହଠାତ୍ ଧଡ଼୍ ପଡ଼୍ ହୋଇ ଉଠି ବସି ମା'ଙ୍କୁ ହଲାଇ ଦେଲା "ମା' ମା', ଉଠ୍... ସକାଳ ହେଲାଣି, କାଉ ରାବିଲାଣି ପରା ।"

ନିଦ ମଳମଳ ଆଖିରେ ଝିଡ଼କି ଆଡ଼େ ଚାହିଁ ମା' ଜବାବ ଦେଲେ, "ଓଃ, ଏ ଟୁଆଟା ମଣିଷକୁ ଟିକେ ଶୋଇଦବ ନାହିଁ...ଏତେ ଅନ୍ଧାର ଅଛି, ସକାଳ କୋଉଠି ହେଲା... ହଇରେ ?"

—ହଁ ଗୋଟାଏ କାଉ ବୋବେଇଲା—ମୁଁ ସଫା ଶୁଣିଛି । ମା' ଅଳସ ଭାଙ୍ଗି ଭାଙ୍ଗି ଝିଅ ରମାକୁ ଡାକିଲେ "ନାନୀ, ନାନୀ, ସକାଳ ହେଲାଣି...ଉଠିବୁ ନାହିଁ କିଲୋ ? ଏ ନାନୀ—"

କବାଟ ଖୋଲି ଉଭୟେ ଯାକ ପଦାକୁ ଆସିଲେ । ମା'ଙ୍କୁ ବବିର ବାରବାର ତାଗିଦା ଆଗେ ତା କାମ ସାର, ତା ପରେ ଯାଇଁ ମୋର କଥା ହେବ ।

ପୋଖରୀର ପଥର ଉପରେ ବସି, ହାତରେ ଖଣ୍ଡେ ଝାମା ଧରି, ବବି ନିଜ ଦେହକୁ ରଗଡ଼ୁଛି ଆଉ ମଝିରେ ମଝିରେ ପ୍ରଶ୍ନ କରୁଛି—ମା' ଏଥର ମୁଁ ଗୋରା ଦିଶିଲି ? ମା' ଯେତେ କହିଲେ ବି ବବିର ମନ ମାନୁନାହିଁ । ସେ ଆହୁରି ବେଶି ରଗଡ଼ି ହେଉଛି । ଶେଷରେ ବବି ଜିଦ୍ ଧରି ବସିଲା ପାଖକୁ ଆସି ଦେଖିଯିବାକୁ । ବାସନମଜା ଛାଡ଼ି ମା ଆସି ଦେଖିଲେ ଝାମା ଘଷାରେ ଦେହର ନରମ ଚମ ଆଞ୍ଚୁଡ଼ି ହୋଇ ଲାଲ ପଡ଼ିଗଲାଣି । ପୁଅ ହାତରୁ ଝାମା ଖଣ୍ଡିକ ଟାଣି ନେଇ ମା' କହିଲେ, "ହଇରେ ଝାମାରେ କିଏ ଘଷି ହୁଏ ?"

—ଅଳତା ନାଇଲାବେଳେ ଝାମା ଘଷି ତୁ [illegible] ଗୋଡ଼ର ମଳି ବାହାର କରିଦଉ ?

ଗାଧୁଆ ସେତକରେ ବନ୍ଧା । ଦେହସାରା ଧୋଇଲାଣି । ପୋଛୁପାଛୁ ହୋଇ ବନ ଫେରି ଆସିଲା । ଘରର ମାଟି କାନ୍ଥରେ ଖଣ୍ଡେ ଦର୍ପଣ ପୋତା ହୋଇଛୁ । ସେଇଠି ଆସି ଠିଆ ହେଲା ବନ—ହାତରେ ପାନିଆ । ପାନିଆର ମଝି ଦାନ୍ତଗୁଡ଼ିକ ଭଙ୍ଗା । ଦୁଇ ମୁଣ୍ଡରେ ଯାହା ଦି' ଚାରି ଗଣ୍ଡା ଦାନ୍ତଅଛୁ, ସେତିକି । ସେଇ ପାନିଆରେ ବନ ନିଜର ତେଲ ଜର ଜର ଝାଅଁ ସା ବାଳଗୁଡ଼ାକ ଚିକ୍କଣ କରି ପାରିବାକୁ ଚେଷ୍ଟାରେ ଲାଗିଗଲା । ମନରେ ଆନନ୍ଦ ସବୁ ଆଜି ତାର ସଫା, ସୁତୁରା, ଚିକ୍କଣ ।

× × × ×

ସ୍କୁଲ ଫାଟକ ପାଖେ ପହଞ୍ଚି ବନ କହିଲା, "ନାନି, ମତେ ସବୁ ଜିନିଷ ଦେଖେଇ ଦବୁଟି ? ଆଉ ସବୁ ପିଲାଙ୍କ ସାଙ୍ଗରେ ଚିହ୍ନା କରେଇଦବୁ···ଏଁ ?"

"ହଉ ! ହେଇ ଦେଖ । ଏଠି କେମିତି ଦୂବଘାସ ହେଇଛୁ, ଆଉ ଏଠି ମୁଥା ଘାସ ।"

"ଆରେ ହଁ ତ" କହି ଜୀବନରେ କେବେ ଘାସ ନ ଦେଖିଲା ପରି ବନ ନଇଁପଡ଼ି ନିଜ ହାତରେ ଥରେ ଘାସଗୁଡ଼ାକ ପରଖି ନେଲା । ତାପରେ ସେମାନେ ଆଗକୁ ଚାଲିଲେ ।

ଗୋଟିକ ପରେ ଗୋଟିଏ ଗଛ ରମା ଦେଖେଇ ଚାଲିଛି···ମନ୍ଦାର, ପଳାଶ, କୃଷ୍ଣଚୂଡ଼ା, ରଜନୀଗନ୍ଧା, ଆମ୍ବ, ବେଲ—କିଏ ଫୁଲ ଫଳରେ ଲଦି ହୋଇଛି, ଆଉ କିଏ ବା ସେମିତି ଥୁଣ୍ଟା ଛୁଡ଼ା ହୋଇଛି; କିନ୍ତୁ ବନ ଆଖିରେ ଆଜି ସବୁ ସୁନ୍ଦର । ଆଖିରେ ଇନ୍ଦ୍ରଧନୁର ରଙ୍ଗ ବୋଳି ସେ ଚାରିଆଡ଼କୁ ଚାହୁଁଛି, ପୁଣି ଆଗକୁ ମାଡ଼ି ଚାଲିଛି ।

ଗଛ ପଛ ଦେଖାସରିଛି । ବାକି ରହିଛି ସ୍କୁଲଘର ଯେଉଁଠି ପିଲାମାନେ ଆରାମରେ ବସି ପାଠ ପଢ଼ନ୍ତି । ରମା ଦେଖିଲା ତାଙ୍କ କ୍ଲାସ ଖୋଲା ହୋଇନାହିଁ । ଭଙ୍ଗା ଝିଙ୍କ-ବାଟେ ଉପରକୁ ଉଠି, ଛାଇର ହାତ ଧରି ଭିତରକୁ ଟାଣି ନେଲା । କବାଟ ଝିଙ୍କ ବନ୍ଦ, ସବୁଆଡ଼ ଅନ୍ଧାର ଦିଶୁଛି । ଚାଲିଲାବେଳେ ଦେଖ ଦେହରେ ଧକ୍କା ଲାଗିଯାଉଛି, ଆଉ ତାଆରି ସାଙ୍ଗେ ସାଙ୍ଗେ ବନ ପାଟିରୁ ନିଜର ଅଜାଣତରେ ବାହାରି ଆସୁଚି 'ବାପଲୋ' 'ମାଆଲୋ' ଚିତ୍କାର । ଶେଷକୁ ରମାର ଜାମା ଟାଣି ଧରି କହିଲା, "ନାଇଁ ଲୋ ନାନି, ଭୂତଥିବ···ଚାଲ ଫେରିଯିବା" ତୁଣ୍ଡରୁ କଥା ସରିନାହିଁ ବିଜୁଳି ବତି ଜଳି ଉଠିଲା ଆଉ ସେଇ ଆଲୁଅ ତଳେ ଦେଖାଗଲା ରମା ମୁହଁରେ ସର୍ବଜ୍ଞର ଛପିଲା ହସ । ବନ ବାଆ ହୋଇ ଚାହିଁଛି—ନାନୀ ତାର କେତେ କଥା ଜାଣିଲାଣି । ସେ କହିଲେ ବିଜୁଳିବତି ବି ଜଳୁଛି ।

ଆନନ୍ଦରେ ଗୋଡ଼ ତଳେ ଲାଗୁନାହିଁ—ଏ ଜାଗାରୁ ସେ ଯାଗାକୁ ଯାଉଛନ୍ତି, ପୁଣି ଆସୁଛନ୍ତି । ଉପରେ ନେଳିଆ ଆକାଶ ନାହିଁ କି ତଳେ ଶାଗୁଆ ଘାସର ଗାଲିଚା ନାହିଁ; ତଥାପି ସେଇ ରୁନ୍ଧାଲି ଘରେ ଦର୍ଉଠି ମଶିଆରୁଆ ବସନ୍ତ କାଳର କୀଟ-ପତଙ୍ଗ ପରି ଆନନ୍ଦରେ ନିଜକୁ ଭୁଲିଯାଇଛନ୍ତି ।

× × × ×

ପଡ଼ିଆରେ ଦଳ ଦଳ ହୋଇ ପିଲା ବୁଲୁଛନ୍ତି । ଚନ୍ଦ୍ରା ପିଲାଙ୍କୁ ଦେଖି ଭାଇର ହାତ-ଧରି ରମା ତାଙ୍କ ପାଖକୁ ଗଲା । ଦଳକ ଯାକ ବନକୁ ଚାହିଁଛନ୍ତି—ସମସ୍ତଙ୍କ ଓଠରେ ମୁରୁକି ହସ ।

—ଏ କିଏ ରମା ?

—ମୋ ଭାଇ ।

—ଠିକ୍ ଅନାର୍ଯ୍ୟଙ୍କ ଭଳି ଦିଶୁଛି । ଜଣେ ଟିପ୍ପଣୀ କାଟିଲା ।

ରମାର ମୁହଁ ଶୁଖିଗଲା । ସନ୍ଦେହ ଭରା ଆଖିରେ ଭାଇକି ଆଉ ଥରେ ଭଲ କରି ଦେଖି ନେଲା । ବନର ଚେପ୍ଟା ନାକ, ମୋଟା ଓଠ, ପୁଚୁକା ଗାଲ ଓ ପାଚିଲା ତାଳ ପରି ଦେହର ରଙ୍ଗ । କୌଣସିଟିରେ ରମା ଦୋଷ ଖୋଜି ପାଇଲା ନାହିଁ । ଭାଇର କାନ୍ଧ ଉପରେ ହାତ ରଖି କହିଲା, "ତତେ ମିଛରେ କହୁଛନ୍ତିରେ, ତୁ ଡର ନା" । ବନ ଯେ ଡରି ନାହିଁ ଏ କଥା ଦେଖେଇବାକୁ ହସିଦେଲା । ମୋଟା ଓଠ ଦି'ଫାଳ ଭିତରୁ ସରୁ ଜିଭଟିଏ ପଦାକୁ ବାହାରି ଆସି ଲହ ଲହ ହେଇ ପୁଣି ପଶିଗଲା—ଠିକ୍ ସାପ ପରି ।

—ହେ ପିଲା, ଆଉ ଟିକେ ହସିଲୁ ହସିଲୁ······

—ନାଇଁ । ବନ ମୁହଁ ଶୁଖେଇ ଛିଡ଼ାହେଲା ।

—ଆରେ ! ନହାତି ଅବାଧ ଚୁଆଟାଏ ତ ! ! ହସ୍ !

—ନାନି, ଚାଲ ଖେଳିବା ।

ବନ ନାନୀର ହାତ ଧରି ଖେଳିବାକୁ ଚାଲିଗଲା ।

ଖେଳି ଖେଳି ଦେହରୁ ଝାଳ ନିଗିଡ଼ି ପଡ଼ୁଛି । ସୂର୍ଯ୍ୟ ମୁଣ୍ଡ ଉପରୁ ତଳକୁ ଖସିଲେଣି । ତଥାପି ରଙ୍ଗା ସରୁନାହିଁ ।

× × × ×

ଧାଡ଼ି ଧାଡ଼ି ପିଲା ଚାଲିଛନ୍ତି—ଗୋଟାଏ ହାତରେ ଚଟେଇ, ଆର ହାତରେ ଖଲିପତ୍ର । ଗୋଟିଏ ଧାଡ଼ିର ଶେଷ ମୁଣ୍ଡରେ ବସିଛନ୍ତି ବନ ଆଉ ରମା । ବନର ଲୋଭିଲା ଆଖି ଦୁଇଟା ରହିଛି ପତ୍ର ଉପରେ । ମଝିରେ ମଝିରେ ନାନୀକୁ ଚିମୁଟି ଦେଉଛି ନାନୀ ଆରମ୍ଭ କଲେ ସେ ଆରମ୍ଭ କରିବ । ଖେଳିଲାବେଳେ ନାନୀ ତାକୁ ବାରି ବାରି

କରି କହୁଚ, ନାନା ଆରମ୍ଭ ନ କରିବାଯାଏ ସେ ଯେମିତ ଆରମ୍ଭ ନ କରେ ।

ସ୍କୁଲର ବଡ଼ ମୂର୍ତ୍ତି ଆମାନେ ଘୂରିଘୂରି ଦେଖୁଛନ୍ତି ସମସ୍ତଙ୍କ ଠିକ୍ ଦାଆହୋଇଚ କ ନାହିଁ । ହଠାତ୍ ଜଣକର ଆଖି ପଡ଼ିଗଲା ରମାର ଗୋଡ଼ ଉପରେ—ମଦା ମଦା କାଚୁ । ରମାକୁ ଚାହିଁ ସେ ଚିତ୍କାର କରି ଉଠିଲେ,—ତମର କାଚୁ ହେଇଚ—ଅନ୍ୟମାନଙ୍କୁ ଡେଇଁବ । ତମେ ଯାଅ ଖେଳୁଥିବ । ଏମାନେ ଖାଇସାରିଲେ ତମକୁ ଡାକି ଆଣିବା ।' ରମା ଉଠିପଡ଼ିଲା ।

ବିନ ବିକଳ ହୋଇ ଚାହିଁଛୁ ନାନା ମୁହଁକୁ ।

—ଏ ପିଲା କିଏ ?

—ମୋ ଭଉଣୀ ।

—ଆଚ୍ଛା, ତାକୁ ବି ତମେ ସାଥିରେ ନେଇଯାଅ । ତମେ ଖାଇଲାବେଳେ ସେ ଖାଇବ ।

ଭାଇ ଭଉଣୀ ଦୁହେଁ ଉଠି ଚାଲିଗଲେ ଖାଇବା ଜିନଷକୁ ଲୋଭିଲା ଆଖିରେ ଚାହିଁ ଚାହିଁ ।

—ବୁଝିଲୁ ବିନ, ସେମାନେ ଖାଇସାରନ୍ତୁ ଆମେ ଖାଇବା ।

—ନାଇ ନାନା, ମତେ ଭାରି ଭୋକ କଲଣି···ବାନ୍ତି ମାଡ଼ୁଚି । ସକାଳେ ମା ଖାଇବାକୁ ଦେଲାବେଳେ ତୁ ମନାକଲୁ ।

—ହଉ ରଇଆ, ଆଜ ଟିକିଏ ବେଳ ତ । ଦେଖିଲୁ ତ କେଡ଼େ ବଢ଼ିଆ ଜିନଷ ସବୁ ରନ୍ଧା ହେଇଚ । ସକାଳେ ତ ମା' ପଖାଳ ଖାଇବାକୁ ଦେଉଥିଲା···ତାକୁ ଖାଇଥିଲେ ତୁ କଣ ଭଲ ଜିନଷ ବେଶି ଖାଇପାରିଥାନ୍ତୁ ?

—ମତେ ବାନ୍ତି ମାଡ଼ୁଚି ।

—ହଉ ତେବେ ଚାଲ, ଦଶା ବେଲପତ୍ର ଶୁଙ୍ଘିଦେଲେ ବାନ୍ତି ଭଲ ହୋଇଯିବ ।

ବେଲପତ୍ର ଶୁଙ୍ଘିବା ବଦଳରେ, ଦୁଇମୁଠା ବେଲପତ୍ର ଚୋବାଇ ଖାଇଦେଇ ବିନ କହିଲା, "ନାନା ଭାରି ଭୋକ···"

—ହେଇ ଦେଖ, କଣ ସବୁ ରନ୍ଧା ହେଇଚ ତତେ ମୁଁ ଏଇଠି ଦେଖେଇ ଦଉଚି, କହି ରମା କାଠିକୁଟା ସାଉଁଟି ଆଣି ମାଛ ମାଂସର ଠା' ପୁମାରି କଲା । ଇଟା ଗୋଡ଼ି ମଠେଇ ଭାବରେ ଓ ଘାସ ପତ୍ର ତରକାରି ଭାବରେ ଜଣାଗଲା । ବିନର ଭୋକିଲା ଆଖିକି ଚାହିଁ ରମା ଭୂତ ଗପ ଆରମ୍ଭ କଲା, ଏଇଠି ଏଇ ପାଚେରି ଆରପଟେ ଯେଉଁ ଅନ୍ଧାରିଆ ଘରଟା ଦେଖୁଚୁ—ସେଇଠ ଭୂତ ଥିଲା ।

× × × ×

ଭୁତ ଗପରେ କେତେବେଳ ଯାଇଛି ଜଣାନାହିଁ । ବୁଢ଼ନ୍ତା ସୂର୍ଯ୍ୟର ଲାଲଟିଆ କିରଣ ବାଙ୍କହେଇ ପଡ଼ିଛି । ପିଲା ଦିହେଁ ଆଲଜା ହେଇ ବସିଛନ୍ତି ସେଇ ଘାସ ଉପରେ । ହଠାତ୍ କାହାର ପାଟିରେ ଚମକି ପଛକୁ ଚାହିଁ ଦେଖିଲେ ଚପରାଶି ଡାକୁଚି । ଖୁସି ହେଇ ରମା ଭାଇର ହାତ ଧରି ଉଠିଲା, ଚାଲ ଏଥର ଖାଇବା, ଦେଖୁନୁ ଚପରାଶି ଡାକି ଆଇଚି ? ଶୁଖିଲା ମୁହଁରେ ହସ ଫୁଟେଇ ଚପରାଶିକୁ ଚାହିଁ ରମା ପଚାରିଲା—ସେମାନେ ଖାଇସାରିଲେଣି ?

—ହଁ, ସଭିଏଁ ଖାଇସାରି ଘରକୁ ଗଲେଣି···ତମେ ଆସି ଏଇଠି ବଇଚ; ଘରକୁ ଯିବ ନାହିଁ କି ?

ନିଜର ଅଜାଣତରେ ମୂଠା ଭିତରୁ ଭାଇର ହାତ ଖସି ପଡ଼ିଲା । ରମା ଆଖିରେ ପାଣି ।

ଦୟା ଦେଖେଇ ଚପରାଶି କହିଲା, "ଚାଲ, ମୁଁ ଘରେ ଛାଡ଼ି ଦେଇଯିବ ।"

···ନା ଥାଉ । ଆମେ ଏକା ଚାଲିଯିବା ଯେ ।

× × × ×

ଭୋଜି ଜାଗା । ଅଇଁଠା ପତ୍ର ଉପରେ କାଉ କୁକୁରଙ୍କର ଯୁଦ୍ଧ । ସେଇଠି ଚାରୋଟି ଧୂଳି ଧୂସରିଆ ଛୋଟ ଛୋଟ ପାଦ ମୁହୂର୍ତ୍ତକ ପାଇଁ ଅଟକି ପୁଣି ଆଗକୁ ଚାଲିଗଲା ।

ସକାଳେ ଯେଉଁ ପାଦ ଚାରୋଟି ହାଲୁକାରେ ତଳେ ଲାଗୁ ନ ଥିଲା—ସଞ୍ଜବେଳକୁ ତାର ଯେମିତି ମାଟି ଉପରୁ ଉଠିବାକୁ ଆଉ ବଳ ନାହିଁ !!!

# ଆରଣ୍ୟକ

## ମନୋଜ ଦାସ

ମିସେସ୍ ମିଟି ଦ୍ୱାରଦେଶରେ ମୃଦୁ ଶବ୍ଦଟିଏ ଶୁଣିଲେ । ସେ ଆଖି ଖୋଲିବା ପୂର୍ବରୁ ଆହୁରି କେତେଥର ଏଭଳି ଠକ୍ ଠକ୍ ଶବ୍ଦ ହୋଇଥିବ । ସେସବୁ ଆଘାତ ବଡ଼ ମୃଦୁ । ମଝିରେ ଏକ ଏକ ମିନଟ୍‌ର ବ୍ୟବଧାନ । ଚୌକିଦାର ଅନ୍ୟଥା କରିପାରନ୍ତା ନାହିଁ । ସେ ଜାଣେ ।

ମିସେସ୍ ମିଟି ପ୍ରଶସ୍ତ କୋଠରିଟି ଭିତରଯାକ ଥରେ ଆଖି ବୁଲାଇ ଆଣିଲେ । ତାଙ୍କ ଗୋଡ଼ ପାଖରେ ପଡ଼ିଥିଲେ ରାଜାସାହେବ··ଗଦାଏ ଅଶ୍ଳୀଳ ଆବର୍ଜନା । ରାଜା-ସାହେବଙ୍କ ଫୁଲା ଓଠ ଉପରେ ଅଧ ଡଜନ ମାଛି ପିକ୍‌ନିକ୍ କରୁଥିଲେ ।

ଆଉ ଦୁରନ୍ତ ସ୍ନବ୍ ବବ୍ସି ମିଃ ବ୍ଲକୋଡ଼ ନାକ ଡାକୁଥିଲେ··ଘୁଷୁରିର ଆର୍ତ୍ତନାଦ ଭଳି ।

ଆଉ ମିଃ ମିଟି ଓ ମିସେସ୍ ବ୍ଲକୋଡ଼ ଚଟାଣ ଉପରେ ପରସ୍ପର ମୁହାଁମୁହିଁ ଶୋଇଥିଲେ; ସମ୍ଭବତଃ ପରସ୍ପର ଲଗାଲଗି ହୋଇ ଆସିବାର ପ୍ରୟାସ ଭିତରେ ଅଚେତନ ହୋଇ-ଯାଇଥିଲେ ।

ଦ୍ୱାରଦେଶରେ ଆଉ ଏକ ଆଘାତ । ମିସେସ୍ ମିଟି ଆଉ ଧାପେ ଚେତି ଉଠିଲେ । ଯେଉଁ ପର୍ବତ ପ୍ରମାଣ ଜଡ଼ତା ତାଙ୍କ ଚେତନା ଉପରେ ଚାପି ବସିଥିଲା, ସେଥିରୁ ଅଡ଼ଖଣ୍ଡାଏ ଖସିଗଲା । ଅବଶ୍ୟ କେତେବେଳେ ସେମାନେ ସଭିଏଁ ଶୋଇପଡ଼ିଥିଲେ; ସେ କଥା ଏ ଯାଏଁ ସେ ମନେପକାଇ ପାରୁ ନ ଥିଲେ । ତେବେ ଅର୍ଦ୍ଧଚେତନ ବାର୍‌ହାଟିକୁ ନିଆଁ ଭିତରକୁ ଫୋପାଡ଼ି ଦେବା, ତତ୍ପରେ ଯୁଗପତେ ନାଚ ନାଚ ସୁରା ସମଭିବ୍ୟାହାରରେ ସେଥିରୁ ଅର୍ଦ୍ଧ ସିଝା ମାଂସ ଚେନାଏ ଚେନାଏ କାଟି ଖାଇବା ପର୍ଯ୍ୟନ୍ତ ସବୁ ମନେଅଛି । କେବେ ଅଦ୍ଭୁତ ବର୍ଷ ତଳେ ମଣିଷର ସିମିଠ ଉନ୍ନତି, ବଣ୍ୟ ଅବସ୍ଥା ଥିଲା, ଗୋଟିକ ପାଇଁ ତାହାର ଭିତରକୁ ଫେରିଯିବା ଥିଲା ସେମାନଙ୍କ ଉଦ୍ଦେଶ୍ୟ । ମିଃ ବ୍ଲକୋଡ଼ ଅବଦମିତ ପ୍ରାଗୈତିହାସିକ ପ୍ରବୃତ୍ତିର ଅବାଧ ମୁକ୍ତିତତ୍ତ୍ୱ ଉପରେ ଜଣେ ପଣ୍ଡିତ । ସେଭଳି ସାମୟିକ ସ୍ୱେଚ୍ଛାକୃତ ମୁକ୍ତି କେଡ଼େ ସ୍ୱାସ୍ଥ୍ୟକର, ପାନାହାର ଆରମ୍ଭ ହେବା ପୂର୍ବରୁ ସେ ବିଷୟରେ ସେ ଗୋଟାଏ ଲମ୍ବା ବକ୍ତୃତା ଦେଇଥିଲେ । ( କିଏ ବା

ଶୃଙ୍ଖଳିତ ସେଇ ବୃଦ୍ଧ କୁବ୍ଜ ଚକ୍ଷୁ ! )

ଦ୍ଵାରଦେଶରେ ପୁନର୍ବାର ଏକ ଆଘାତ । ଏଥର ମିସେସ୍ ମିଟିଙ୍କ ସ୍ମୃତିରେ ଚହଟି-ଗଲା ସମସ୍ତ ଇତିବୃତ୍ତ ।

( ଦୁଇ )

ପୂର୍ବଦିନ ଦ୍ୱିପ୍ରହର—

ମାଇଲ ମାଇଲ ବଣବୁଦା ଓ ରୁକ୍ଷ ପଥରମାଟି ଛେଚି, ଦଳି, ଅରଣ୍ୟ ଭିତରର ଏଇ ପର୍ବତ୍ୟକୁ ବାଂଲୋ ଅଭିମୁଖେ ଜିପ୍ ଗୁଡ଼ିଥିଲା । ଆହତ ପ୍ରଜାପତିଟିଏ ଚକାତଳେ ଦୃପା ପଞ୍ଚ ଯାଆନ୍ତେ ମିସେସ୍ ମିଟି ଚତ୍କାର କଲେ, "ଇଃ, ବଡ଼ କରୁଣ ହୁଏ ଯେ !" ମାଖନ୍ ଭଳି ଚହଟ, ତରଳ କାରୁଣ୍ୟ ଯେମିତି ଧାର ଧାର ବହି ଆସିବ, ସିମିତି ତାଙ୍କ ମୁହଁର ରେଖା ସବୁର ଯାବଳୀୟ କୁଞ୍ଚନ । ସେଇ ଗଳିତ କାରୁଣ୍ୟକୁ ଚଟାପଟ୍ ଗୁଡ଼ି-ନେବାକୁ ଉଦ୍ୟତ ହେଲା ଭଳି ମିଃ ଗୃକୋଡ଼ ତାଙ୍କର ବାଘ ଜଣ ମଣ୍ଡିତ ଅତିକାୟ ମୁଣ୍ଡି ମିସେସ୍ ମିଟିଙ୍କର ଖୁବ୍ ନିକଟକୁ ଆଣି କହିଲେ, "ଛିଃ ! ଏତେ କୋମଳ ହେଲେ ଚଳିବ, Child ?" ମିସେସ୍ ଗୃକୋଡ଼ ଯିମିତି ଗୋଟାଏ ଦୁର୍ଗନ୍ଧରେ ଆକ୍ରାନ୍ତ ହୋଇଛନ୍ତି, ସିମିତି ନାସିକା କୁଞ୍ଚନ କରି କହିଲେ, "ମିଟି ସାହେବଙ୍କ ଭଳି ସ୍ୱାମୀ ତୁଳନାରେ ଟିକିଏ ମାତ୍ରାଧିକ କୋମଳ !" ମିସେସ୍ ଗୃକୋଡ଼ ଯେତେବେଳେ ପ୍ରତି ଅକ୍ଷର ଉପରେ ଜୋର୍ ଦେଇ ଆପାତ ନିସ୍ପୃହ-ଶ୍ରୁତ କଣ୍ଠରେ ଶବ୍ଦମାନ ଉଚ୍ଚାରଣ କରନ୍ତି, ସେତେବେଳେ ତାଙ୍କର ଗୋଟାଏ ଆଖି ନିଃସ୍ୱମିତ ବନ୍ଦ ହୋଇଯାଏ । ଅଦୃଶ୍ୟ ବିଷ ଚହଟିଯାଏ ବାତାବରଣରେ; ସ୍ୱୟଂ ଭୁଜଙ୍ଗ ସେଥିରେ ମ୍ରିୟମାଣ ହୋଇପଡ଼ିବ । ତେବେ ସେ ବିଷର ଅତିରକ୍ତ ସେବନରେ ପରିପୁଷ୍ଟ ମିଃ ଗୃକୋଡ଼ଙ୍କର ଭାବାନ୍ତର ଘଟିଲା ନାହିଁ ।

ଆତ୍ମଭୋଳା ଅବସ୍ଥାରୁ ଏଥର ଯେ ମିଃ ମିଟିଙ୍କ କଥାର ଗାଡ଼ ଛୁଟିବ, ତା'ର ସିଗ୍ନାଲ୍ ଡାଇନ୍ ହେଲା । ତଦର୍ଥ, ବହୁଳ ଚୁରୁଟ୍ଟିକୁ ସେ ହାତରେ ନ ଛୁଇଁ ମୁହଁର ଗୋଟାଏ କୋଣକୁ ନେଇ ଆସି ଟପ୍‌କନା ତଳକୁ କରିଦେଲେ । ସେ ହେଲେ ଊର୍ଦ୍ଧ୍ୱନେତ୍ର ଏବଂ ତାଙ୍କ ବଦନରେ ଖେଳିଗଲା ଏକଜାତୀୟ "କହିବି ? ତମେମାନେ କ'ଣ ବୁଝିପାରିବ ?" ଭାବାର୍ଥସୂଚକ ସୂକ୍ଷ୍ମ ହସ । ସେ ଯେ ସାମାନ୍ୟ କଥା କିଛି କହିବାକୁ ଯାଉନାହାନ୍ତି, ଏଥିରୁ ତା'ର ଚେତାବନୀ । କେହି ବ୍ୟକ୍ତିବିଶେଷ ଉପରେ ନିବଦ୍ଧ ନ କରି ସଭିଙ୍କ ମଝିରେ ଶୂନ୍ୟଟାରେ ନିଜର ଦୃଷ୍ଟିକୁ ଝୁଲାଇ ରଖି ସେ କହିଲେ—

ମିସେସ୍ ଗୃକୋଡ଼ ! ଏଇ ନାରୀସୁଲଭ କୋମଳତା ଚିଜଟା ମୋ ପାଇଁ ବଡ଼ ରହସ୍ୟମୟ । ମୁଁ କିଛି ବୁଝେ ନା—ବୁଝିଲେ ? ବୁଝେ ନା । ତେବେ, ସତକଥା

କହିଲେ, ଆପଣଙ୍କର ମିସେସ୍ ମିଟିଙ୍କ ପାଖରେ କିଛି ଗୋଟାଏ ଅଛି, ଯେଉଁଟାକୁ ମୁଁ ଭୟଙ୍କର ଭଲ ପାଏ । ହଁ, ସତକଥା କହିଲେ, ଯୁଦ୍ଧକ୍ଷେତ୍ରରେ ଶତ୍ରୁକୁ ଖତମ୍ କରିବାଠାରୁ ବଳି ଭଲ ପାଏ । ହୁଃ ହୁଃ ! ୟାଃ, ସତ କଥା ।"

"ଚୁପ୍‌କର, ଟିକ ହେଣ୍ଟା !" ମିସେସ୍ ମିଟି ଆପତ୍ତି ଜଣାଇ ମୁହଁ ଉପରେ ରୁମାଲ୍ ଓ ରୁମାଲ୍ ଉପରେ ମୁହଁ ବାନ୍ଧିହେବାକୁ ଲାଗିଲେ ।

ମିସେସ୍ ମିଟି ଆହୁରି କିଛି ସମୟ ପର୍ଯ୍ୟନ୍ତ ସେଇଭଳି କୋମଳମତି ବାଳିକାଟିଏ ହୋଇ ରହିଲେ—ମିସେସ୍ ଗୃକୋଢ଼ଙ୍କ ପ୍ରବଳ ଅନ୍ତର୍ଦ୍ଧାହ ସତ୍ତ୍ୱେ । ତା'ପରେ ହଠାତ୍ ଏକ ମୁହୂର୍ତ୍ତରେ ତାଙ୍କର ବିଚରଣଶୀଳ ଦୃଷ୍ଟି ଉତ୍ତେଜନାରେ ଟଗ୍‌ବଗ୍ ଫୁଟି ଉଠିଲା ଯିମିତି !

"ସ୍ଲୋ ଡ୍ରାଇଭର୍ ! ଥାମ୍ !"

ରାସ୍ତାର ବାମକୁ ଏକ ଅର୍ଦ୍ଧବୃତ୍ତାକାର ପରସର । ତା'ର ତିନି କଡ଼ ବୁଲିଛି ଅନୁଚ୍ଚ ପାହାଡ଼ ।

ଜିପ୍ ରହିଗଲା । ପ୍ରଜାପତିଟିଏ ଉଡ଼ିଗଲେ ପବନରେ ଯେତିକି ତରଙ୍ଗ ହୁଏ, ସେଥିରେ ବି ଚହଲି ଯିବାରେ ଅଭ୍ୟସ୍ତା ମିସେସ୍ ମିଟି; କିନ୍ତୁ ଆକସ୍ମିକ ବ୍ରେକ୍ ଘଟିତ ଜାର୍କିଂରେ ନିଷ୍ପନ୍ଦ ହୋଇ ରହିପାରିଲେ । ପ୍ରାୟଶଃ ଏକତିଷ୍ଠ ମିସେସ୍ ଗୃକୋଢ଼ଙ୍କର ଉଭୟ ଆଖି ଅଭାବନୀୟ ଖ୍ରୀତ ଦେଖାଗଲା । ମିଟି ସାହେବଙ୍କ ଆତ୍ମଭୋଳା ଭାବ ଅନ୍ତର୍ହିତ ହୋଇଯାଇଥିଲା ।

ପାହାଡ଼ ତଳେ ସେହି ଅର୍ଦ୍ଧବଳୟ ଭିତରେ ହରିଣଟାଏ । କଳାହାଣ୍ଡିଆ ମେଘ ଭଳି ମୁଗୁନି ଦେହରେ ଝଲକାଏ ବିଦ୍ୟୁତ୍ ଯିମିତି ଲଖି ହୋଇ ରହିଯାଇଛି ।

ନିଡ଼ାମଞ୍ଜି ଫାଟିଲା ଭଳି ସଭିଏଁ ଜିପ୍ ଭିତରୁ ଛିଟିକି ପଡ଼ିଲେ । ବୁଦାକୁ ବୁଦା ଛୁଇଁ ହରିଣ ବାଙ୍ଗୁଲି ଭଳି ବୁଲୁଛି; ଏକ୍, ଦୁଇ, ତିନି, ପୁଣି ତିନି, ଦୁଇ, ଏକ୍ । ସେ ଏକ ହିଁ ଗତିର ପୁନରାବୃତ୍ତି କରୁଛି । ତିନି ଦିଗରେ ପଥରୋଧ କରିଛି ପାହାଡ଼ । ଏକମାତ୍ର ଖୋଲା ଦିଗଟିକୁ ଆବୋରି ରହିଛନ୍ତି ଛଅଜଣ । ସେମାନଙ୍କ ହାତରେ ପାଞ୍ଚଗୋଟି ବନ୍ଧୁକ । ମିସେସ୍ ଗୃକୋଢ଼ଙ୍କ ହାତରେ ବନ୍ଧୁକ ନାହିଁ । ହେଲେ, ତାଙ୍କ ଆଖି ଯିମିତି ଦୁଇଟି ଜ୍ୱଳନ୍ତ ବୁଲେଟ୍‌ରେ ପରିଣତ ହୋଇଥିଲା ।

ମିନିଟିଏ ଏପଟ ସେପଟ ହୋଇ ହରିଣ ଗୋଟାଏ ଦୁଃସାହସିକ ପଦକ୍ଷେପ ନେଲା । ସେ ଡ୍ରାଇଭର୍ ଶ୍ୟାମଲେନ୍ଦୁର ଉଦ୍ୟତ ବନ୍ଧୁକ ଆଗ ଦେଇ ଅପର ପଟର ଗହନ ବୁଦାମାନ ଭିତରକୁ ଝପଟି ଚାଲିଗଲା ।

"ଶ୍ଚଟ୍ !" ମିସେସ୍ ମିଟି ଚଲେଇ ଉଠିଲେ ।

କିନ୍ତୁ ଶ୍ୟାମଳ ଟ୍ରିଗାର୍ ଟିପିଲା ନାହିଁ । ଅନ୍ୟ ଦାଗର ଶ୍ୟାମଳିମା ଭିତରେ ହରିଣଟି ଗୋଟିଏ ସୁନାର ଚୁରିକା ଭଳି ବଙ୍କାହୋଇ ଅଦୃଶ୍ୟ ହୋଇଗଲା ପରେ ସେ ବନ୍ଧୁକ ଅବନମିତ କଲା ।

ତା'ପରେ ପାଞ୍ଚ ଗୋଟି କ୍ରୋଧ ଥର ଥର ଦାବୀ ଆଗରେ ଶ୍ୟାମଳ କୈଫିୟତ୍ ଦେଲା, "ହାତ ଗଲା ନାହିଁ । ସେଇଟି ହରିଣୀ । ଗର୍ଭବତୀ ।"

ରୁମାଲରେ ମୁହଁରୁ ଶବଦଗୁଡ଼ାଏ ପୋଛି ଆଣିଲେ ମିସେସ୍ ମିଟି, "କେଡ଼େ ଆସ୍ପର୍ଦ୍ଧା ! ପୁଣି ଅଶ୍ଳୀଳ କଥା ବି କହିପାରୁଛୁ ।" ସେ ପ୍ରାୟ କାନ୍ଦି ପକାଇବାକୁ ଯାଉଥିଲେ; କିନ୍ତୁ ମିଃ ଗୁକୋଡ଼ି ତାଙ୍କୁ ଆଶ୍ୱାସନା ଦେଲେ, "ଆହା ! ଆପଣ ପୁଣି ସେମିତି କୋମଳ ହେଲେ ମାଡାମ୍ ! ପରବର୍ତ୍ତୀ ସୁଯୋଗରେ ଆପଣ ନିଜେ ଗୁଳି କରିବେ । ହେଲା ? ବନ୍ଧୁକଟି କୋଳରେ ଧରିଥାନ୍ତୁ ।"

ଏଥର ମିସେସ୍ ମିଟି ଡ୍ରାଇଭର୍ ଶ୍ୟାମଳ ପାଖରେ ବସିଲେ । ସେଇ ଉଦ୍ଧତ ଯୁବକ ବାକି ପାଞ୍ଚ ଜଣଙ୍କ ବେଦନା ଓ ଆବେଗ ପ୍ରତି ଟିକିଏ ବି ଭ୍ରୂକ୍ଷେପ କଲା ଭଳି ମନେ ହେଉ ନ ଥିଲା । ତା'ର କାରଣ, ତା'ର ଖାଉନ୍ଦ ରାଜାସାହେବଙ୍କ ତା'ର ଅନ୍ନଭ୍ରାତା; ପରଲୋକଗତ ବୁଢ଼ା ରାଜାଙ୍କର ବହୁ ସନ୍ତାନଙ୍କ ଭିତରୁ ଶ୍ୟାମଳ ଜଣେ । ଅବଶ୍ୟ ତା'ର ଜନନୀ ରାଜାଙ୍କର ସ୍ୱୀକୃତିପ୍ରାପ୍ତା ରକ୍ଷିତାବର୍ଗଙ୍କ ଅନ୍ତର୍ଭୁକ୍ତ ହୋଇ ନ ଥିବା ଯୋଗୁଁ ତା'ର ଆସନ ଥିଲା ବହୁତ ନ୍ୟୂନ ।

ସବଳ୍ପ ଟିକିଏ ବିମର୍ଷ, ଅଥଚ ସୁଦର୍ଶନ, ବିଚକ୍ଷଣ ଶିକାରୀ ଶ୍ୟାମଳ ବୁଢ଼ା ରାଜାଙ୍କ ଦେହରେ ସମସ୍ତ ଆଭିଜାତ୍ୟ ବହନ କରୁଥିଲା । ଅଥଚ ବୁଢ଼ା ରାଜାଙ୍କ ଉତ୍ତରାଧିକାରୀ ରାଜାସାହେବ ଖୋଦ୍ ଥିଲେ ବିଶେଷତ୍ୱହୀନ ଜୀବଟାଏ । ଜୀବନଶକ୍ତିର ଅର୍ବାଚୀନ ଓ ଅନର୍ଗଳ ବ୍ୟୟ ତାଙ୍କୁ ବହୁଦିନରୁ ଏକ ବିକଳ, ଅକ୍ଷମ ବୁଭୁକ୍ଷୁରେ ପରିଣତ କରିଥିଲା । ଏଣିକି କେବଳ ନାରୀମାନଙ୍କ ଗହଣରେ ଯେତେ ଦୀର୍ଘ ସମୟ ସମ୍ଭବ କଟାଇ ସେମାନଙ୍କ ଘ୍ରାଣ ନେବା ହିଁ ଥିଲା ତାଙ୍କର ଏକମାତ୍ର ବିଳାସ । ମୁଖ୍ୟତଃ ସେଇ ଲୋଭରେ ସେ ବହୁଦିନରୁ ବର୍ଜିତ ତାଙ୍କର ଆରଣ୍ୟକ ନିବାସକୁ ସଂପ୍ରତି ବାସଯୋଗ୍ୟ କରି ସେଠାକୁ ଏହି ଅଭିଯାନର ବ୍ୟବସ୍ଥା କରିଥିଲେ ।

ବାଂଲୋରେ ପହଞ୍ଚିବା ପର୍ଯ୍ୟନ୍ତ ରାଜାସାହେବ ପ୍ରତି ପାଞ୍ଚ ମିନିଟରେ ଶ୍ୟାମଳର ବୋକାମୀ କଥା ସ୍ମରଣ କରି ତାକୁ ଅଭିଶାପ ଦେଉଥାନ୍ତି । ଶ୍ୟାମଳ ନିର୍ବିବାଦରେ ଗାଡ଼ି ଚଳାଉଥାଏ ।

ଅପରାହ୍ଣରେ ବାଂଲୋରେ ପହଞ୍ଚି କିଛି ହାଲୁକା ପାନାହାର ପରେ ସେମାନେ ଶିକାରକୁ ବାହାରିଗଲେ । ଶ୍ୟାମଳ କିନ୍ତୁ ଯିବାକୁ ମନ୍ଦିଲା ନାହିଁ । କିଛି ସମୟ

ହାଉମାଉ ଗର୍ଜି ରାଜାସାହେବ ଚୁପ୍ ହେଲେ । ସେଇ ହରିଣୀଜନିତ ବ୍ୟର୍ଥତାର ଶୋକରେ ସେ ଯାବତ୍ ମୁହ୍ୟମାନ। ମିସେସ୍ ମିତ୍ର ବ ବାଂଲୋରେ ରହିଲେ ।

ମିସେସ୍ ରୁକୋଡ଼ ମିସେସ୍ ମିତ୍ରଙ୍କ ଆଡ଼କୁ ତିର୍ଯ୍ୟକ୍ ଦୃଷ୍ଟି ନିକ୍ଷେପ କଲେ । କିନ୍ତୁ ମିସେସ୍ ମିତ୍ର ଜାଣିଥିଲେ; ମିତ୍ର ସାହେବଙ୍କ ଆରଣ୍ୟକ ସାନ୍ନିଧ୍ୟର ଲୋଭ ଛାଡ଼ି ରହିଯାଇ ପାରିବେ ନାହିଁ ମିସେସ୍ ରୁକୋଡ଼ । ବୃଦ୍ଧ ବର ମିଃ ରୁକୋଡ଼ଙ୍କ ଉପସ୍ଥିତି ସତ୍ତ୍ୱେ ଅରଣ୍ୟ ଭିତରେ ବହୁ ଭାବଗତ ଆଦାନପ୍ରଦାନର ସୁଯୋଗ ପାଇବେ ମିଃ ମିତ୍ର ଓ ମିସେସ୍ ରୁକୋଡ଼ ।

ସନ୍ଧ୍ୟା ଆଗତ ପ୍ରାୟ ।

ଭୌତିକ ନୀରବତା—ମଧ୍ୟେ ମଧ୍ୟେ ଏକ ଅଜଣା ଶବ୍ଦ । ଭୟ, କୌତୂହଳ ଓ ଏକ ଦୁର୍ବାର ଲପ୍‌ସାର ସମାବେଶରେ ମିସେସ୍ ମିତ୍ର ଅନନୁଭୂତପୂର୍ବ ଶିହରଣରେ ଥରିଉଠିଲେ । ତା'ପରେ ଏକୁଟିଆ କିଛି ସୁରାପାନ କରିବାର ଅବ୍ୟବହିତ ପରେ ହଠାତ୍ ତାଙ୍କର ଅହଂ ଶ୍ୟାମଳର ନିର୍ବାସକ୍ତ ଉଦ୍ଧତ ବିମର୍ଷତା ବିରୁଦ୍ଧରେ ବିଦ୍ରୋହ କରିଉଠିଲା ।

ଏତିକବେଳେ ଦୂରାନ୍ତରେ ଶୁଭିଲା ଏକ ଗର୍ଜନ ।

"ଏ ଶବ୍ଦ କାହାର ହୋଇପାରେ ?" ମିସେସ୍ ମିତ୍ର ଶ୍ୟାମଳକୁ ପଚାରିଲେ ।

"ବାଘର, ମାଡ଼ାମ୍ !" ଶ୍ୟାମଳ କହିଲା ।

ମିସେସ୍ ମିତ୍ର ତେଜିପଡ଼ି ଛିଡ଼ା ହେଲେ ଓ ବାରଣ୍ଡାରୁ ଭିତରକୁ ଚାଲିବା ଅବସରରେ ପୂର୍ବ ଶାର୍ଦ୍ଦୀସ୍ଥ ଖାଟରେ ଝୁଣ୍ଟି ପଡ଼ି ତଳେ ପଡ଼ିଗଲେ ଓ ଶ୍ୟାମଳ ଆସିବା ପର୍ଯ୍ୟନ୍ତ ଉଠିବାର ଉଦ୍ୟମ କଲେ ନାହିଁ । ଆଉ ଯେତେବେଳେ ଶ୍ୟାମଳ ଆସିଲା, ସେତେବେଳେ ଶ୍ୟାମଳ ତାଙ୍କୁ ଧରି ଟେକାଳଧରିବାର ସୁଯୋଗ ପାଇବା ପାଇଁ ଯେତିକି ପ୍ରୟୋଜନ, ସେ ସେତିକି ମାତ୍ର ଉଠିଲେ ।

ତତ୍ପରେ ଦୁର୍ଘଟଣା ସମ୍ପର୍କରେ କିଛି ଉଚ୍ଚବାଚ ନ କରି ସେ ଗୋଟାଏ ମାରାତ୍ମକ ହସ ଫୁଟାଇ କହିଲେ, "ତୁମେ ଜଣେ ଓସ୍ତାଦ୍ ଶିକାରୀ; ନୁହେଁ ଶ୍ୟାମଳ ?"

ଶ୍ୟାମଳ ବୁଝିଲା । ମିସେସ୍ ମିତ୍ର ତାଙ୍କୁ କୋଡ଼ିଏ ବର୍ଷ ତଳର ଖେଳସାଥୀଟିଏ ଭଳି ଲାଗିଲେ, ଯିଏ କି ସହଜ ଭାବରେ ଗୋଟାଏ ଖେଳର କୌଶଳ ଶିଖାଇ ଦେଉଛି ମାତ୍ର ।

ଶ୍ୟାମଳ ସୁବୋଧ ବାଳକ ଭଳି ବ୍ୟବହାର କଲା । ତା' ମୁହଁରୁ ସେଇ ଇଷତ୍ ବିଦ୍ରୂପ-ମିଶ୍ରିତ ବିଷଣ୍ଣ ହସ କିନ୍ତୁ ଲିଭିଲା ନାହିଁ । ସେଇ ନୀରବ ହସ ମିସେସ୍ ମିତ୍ରଙ୍କୁ କେବଳ ଯେ ଜୟଲାଭର ତୃପ୍ତିରୁ ବଞ୍ଚିତ କଲା ତାହା ନୁହେଁ; ତାଙ୍କ ମନରେ ଛାଡ଼ିଗଲା ଖାଲି ଅପମାନ ଓ ପରାଭବର ଅନ୍ଧକାର ।

ରାଜାସାହେବ ଓ ଅନ୍ୟ ତିନିଜଣ ଅରଣ୍ୟ ଭିତରୁ ଫେରିବାବେଳକୁ ଅନ୍ଧକାର ବହଳ ହୋଇଆସିଲାଣି । ମିସେସ୍ ମିଟିଙ୍କ କ୍ଳାନ୍ତନିଦ୍ରା ତୁଟିଗଲା । ସେ ଜର ଜର ଅନୁଭବ କରୁଥିଲେ । କବାଟ ଖୋଲିବାମାତ୍ରେ ପ୍ରଥମେ ତାଙ୍କ ଆଖି ପଡ଼ିଲା ମିସେସ୍ ରୁକୋଡ଼ଙ୍କ ଆଖିରେ । ମିସେସ୍ ରୁକୋଡ଼ ଯେ ବହୁତ କିଛି କଳ୍ପନା କରିସାରିଥିଲେ, ତାହା ବୁଝିବାକୁ ତାଙ୍କର ବିଳମ୍ବ ହେଲା ନାହିଁ । ଯଥାଶୀଘ୍ର କୋଠରିର ଗୋଟାଏ କୋଣରେ ଚଟାଣ ଉପରେ ଶୋଇପଡ଼ିଥିବା ଶ୍ୟାମଳ ଉପରେ ମିସେସ୍ ରୁକୋଡ଼ଙ୍କ ଦୃଷ୍ଟି ନିବଦ୍ଧ ହେଲା । ସେ ଦୃଷ୍ଟି ଭୟାବହ । ସେଥିରେ ସୁସ୍ପଷ୍ଟ ଭାବରେ ଫୁଟିଉଠିଥିଲା ସେ କେତେ ଶୋଚନୀୟ ଓ ପ୍ରତାରିତ ଅନୁଭବ କରୁଥିଲେ ।

"ଡାର୍ଲିଂ ! ତମକୁ ଏକୁଟିଆ ଛାଡ଼ିଯାଇଥିବା ହେତୁ ମିସେସ୍ ରୁକୋଡ଼ ଏତେ ଅଶାନ୍ତ ହେଉଥାନ୍ତି ଯେ ମୋ କଥା କ'ଣ ଆଉ କହିବି ! ଆଶାକରେ ତମର କିଛି ଅସୁବିଧା ହୋଇନାହିଁ ।" କହିଲେ ମିଃ ମିଟି ।

ସେତେବେଳଯାଏ ସୁରା, ନିଦ୍ରା, ଅନ୍ଧକାର ଓ ସେହି ଭୌତିକ ନିସ୍ତବ୍ଧତାର ଏକାକାଳୀନ ବିଚିତ୍ର ପ୍ରଭାବରୁ ପୂରା ମୁକ୍ତ ହୋଇ ନ ଥିଲେ ମିସେସ୍ ମିଟି; ଅଥଚ ମିସେସ୍ ରୁକୋଡ଼ଙ୍କର କଳ୍ପନାକୁ ତଥା ଯେଉଁ ବିଦ୍ରୁପଭରା ଅସହ୍ୟ ହସର ଆଭାସ ସେ ଯାଏ ଶ୍ୟାମଳ ମୁହଁରେ ଲକ୍ଷିକରିଥିବ ବୋଲି ସେ ଆଶଙ୍କା କରୁଥିଲେ, ତାକୁ ଏକକାଳୀନ ନିଶ୍ଚିହ୍ନ କରିଦେବାର ସଂକଳ୍ପ ନେଇ ସେ ମିଟିଙ୍କ ବେଲ୍ଟ ଧରି, ତାଙ୍କୁ କୋଠରି ଭିତରକୁ ଟାଣି ନେଇ, ହଠାତ୍ କୋହାଦ୍‌ଗତ କଣ୍ଠରେ କହିଉଠିଲେ,
"ଜାଣ...ଜାଣ...ସେଇ ଜାନୁଆର୍‌କୁ ମୁଁ ଚଢ଼ାଇଲି ଗୋଟାଏ ପ୍ରଚଣ୍ଡ ଥାପଡ଼ା !"

"ଶ୍ୟାମଳ କଥା କହୁଛ ?"

"ଆଉ କ'ଣ ! ଲୋକଟା କି ପ୍ରଚଣ୍ଡ ସୈତାନ୍ ।"

କେତେ ମୁହୂର୍ତ୍ତ ପାଇଁ ତହିଁ ବିରାଜ କଲା ଶ୍ମଶାନର ନୀରବତା ।

ଆଜୀବନ ଶ୍ୟାମଳ ବିରୁଦ୍ଧରେ ହେତୁହୀନ ଅଭିଯୋଗ ପୋଷଣ କରି ଆସିଥିବା ରାଜାସାହେବ ଦ୍ରୁତ ଶ୍ୟାମଳ ଆଡ଼କୁ ମାଡ଼ିଗଲେ; କିନ୍ତୁ ତା'ପରେ କ'ଣ କରିବେ ଠଉରାଇ ନ ପାରି ସେଠାରେ ଛିଡ଼ାହୋଇ କେବଳ ଫଁ ଫଁ ହେଲେ ଓ ଝାଳ ପୋଛିବାକୁ ଲାଗିଲେ ।

ବଜ୍ରାହତ ଭଳି ଛିଡ଼ା ହୋଇଥିଲେ ମିଃ ରୁକୋଡ଼ ଓ ମିଟି; କିନ୍ତୁ ସେହି କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥା ଭାଙ୍ଗି ଦେଲେ ମିସେସ୍ ରୁକୋଡ଼ । ସେ ହଠାତ୍ ଜାଢ଼-ପକାଇ ଶ୍ୟାମଳ ଆଡ଼କୁ ଦୌଡ଼ିଗଲେ ଓ ତା' ଦେହରେ ଏକ ପ୍ରଚଣ୍ଡ ପଦାଘାତ କଲେ ।

ଶ୍ୟାମଲ ବିହ୍ୱଳ ଆଖି ବଡ଼ ବଡ଼ କରି ଛୁଡ଼ାହୋଇ ପଡ଼ିଲା । ତେବେ ଦେଖି ସମସ୍ତ ପାଇଁ ନୁହେଁ । ମିସେସ୍ ମିଟ୍ଟିଙ୍କୁ ଛାଡ଼ି ଆଉ ସମସ୍ତେ ମିସେସ୍ ରୁକୋଡ୍ରିଙ୍କ ପଦାଙ୍କ ଅନୁସରଣ କରି ତାକୁ ବାଡ଼େଇବାକୁ ଲାଗିଲେ । ମିସେସ୍ ମିଟ୍ଟିଙ୍କ ପାଗଳପ୍ରାୟ ଅଟ୍ଟହାସ୍ୟ ଭିତରେ ସେ ଚେତା ହରାଇଲା ।

ତା'ର ରକ୍ତାକ୍ତ ନିଃସାଡ଼ ଦେହକୁ ସେମାନେ ଘୋଷାରି ନେଇଗଲେ ପାର୍ଶ୍ୱବର୍ତ୍ତୀ ସ୍ଲେଟ କୋଠରି ଭିତରକୁ, ଯେଉଁଠି ସଦ୍ୟ ଶିକାରରୁ ଆଣିଥିବା ଗୋଟାଏ ଅର୍ଦ୍ଧମୃତ ରକ୍ତାକ୍ତ ବାର୍‌ହାକୁ ସେମାନେ ପକାଇ ରଖିଥିଲେ ।

କେତୋଟି ମିନିଟ୍ ଭିତରେ ଏ ସବୁ ସମାଧାନ ହେଲା । ତହିଁ ଉତ୍ତାରୁ ସେମାନେ ବସିପଡ଼ି ଧସେଇ ହେବାକୁ ଲାଗିଲେ ।

ଚୌକିଦାରକୁ ତତ୍ପରେ ସେଠାରୁ ବିଦାୟ କରିଦିଆହେଲା ଖୁବ୍ ସକାଳେ ହାଜର ହେବାକୁ ନିର୍ଦ୍ଦେଶ ଦେଇ ।

ଭିତର ପଟରୁ ନିଃଶବ୍ଦରୂପେ ଦ୍ୱାର ଓ ଝରକାମାନ ବନ୍ଦ କରାଗଲା । ପଛପଟରେ ପ୍ରାଚୀର ବଳୟିତ କିଚେନ୍ ଗାର୍ଡନରେ ନିଆଁକୁଣ୍ଡ ପ୍ରସ୍ତୁତ କରାହେଲା । ତାକୁ ଘେରି ବସି ସେମାନେ ପିଇବାକୁ ଆରମ୍ଭ କଲେ । ଯେତେବେଳେ ନିଆଁ ଦାଉ ଦାଉ ଜଳିଲା, ସେତେବେଳେ ସେମାନେ ବାର୍‌ହାକୁ ଘୋଷାରି ନେଇଆସି ସେଥିରେ ନିକ୍ଷେପ କଲେ ଓ
ଓ ତା' ଦେହରୁ ଚେକା ଚେକା ମାଂସ କାଟିଆଣି ଖାଉଁ ଖାଉଁ ଗୀତ ବୋଲିଲେ ଓ , ନାଚିଲେ ।

ରାତି ଗମ୍ଭୀର ହେବାଯାଏ ।

( ତିନି )

ପୁଣି ଏକ ଧକ୍କା । ମିସେସ୍ ମିଟ୍ଟି ଉଠି ବସି ଝରକା ଖୋଲି ବାହାରକୁ ଚାହିଁଲେ ।
ଏ ଯାଏ ଅନ୍ଧକାର ଅଛି ।

ହଠାତ୍ ସେହି ଅନ୍ଧକାର ଭିତରୁ ତାଙ୍କ ଉପରକୁ ମାଡ଼ିଆସିଲା ଏକ ଶୀତଳ ଆତଙ୍କ ।
କ୍ରମେ ତାଙ୍କ ସାରା ଦେହ ଭିତରେ ତାହା ସଂକ୍ରମିତ ହେଲା । ରକ୍ତରେ ଭରପୂର ହୋଇ
କଳକାତିକ ଶିଶିର ବିନ୍ଦୁ ବିନ୍ଦୁ ଘର୍ମ ରୂପେ ବାହାରି ଆସିଲା ।

ସେ ଅନ୍ୟମାନଙ୍କୁ ଡାକିଲେ । ଚୌକିଦାର ବୁଝିଲା, ସେମାନେ ଉଠିଲେଣି, ତେଣିକି
ସେ କବାଟ ବାଡ଼େଇବାକୁ କ୍ଷାନ୍ତ ହେଲା ।

ରାଜାସାହେବ କହିଲେ, "ସୁପ୍ରଭାତ, ବନ୍ଧୁଗଣ ! ଚାହା ପ୍ରସ୍ତୁତ କରାଯାଉ, ତା
କ'ଣ ? ମୁଁ ଦେଖେଁ, ସେ ବଜ୍ଜାତ୍ ଶ୍ୟାମଲ କ'ଣ କରୁଛି !"

ଶ୍ୟାମଲ ବନ୍ଦୀଥିବା କୋଠରି ଆଡ଼କୁ ରାଜାସାହେବ ପାଦ ବଢ଼ାଇଲେ ।

"ଯାଅ ନା !" ମିସେସ୍ ମିଟି ଚିତ୍କାର କରି ରାଜାସାହେବଙ୍କୁ ଅଟକାଇଲେ । ହତଚକିତ ରାଜା କୌଣସି ପ୍ରକାରେ କହିଲେ, "କି···କି···କିନ୍ତୁ···କା···କାହିଁକି ?"

ମିସେସ୍ ମିଟି କହିଲେ, "ଜାଣେ ନା; କିନ୍ତୁ ଧର, କୋଠରି ଭିତରେ ଶ୍ୟାମଳ ବଦଳରେ ଯଦି ବାର୍‌ହାକୁ ଦେଖ ?"

"କିନ୍ତୁ ଆମେ ତ ଗତ ରାତିରେ ବାର୍‌ହାକୁ ସିଝାଇ ଖାଇଲୁ, ନୁହେଁ ?"

"ଧର ଯଦି କୋଠରି ଭିତରେ ଶ୍ୟାମଳ ବଦଳରେ ବାର୍‌ହାକୁ ଦେଖ ?"

ଦୀର୍ଘ ସମୟ ଧରି ବିରାଜି କଲା ଏକ ମୃତ୍ୟୁ-ଶୀତଳ ସ୍ତବ୍ଧତା । ତା'ପରେ ଜଣେ କିଏ କହିଲେ, "କିଚେନ୍ ଗାର୍ଡ଼ନକୁ ଯାଇ ଦେଖିବା ଚାଲ । ବାର୍‌ହାର ବହୁ ଅଂଶ ନିଶ୍ଚେ ଏବେ ବି ସେଠାରେ ପଡ଼ିଛି !"

"ନାହିଁ, ନାହିଁ ! କଦାପି ନୁହେଁ ।" ଉଭୟ ମିସେସ୍ ମିଟି ଓ ମିସେସ୍ ବ୍ରିକୋଡ଼ ଚିତ୍କାର କଲେ, "ସେଠାରେ ଯାହା ପଡ଼ିଥିବ, ତାହା ଯଦି ବାର୍‌ହାର ହୋଇ ନ ଥିବ ?"

ପୁଣି ମୃତ୍ୟୁ-ଶୀତଳ ସ୍ତବ୍ଧତା । ସମସ୍ତେ ଦେଖୁଥିଲେ, ସମସ୍ତେ ଥରୁଛନ୍ତି ।

ଦୁଇ ଘଣ୍ଟା ପରେ । ମିଃ ମିଟି ଜିପ୍ ଚଳାଉଥିଲେ । କେତୋଟି ବାଲି ବସ୍ତା ଭଳି ଅନ୍ୟମାନେ ନିଷ୍ପ୍ରାଣ ହୋଇ ବସିଥିଲେ ।

ରାଜାସାହେବ ହସିବାର ଚେଷ୍ଟା କରି କହିଲେ, "କେଡ଼େ ଅଦ୍ଭୁତ ତୁମର କଳ୍ପନା—ବା—ସ୍ୱପ୍ନ—ମିସେସ୍ ମିଟି ! ଯାହା ହେଉନା କାହିଁକି, ତମେ ଆମ ରକ୍ତ ହିମ କରିଦେଲ । ତମେ ବାସ୍ତବିକ ଅଦ୍ଭୁତ !"

ମିସେସ୍ ମିଟି ବା ଅନ୍ୟ କେହି କିଛି କହିଲେ ନାହିଁ । ତେଣୁ ରାଜାସାହେବ ପୁଣି କହିଲେ, "ମୁଁ ଅବଶ୍ୟ ମୋର ଓସ୍ତାଦ ଚୌକିଦାରକୁ ନିର୍ଦ୍ଦେଶ ଦେଇଛି—ଯଦି ବାସ୍ତବିକ ଆମେ ନିଶାଗ୍ରସ୍ତ ଅବସ୍ଥାରେ ଦୈବାତ୍ କିଛି ଭୁଲ କରିପକାଇଥିବା, ତେବେ କିଛି ଜଣା ନ ପଡ଼ିବା ପାଇଁ ଯଥାର୍ଥ ବ୍ୟବସ୍ଥା ସେ କରିବ; କିନ୍ତୁ ମୋର ତିଳେ ବି ସନ୍ଦେହ ନାହିଁ ଯେ ମିସେସ୍ ମିଟିଙ୍କ ଆଶଙ୍କା ଭୂତ ଭଳି ଅଳୀକ ।"

ମିଃ ବ୍ରିକୋଡ଼ ଓ ମିଃ ମିଟି କହିଲେ, "ସେଥିରେ କ'ଣ ବା ସନ୍ଦେହ ! ସେ କୋଠରି ନ ଫିଟାଇବା ବା କିଚେନ୍ ଗାର୍ଡ଼ନ ଭିତରକୁ ନ ଯିବା ଆମର ମୂଢ଼ତା ଛଡ଼ା ଆଉ କିଛି ନୁହେଁ ।"

"ଅବଶ୍ୟ ଭୂତ ଯେ ଅଳୀକ, ସେ ବିଷୟରେ ମୁଁ ନିଃସନ୍ଦେହ ନୁହେଁ । ସେ ବାଂଲୋରେ କେତୋଟି ଭୂତପ୍ରେତ ଅଛନ୍ତି ବୋଲି ଶୁଣାଯାଏ । ସେମାନେ ଅନେକ କିସମର ବିଭ୍ରାଟ କରନ୍ତି । ହୁଏତ ସେଇମାନେ ଆମ କଳ୍ପନାକୁ ନେଇ ଖେଳ ଖେଳି ଆମକୁ ଗଧ ବନାଇ

ଛାଡ଼ିଲେ !" ରାଜାସାହେବ କହିଲେ ।

ମିସେସ୍ ମିଛି ହଠାତ୍ କାନ୍ଦିଲେ । ମିସେସ୍ ବୃକୋଡ଼ି ଅଟ୍ଟହାସ୍ୟ କରିବାକୁ ଲାଗିଲେ । ଅନ୍ୟମାନେ ପୁଣି ବାଲ୍‌ବଷ୍ଟାବଣ୍ଡ ନିସ୍ତବ୍ଧ ହେଲେ ।

ଜାଟ୍‌ର ନିର୍ଘୋଷ ଭଳି ଦୁଇ ଜଣଙ୍କର କୋହ ଓ ହସ ବାରମ୍ବାର ଦଳି ଚକଟି ହୋଇଯାଉଥିଲା ।

# ଚନ୍ଦ୍ରହାର

## ବିଭୂତିଭୂଷଣ ତ୍ରିପାଠୀ

ସକାଳେ ଗୃ' ସହିତ ଏକ କଠୋର ସମ୍ବାଦ ପରିବେଷଣ କରିଗଲେ ।

କାଲି ରାତିରେ ଘରେ ଚୋରି ହୋଇଯାଇଛି । ଚୋରି, ଡକାୟତି ସେ ସିନ୍ଧ କାଟି ଘର ଭାଙ୍ଗି ଚୋରି କରିଛନ୍ତି ତା ନୁହେଁ । ଘରଢେଙ୍କି କୁମ୍ଭୀର, ଗୃହିଣୀ ପ୍ରାୟ ମୋତେ ଉଦ୍ଦେଶ୍ୟ କରି କହିବୁଲୁଥିଲେ ଯେ, ମୁଁ ଗୋଟାଏ ଭୋଳାନାଥ । ମୁଁ ମୋ ଅଫିସକାମ, ସାଙ୍ଗସାଥୀ, କ୍ଲବ୍ ପ୍ରଭୃତି ଛଡ଼ା କିଛି ତ ଆଜି ଜାଣିଲି ନାହିଁ କି ବୁଝିଲି ନାହିଁ । ଏହି ଅପଦାର୍ଥ ଟିକର ପୁଞ୍ଜାଣିକୁ ଧରେ ନେଇ ଏତେ ବଡ଼ ସଂସାରକୁ ଚଳାଇବା ଯେ କି କଷ୍ଟକର ବ୍ୟାପାର, ସେ କଥା ସେ ଅଙ୍ଗେ ନିଭେଇଛନ୍ତି ବା ଯେ ଚନ୍ଦ୍ର, ସୂର୍ଯ୍ୟ ସୃଷ୍ଟି କରିଛନ୍ତି ସେଇ ଜାଣିଲେ ଜାଣିଥିବେ । ମୋତେ କହିବାର କୌଣସି ଅର୍ଥ ନାହିଁ; କିନ୍ତୁ ନିଜ ଶୋଇବା ଘର ଖଟତଳୁ ଯେତେବେଳେ ଜିନିଷ ହରଣଚାଲ ହେଲାଣି, ସେ କଥା ତାଙ୍କୁ ନିତାନ୍ତ ବାଧ୍ୟ ହୋଇ ମତେ କହିବାକୁ ପଡ଼ୁଛି । କାରଣ ପୋଲିସକୁ ଖବର ଦେବାକୁ ହେବ କି କ'ଣ କରିବାକୁ ହେବ, ସେ କଥା ମୋର ଜାଣିବାର କଥା, ଏ ସବୁ ସରକାରୀ କଥା···କାନରେ ପକାଇଦେଲାରୁ ତାଙ୍କର ଛୁଟି ।

ଯୁଗପତ୍ ବିସ୍ମୟ ଓ ଆତଙ୍କରେ ମୁଁ ସ୍ତବ୍ଧ ହୋଇଗଲି । ମୋର ବାକ୍ୟ ସ୍ଫୁରିଲା ନାହିଁ କଣ ହେଲା ? ଶୋଇବାଘର ଖଟତଳୁ ? କଣ ? କଣ ଚୋରିଯାଇଛି ?

ଜଗୁଆ ମା'ର ଚନ୍ଦ୍ରହାର··ଖିରିକେରି—ପନ୍ଦର ଭରି । ଦି' ବର୍ଷର ଦରମା ଜମା କରି ଆମ ବଣିଆ ପାଖରେ ଗତ ସାଲେ ଯେଉଁ ଚନ୍ଦ୍ରହାର ସେ ଗଢ଼ ଥିଲା, ସେଇ । ଗୋଟାଏ ପ୍ଲେଟ ଟିଣ ବାକ୍ସରେ ଗୁଞ୍ଜି ପକାଇ ଶୋଇବାଘର ଖଟତଳେ ରଖିଥିଲା । ମା'ଙ୍କ ମୁଣ୍ଡତଳୁ ପଦାର୍ଥ ନେଇଯିବ ଏତେ ବହପ କା'ର··କିନ୍ତୁ କାଲି ରାତିରେ ଏ ଅସମ୍ଭବ ସମ୍ଭବ ହୋଇଛି । ବାକ୍ସ ଖୋଲା ହୋଇପଡ଼ିଛି । ଚନ୍ଦ୍ରହାର ନାହିଁ । ଜଗୁଆ' ମା ଚୁହାଲ ଘରେ ବସି କାନ୍ଦ କାନ୍ଦ ଅସ୍ଥିର··ଉପାୟ ଆଉ କଣ ? ଫୋନ୍ ଆଡ଼କୁ ହାତ ବଢ଼ାଇଲି ।

ଗୃହିଣୀ ତ ପ୍ରାୟ ମାଡ଼ିଆସିଲେ । "ଆହା ଥାଉ, ଫୋନ୍ କରିବା ଆଗରୁ କଥାଟା ଟିକେ ବୁଝିବାକୁ ଚେଷ୍ଟାକର ।"

କହିଲେ—"ଏତେବେଳଯାଏ ମୁଁ ଯାହା କହିଗଲେ, ତାହାର ତାତ୍ପର୍ଯ୍ୟ ବୁଝିବାର କ୍ଷମତା ମୋର ଲୋପ ହେଲାଣି, ଘନଘନ ସରକାରୀ ଫାଇଲ ଘାଣ୍ଟି ଘାଣ୍ଟି ମୋର ବୁଦ୍ଧି ଶୁଦ୍ଧି ହଜିଲାଣି । ଆରେ ବାବୁ, ପୋଲିସକୁ କଣ କହିବ, କହିଲ ପରା ଘରଭେଦୀ କୁମ୍ଭୀର । ଘର ଆଡ଼େ ଟିକିଏ ଦୃଷ୍ଟି ପକା ।"

ଘରର ଦ୍ୱାର ଅଗଣା ଆଡ଼କୁ ମେଲା—ଦେଇ ମେଲା ଦୁଆର ବାଟେ ଗୁହାଳ । ଉଚ୍ଛନ୍ନ ଗାମୁଚ୍ଛା ପିନ୍ଧି, ଧୋବ ପଇତାରେ ଶୃଙ୍ଗବେଷ୍ଟନୀ ଝୁଲାଇ ଧମ୍ ଧମ୍ ହୋଇ ଜଣେ ଘରଆଡ଼େ ପଶିଯାଉଛି । ସାଧୁଆଘରୁ ରଙ୍କର ଲୁଗାକଚରାର ଆଓ୍ୱାଜ ଶୁଭୁଛି । ଜଗୁଆ ମା' ତ ଗୁହାଳ ଘରେ ··ଆଉ କଣ ଦେଖିବ ?

ଗୃହିଣୀ ଘଷି ହୋଇ ପାଖ ଚୌକିରେ ବସିଲେ ଓ ସରଳ ଭାବରେ କେତେକ ଘରକଥା ଯାହା କହିଲେ, ତାହାର ମର୍ମାର୍ଥ ହେଉଛି ମୋଟାମୋଟି ଏହିପରି—ଏ କାମ ହେଉଛି ରଙ୍କର, ଆଉ କାହାର ନୁହେଁ । ଉଚ୍ଛନ୍ନା ତ ପିଲାଦିନୁ ଏହି ଘରେ ମଣିଷ ହୋଇ ବଢ଼ିଛି । ତା ହାତରେ ଘରର ସବୁ ସମ୍ପତ୍ତି ନିଶ୍ଚିନ୍ତରେ ଛାଡ଼ିଯାଇ ହେବ । ତା କଥା ବାଲ୍ କୁଲ୍ ଛଡ଼ିପାରେନା । ଜଗୁଆ ମା' ତ ଜଗୁଆ ମା—ଚାକିରୀ ଦୁଃଖୀରଙ୍କି ବିଧବା ଟିଏ ଅଛିଏ । ମହାର୍ଘ ନେଇ ସେ ଗୃହିଣୀଙ୍କର ଧରମଟିଅ ହୋଇଛି । କେତେ କଷ୍ଟରେ, ପେଟପାଟି ମାରି ଦରମାଗଣ୍ଡାକ ଜମାଇ ଜମାଇ ଖଣ୍ଡିଏ ଅଣ୍ଟାବିଛା କରିଥିଲା ସେ ଭଲକରି ତାକୁ ଏପର୍ଯ୍ୟନ୍ତ ହେଲେ ପିନ୍ଧିନାହିଁ । ବାକ୍ସରେ ସାଇତି ରଖିଥିଲା । ଯାହାଯାହା ପର୍ବପର୍ବାଣିରେ ଅରେ ଅଧେ ପିନ୍ଧିଥିବ···ଏହି ଯା ଜଗୁଆ ମା' ତାକୁ ତ ପାଖ ପୁରାଇ ଦେଲାନାହିଁ । ମା' ପାଖରେ କାନ୍ଦି କହିଲା, ମା' ମୋତେ ବିଦା କରିଦିଅ, ଏ ରଙ୍କ ଜାଲାରେ ମୁଁ ଆଉ ରହିପାରିବି ନାହିଁ । ରଙ୍କ ସେ କଥା ଶୁଣିଲା, ସେଇଦିନୁ ତାର ଅନ୍ତକାଳ । ସେଇ ଏ କାମ କରିଛି; ତା ଛଡ଼ା ଆଉ କେହି ନୁହେଁ ।

ବୁଝିବାରେ ମୋର ଗୋଳମାଳ ହୋଇଗଲା । ପ୍ରତ୍ୟାଖ୍ୟାତ ପ୍ରେମର ଏ ତ ଏକ ଅଦ୍ଭୁତ ଗାଥା । ଏ ତ ଏକ ଚମତ୍କାର ଗପର ଖୋରାକ ଯୋଗାଇବ । ମୋର କୌତୂହଳ ବେଶ୍ ଗାଢ଼ ହୋଇ ଆସିଲାଣି । ସିଗାରେଟ ଲଗାଇ କହିଲି—ହଁ, ତା ପରେ ?

—ତା ପରେ ଆଉ କଣ ? ପୋଲିସରେ ଶୀଘ୍ର ଖବର ଦିଅ । ସେମାନେ ଆସି ଖାନ୍‌ତଲାସ କରନ୍ତୁ । ମାଇକିନିଆଙ୍କର ପଦର ଭିତରେ ଜିନିଷଟା କଣ ଘରୁ ଲୁଆଡ଼େ ହଜିଗଲା ନା ?

ଫୋନ୍‌ରେ ପୋଲିସ ଇନସ୍‌ପେକ୍‌ଟରଙ୍କୁ ସଂକ୍ଷେପରେ ଘଟଣାଟା ଜଣାଇଲି, ଅଫିସ ବେଳ ମଧ୍ୟ ହୋଇଗଲାଣି । ପୋଲିସ ତାଙ୍କର କର୍ତ୍ତବ୍ୟ କରିବେ । ମୋର ଏଥିରେ ଭାବିବାର ବା କହିବାର କଣ ଅଛି । ଅଫିସ ବାହାରିଗଲି ।

ମଝିରେ ଇନ୍‌ସପେକ୍‌ଟର ବାବୁଙ୍କ ଫୋନ୍—ମୋର ଯଦି କୌଣସି ଆପତ୍ତି ନ ଥାଏ, ସେମାନେ ପୂଜାରୀ, ଚାକର ଓ ଜଗୁଆ ମା'ଙ୍କୁ ଥାନାକୁ ନେବାକୁ ଚାହାଁନ୍ତି । ମୋର ଏଥିରେ କାହିଁକି ବା ଆପତ୍ତି ହେବ ? ସେଇକଥା ଜଣାଇଦେଲି ।

ଅଫିସରୁ ଡେରିରେ ଫେରି ଦେଖିଲି ଉଚ୍ଛବା ପୂଜାରୀ ରୋଷେଇଘରେ । ଗୃହିଣୀ ପ୍ରସାଧନରତା । ଜଗୁଆ-ମା' ପୁଅକୁ ନେଇ ଦାଣ୍ଡରେ ଖେଳାଉଛି । ଆଉ ରଙ୍କ ? ରଙ୍କକୁ ସେମାନେ ଥାନାରେ ଅଟକାଇଛନ୍ତି । ଉଚ୍ଛବା ଓ ଜଗୁଆ-ମା' ଘଣ୍ଟାକ ଭିତରେ ଥାନାରୁ ଛାଡ଼ ପାଇ ଫେରିଆସିଥିଲେ । ରଙ୍କ ସେତେବେଳକୁ ସେଇଠି--ଗାଧୋଇ ନାହିଁ କି ଖାଇ ନାହିଁ ।

ରାତି ଆଠଟାବେଳେ ରଙ୍କ ଫେରିଲା । ମୁଁ ଲୁଚି ଲୁଚି ତା ମୁହଁ ଆଡ଼େ ଚାହିଁଲି । ତା ମୁହଁଟା ଶୁଖି କଳାକାଠ ପଡ଼ିଯାଇଛି । ଚୁପ୍ କରି ସେ ତା ଘରଆଡ଼େ ଚାଲିଗଲା ।

ଦାଣ୍ଡପିଣ୍ଡାରେ ଆରାମଚେୟାରରେ ପଡ଼ି ସମସ୍ତ ବ୍ୟାପାରଟା ମୁଁ ବୁଝିବାକୁ ଚେଷ୍ଟା କଲି । ପ୍ରାୟ ବର୍ଷେ ହେଲାଣି ଏଇ ରଙ୍କ ଏ ଘରେ କାମ କରୁଛି । ଦିନେ ହେଲେ ତା କାମରେ କୌଣସି ତ୍ରୁଟି ଦୃଷ୍ଟିରେ ପଡ଼ିନାହିଁ । କିଛି କହିବାକୁ ହୁଏନି—ବତେଇବାକୁ ପଡ଼େନାହିଁ । କିଏ ଆସିଲା ଗଲା—ତାଙ୍କ କଥା ବୁଝିବାଠାରୁ ଛୁଆପିଲାଙ୍କ କଥା, ଗୋରୁଗାଈ, ବାସନମଜା, ଲୁଗାକଚା, ବଜାର ହାଟ ସବୁଥିରେ ରଙ୍କ । ସେ କେତେବେଳେ ଗାଧାଏ, କେତେବେଳେ ଖାଏ କେହି ଜାଣନ୍ତି ନାହିଁ । ରାତି ନ ପାହୁଣୁ ତାର କାମ ଆରମ୍ଭ ହୋଇଯାଇଥିବ । ସକାଳୁ ଉଠିଲାବେଳକୁ ନେନ୍ଥା ନେନ୍ଥା ବାସନ ମଜା ହୋଇ ଥାକ ଥାକ କରି ରଖାଯାଇଥିବ । ଗୁହାଳ ଘରୁ ପିତଳ ବାଲଟିରେ ଦୁଧ ଦୋହିଁ ଆଣି ଥୋଇଦେଇ ଗାଧୁଆ ଘରେ ପଶିବ । ଧୂଆ ଘଷା ସାରି ତା'ପରେ ବଜାର । ସେଠୁ ଫେରି ଛୁଆଙ୍କୁ ଗାଧୋଇ ପାଧୋଇ ଦେଇ ବେଶ କରି ଦେବା—ତା'ପରେ ଗେରେଜରେ ଗାଡ଼ି ପୋଛା—ରେଡ଼ିଏଟର୍ ଖୋଲି ପାଣି ଦେଖିବା, ଯୋତାରେ ପାଲିସ୍ କରି ନିଜ ହାତରେ ମୋଜା, ଯୋତା ପିନ୍ଧାଇ ଦେଇ ତାପରେ ମା'ଙ୍କ କଥା···ଛୁଆଙ୍କ କଥା, ପୂଜାରୀର ବରାଦ; ଲୁଗାକଚା, ଗୁହାଳ ସଫା କାମ । ଦିନ ଗଡ଼ିଯିବଣି ମା' ପାଟି କରିବେ, କିରେ ଏବେ ଗାଧୋଇ ଯା—ଭାତ ବଢ଼ାହେଲାଣି ।.. ଉଚ୍ଛବା ତା ପାଇଁ ଭାତ ବାଢ଼ି ଦେଇ ନିଜେ ଖାଇବସେ, ରଙ୍କ ଖାଇ ବସୁ ବସୁ ଦିନ ଦିନଟା ।

ବେଳେ ବେଳେ ଭାବେ ରଙ୍କ ନ ଥିଲେ ଏ ଘର ଚଳନ୍ତା କିପରି ସେତେବେଳେ ମନଟା ତା ଉପରେ ଅତ୍ୟଧିକ ପ୍ରସନ୍ନ ହୋଇଯାଏ, ଭାବିଯାଏ ଲୋକଟା ତ ନିଜ ପରିବାର ଭିତରେ ଗୋଟାଏ ବଡ଼ ମଣିଷ । ଆପତ୍ତି ନାହିଁ, ଅଭିଯୋଗ ନାହିଁ, ରାତିଦିନ ଖଟି-

ଗ୍ଲୁଲଛୁ । ମୁହଁରେ କଥା ନାହିଁ, ପ୍ରଗ୍ଭର ନାହିଁ । ତା କାମ ବାଛୁଦେବାକୁ ବା ବରକ୍ତ ହେବାକୁ କାହାରକୁ ଥରେ ହେଲେ ସେ ସୁଯୋଗ ଦେଉନାହିଁ । ଆତ୍ମ-ସମ୍ମାନ ଜ୍ଞାନ ଯଥେଷ୍ଟ ଅଛୁ ଲୋକଟାର । ଏହିଭଳି ନୀରବ କର୍ମୀ ଯଦି ପ୍ରତ୍ୟେକ କ୍ଷେତ୍ରରେ ମିଳନ୍ତେ ତା ହେଲେ ଦେଶଟା···

ହଠାତ୍ ଚନ୍ତାସ୍ରୋତରେ ବାଧା ପଡ଼ିଲା । ଗୃହିଣୀ କହୁଛନ୍ତି—"ତୁମେ ଏଇଠି ବସିଛ—ମୁଁ ସିଆଡ଼େ ଖୋଜୁହେଉଚୁ । ଆଜି କଣ ଖିଆପିଆ ହେବ ନାହିଁ କି ? ରାତି ତ ବହୁତ ହେଲାଣି ।" ପଗ୍ଭରିଲି—"ରଙ୍କ ଖାଇଲାଣି ?" ନା, ଗୃହିଣୀଙ୍କ କଣ୍ଠରେ ପୂର୍ବର ଉତ୍ତାପ ନାହିଁ—ଲୋକଟା ତା ହେଲେ ଦିନ ତମାମ ଉପାସ ରହିଲା ? "ମୁଁ ତ ଡାକି ଡାକି ଆସିଲିଣି, ତୁମେ ଏଥର ଚେଷ୍ଟାକରି ଦେଖ ।" ଉଠି ଗଲି । ରଙ୍କ ଘର ଅନ୍ଧାର— କବାଟ ଆଉଜା ହୋଇଛୁ, ଡାକିଲି "ରଙ୍କ ?" "ଆଜ୍ଞା !" "କରେ ଖାଇବୁ ଆ । ଦିନସାରା ଖାଇନାହୁଁ ପରା"—ଉତ୍ତର ନାହିଁ । ଅନ୍ଧାର ଘରୁ ଶୁଭୁଛୁ ଚପା ନିଶ୍ୱାସ, କୋହ, ଅଳ୍ପ କବାଟ ଖୋଲି ଭିତରକୁ ଗ୍ଭହିଁଲି । ତକିଆରେ ମୁହଁ ଗୁଞ୍ଜି ରଙ୍କ ଫୁଲି ଫୁଲି କାନ୍ଦୁଛୁ । ପଛେ ପଛେ ଗୃହିଣୀ । "ଜଗୁଆ ମା' କଣ କରୁଛୁ ?" ପଗ୍ଭରିଲି । ସେ ଘରେ ଶୋଇଛୁ । ତା ମୁଣ୍ଡ ବୁଲାଉଛୁ—ସେ ବି ଖାଇବ ନାହିଁ । "ଆଉ ତୁମେ ? ମୋ କଥା ତୁମକୁ ଭାବିବାକୁ କିଏ କହୁଛୁ ? ଛୁଆପିଲା ନେଇ ଘର କରିଛୁ—ମୋ ପେଟକୁ ଏଥିରେ ଭାତ ଯିବ ନା ?" ଫୋନ୍ ଉଠାଇ ଥାନାକୁ ଡାକିଲି । ଥାନାବାବୁ ଦୁଃଖ ପ୍ରକାଶ କରି କହିଲେ—"କିଛି କ୍ଳୁ ମିଳୁନାହିଁ ସାର୍ । ତଥାପି ଚେଷ୍ଟା ଗ୍ଲୁଲଛୁ । ଷ୍ଟେରମାଲ ଯେଉଁମାନେ ରଖନ୍ତି, ସେମାନଙ୍କ ଉପରେ ନଜର ଅଛୁ । ଯତ୍ନ ଓ ଚେଷ୍ଟାର ଅଭାବ ନାହିଁ, ଯାହା କିଛି ସମ୍ଭବ ସବୁ କରାଯାଉଛୁ ଇତ୍ୟାଦି ଇତ୍ୟାଦି ।" ବିଛଣା ଲମ୍ବାଇ ଶୋଇପଡ଼ିଲି । ଗୃହିଣୀ ଜାଣନ୍ତି ଏ ପରିସ୍ଥିତିରେ ମୋତେ ଖୁଆଇବାକୁ ଚେଷ୍ଟା କରିବା ବୃଥା । ପାଖ ଘରେ ସେ ପିଲାଙ୍କୁ ନେଇ ଶୋଇଲେ । ଗଡ଼ପଡ଼ ହେଉ ହେଉ ଟିକେ ଛୁଇନିଦ ଲାଗିଯାଉଥିଲା ବୋଧହୁଏ । ହଠାତ୍ ନିଦ ଭାଙ୍ଗିଗଲା । ଧୀର ଚପା କଣ୍ଠରେ କିଏ ଡାକୁଛୁ—'ମା'—ମା !' ଏ ତ ରଙ୍କର ଡାକ । ସଙ୍ଗେ ସଙ୍ଗେ ଶୁଣିଲି ଗୃହିଣୀ କହୁଛନ୍ତି, "କିଏ ରଙ୍କ—କଣ କରେ ?" କିଛି ସମୟ ଚୁପ୍‌ଗ୍ଭପ୍—ଗୃହିଣୀ ପୁଣି ପଗ୍ଭରିଲେ—"କରେ କଣ କହୁଚୁ ? ଖାଇବୁ ଯା ତୋ ଭାତ ଅଲଗା କରି ରୋଷାଇଘରେ ରଖି ଦେଇଛୁ ।" "ମା ମୁଁ ଯାଉଛୁ ।" "କୁଆଡ଼େ ଯିବୁ ? ତୋ ମୁଣ୍ଡ ଖରାପ ହୋଇଗଲାଣି ନା କଣ ?" "ନା ନା, ମୁଁ ଆଉ ଗ୍ଭକିରି କରିବି ନାହିଁ—ରାତି ପାହିଲେ ମୁଁ ଗ୍ଲୁଲିଯିବି ।" "ହେଉ ଯିବୁ ତ ଯିବୁ, ସକାଳ ହେଉ, ବାବୁ ଉଠନ୍ତୁ । ତୋର ଦି ମାସର ଦରମା ହେଲାଣି; ଟଙ୍କା ପଇସା

ବୁଝିନେବୁ, ତା ପରେ ଫିନା ଯିବୁ ।" ରଙ୍କ କିଛି ସମୟ ଚୁପ୍ ରହି ଧୀରେ ଧୀରେ କହିଲା, "ମା ମୋର ଦରମା ଟଙ୍କା ଜଗୁଆ ମା'କୁ ଦେଇଦେବେ ।" ଗୃହିଣୀ ଚୁପ୍—ମୁଁ ବି ଚମକି ପଡ଼ିଲି । ତା ହେଲେ ରଙ୍କ କଣ ?

ରଙ୍କର ଶେଷ କଥା କାନରେ ବାଜିଲା । "ମା ! ମୁଁ ଜୁହାର ହେଉଛି—ବାବୁଙ୍କୁ ଜୁହାର ହେଉଛି । ମା—ମା ମୁଁ ଯାଉଛି ।" ଆଉ ସେ କହିପାରୁନାହିଁ । ସ୍ୱର ବିକୃତ ଶୁଭୁଛି—ଯେପରି ଅଜସ୍ର କାନ୍ଦୁଛି ଲୋକଟା ।

ଯାଉ, ଲୋକଟା କି ଭୟଙ୍କର ସତେ । ସମସ୍ତଙ୍କ ଆଖିରେ ଧୂଳି ଦେଇପାରେ—ଉଠିବି କି ? ଥାନାକୁ ଜଣାଇଦେବି କି ? ତୁରନ୍ତ ଆସି ଗିରଫଦାର କରି ନେଇ ଯାଆନ୍ତୁ; କିନ୍ତୁ ଉଠିପାରିଲି ନାହିଁ । ଆଳସ୍ୟ ନା ଆଉ କିଛି ? ମୁଣ୍ଡ ଭିତରେ କଣ ସବୁ ଯେପରି ଗୋଳମାଳ ହୋଇଯାଉଛି । ଆଚ୍ଛା ଥାଉ, ରାତି ପାଉ ।

ସକାଳେ ଡେରିରେ ନିଦ ଭାଙ୍ଗିଲା, ଉଠି ଶୁଣିଲି ରଙ୍କ କେହି ନ ଉଠୁଣୁ ଚାଲି ଯାଇଛି । ଆମ କିନିଷପତ୍ର କିଛି ନେଇ ନାହିଁ । ପାଟଣାରୁ ଯେଉଁ ନାଲି କମ୍ବଳଟା ତାକୁ ଆଣିଦେଇଥିଲି, ସେଟା ଭଙ୍ଗା ହୋଇ ଗୋଟାଏ କୋଣରେ ରଖାହୋଇଛି । ସାଙ୍ଗ ସାଥୀଏ କହିଲେ, ମୁଁ ନିପଟ ଓଲୁଟାଏ, ଜାଣି ଜାଣି ଚୋରଟାକୁ ହାତଛଡ଼ା କରିଦେଲି ।

"ଏଇଟା ଦୟା ନୁହେଁ ଯେ, ଦୟା ଅପପ୍ରୟୋଗଦ୍ୱାରା ପାପାତ୍ମାଙ୍କୁ ଉତ୍ସାହିତ କରିବା ।"

ସବୁ ଶୁଣିଲି, ତଥାପି ମନରୁ ଗ୍ଲାନି ଦୂର ହେଲାନାହିଁ । ରଙ୍କର ସେଇ ଅସ୍ପଷ୍ଟ ଭଙ୍ଗା କଣ୍ଠ—"ମା, ମୁଁ ଯାଉଛି ।" ମଝିରେ ମଝିରେ ମୋର କାନରେ ବାଜିଉଠେ । ମୁଁ ଅନ୍ୟମନସ୍କ ହୋଇଯାଏ ।

ସବୁ ପୁଣି ପୂର୍ବପରି ଚାଲିଲା । ନୂଆ ଚାକର ଆସିଲା । ରଙ୍କର ଅଭାବ କ୍ରମେ କ୍ରମେ ଅଭ୍ୟାସ ହୋଇଗଲା । ଦିନ ଗଡ଼ିଚାଲିଲା ।

ପ୍ରାୟ ମାସେ ଖଣ୍ଡେ ପରେ । ଅଫିସରୁ ଫେରି ଦେଖେ ଘରଟା କିମିତି ଅଦ୍ଭୁତ ଭାବରେ ଚୁପ୍‌ଚାପ୍ । କେହି କୁଆଡ଼େ ଦେଖାଯାଉ ନାହାନ୍ତି । ଡ୍ରଇଁ ରୁମ୍ ପାର ହୋଇ ଭିତରକୁ ଆସି ଦେଖେ ଚେୟାରରେ ସ୍ତବ୍ଧ ହୋଇ ବସିଛନ୍ତି ଗୃହିଣୀ । ଗୋଡ଼ ପାଖରେ ଜଗୁଆ ମା' ଆଖିରେ ଲୁଗା ମାଡ଼ି କହିଁ କହିଁ ହୋଇ କାନ୍ଦୁଛି । ତଳେ ଥୁଆ ହୋଇଛି ଚନ୍ଦ୍ରହାର । ଗୃହିଣୀ ଉଠି ଦୀର୍ଘ ନିଶ୍ୱାସ ପକାଇ ଅତି ଅଳ୍ପ କେଇପଦ କଥାରେ ବୁଝାଇଦେଲେ ସମସ୍ତ ରହସ୍ୟ—ଢ ଅଢ଼େଇ ମାସ ତଳେ ଯେଉଁ ଦିନ ଆମ ଘରେ କଣ ଗୋଟାଏ ବଡ଼ ପର୍ବ, ବହୁତ ଲୋକ ଆସିଥାନ୍ତି ଖାଇବାକୁ, ବହୁତ ମାଇପେ ବି ।

ଜଗୁଆ ମା'ର ଝିଆରୀ ସେ ଦିନ ଆସିଥିଲା । ତା ଅଣ୍ଟା ଖାଲି ଦେଖି ଜଗୁଆ ମା' ଭରବରରେ ମା'ଙ୍କ କାନିରୁ ଚାବି ଖୋଲି ନେଇ ବାକ୍ସ ଖୋଲି ତା ଚନ୍ଦ୍ରହାର କାଢ଼ି ଝିଆରୀ ଅଣ୍ଟାରେ ପିନ୍ଧାଇ ଦେଇଥିଲି । ତା ପରଦିନ ଝିଆରୀ ଗଲା ଜ୍ୱାଇଁଙ୍କ ପାଖରେ ପୁରୀ । ଜ୍ୱାଇଁ ସେଠି କାମ କରନ୍ତି । କାଲି ରାତିରେ ସେ ଫେରି ଆସିଛି । ଆଜି ଆସିଥିଲି ପିଉସୀକୁ ଦେଖିବାକୁ । ଚନ୍ଦ୍ରହାର ଫେରାଇ ଦେଇଯାଇଛି । ଜଗୁଆ ମା' ବାଉଳୀଟାଏ । ତା ମନରେ କିଛି ରହେନାହିଁ । "ରଙ୍କର ଦି ମାସର ଦରମା ?" ଗୃହିଣୀ ଜଣାଇଲେ ଯେ ତାର ଦ୍ୱିଗୁଣ ଟଙ୍କା ରଙ୍କର ଘର ଠିକଣାରେ ସେ ଆଜି ମନିଅର୍ଡ଼ର କରି ପଠାଇ ଦେଇଛନ୍ତି । ପଚାରିଲି, "ସେ କଣ ତା ଗାଁରେ ଥିବ ଏଇକ୍ଷଣି ?"

ଭଙ୍ଗା ଗଳାରେ ଗୃହିଣୀ କହିଲେ, "ମୁଁ ଜାଣେ, ସେ ଘରେ ଥିବ । ସେ ଆଉ କେଉଁଠି ଚାକିରି କରିବ ନାହିଁ । ମୋତେ ସେ କହିଯାଇଛି ।"

# ଅରଣ୍ୟ ଓ ଉପବନ

## କୃଷ୍ଣପ୍ରସାଦ ମିଶ୍ର

ରାସ୍ତାଟା ଉପରେ ଆଖି । ଆଖି ଦୁଇପଟେ ବନାନୀ । ଘଣ୍ଟାକୁ ଅଶୀ କିଲୋମିଟର ବେଗରେ ପଛରେ ପଡ଼ିଯାଉଛନ୍ତି ଦୁଇ ପାଖର ଶାଳ, ପିଆଶାଳ, ସାଗୁଆନର ବନାନୀ; କିନ୍ତୁ ସେହି ଆରଣ୍ୟକ ଦ୍ରୁମଗୁଡ଼ିକୁ ଆହୁରି ଶୀଘ୍ର ପଛରେ ପକାଇପାରୁଥିବା ଟ୍ରକ୍‌ଟିଏ ପଛରୁ ଆସୁଛି । ଟ୍ରକ୍ ଆଗରେ ଅଭୟହସ୍ତ ଗୁରୁନାନକଙ୍କ ଛବି ଝୁଲୁଥିଲେ ବି ପଞ୍ଜାବୀ ଡ୍ରାଇଭରଙ୍କୁ ବିଶ୍ୱାସ ନାହିଁ, ହୋସ୍‌ରେ ନ ଥିବା ଅବସ୍ଥାରେଇ ସେମାନେ ଡ୍ରାଇଭିଂ କରନ୍ତି । ଯୋଗେଶ ଗାଡ଼ିଟାକୁ ସ୍ଲୋ କରି ଟ୍ରକ୍‌ଟିକୁ ରାସ୍ତା ଛାଡ଼ିଦେଲା । କାଠ ବୋଝେଇ ଟ୍ରକ୍‌ଟି ବଣ୍ଡିଲ୍ ଭିତରୁ ରିବନ୍ ଖୋଲିଯିବା ପରି ରାସ୍ତାକୁ ଆମ୍ବାସଡ଼ର ଗାଡ଼ି ଆଗରେ ଖୋଲି ଖୋଲି ଚାଲିଯିବା ପରେ ଆମ୍ବାସଡ଼ର ପୁଣି ଅଶୀକୁ ଆସିଲା । ବିଶାଳ ଟ୍ରକ୍‌ଟା ଦୂରରେ ଛୋଟ ହୋଇଆସୁଥିବା ଦେଖି ଦେଖି ଯୋଗେଶ ରତ୍ନାଙ୍କୁ କହିଲା—"ରତ୍ନା ! ତୁମେ ଟିକିଏ ଆଜିକାଲି ମୋଟା ଦିଶୁଛ । ତୁମ ବ୍ଲାଉଜଗୁଡ଼ାକ କେତେ ଟାଇଟ୍ ହେଉଛି ଲକ୍ଷ୍ୟ କରୁଛଟି ? ତୁମର କେହି ସାଙ୍ଗ ତୁମକୁ ଏ ବିଷୟରେ କିଛି କହୁନାହାନ୍ତି ?"

ବାମପଟର ଝାଡ଼ ଜଙ୍ଗଲକୁ ଚାହିଁ ଚାହିଁ ରତ୍ନା କହିଲେ—"ମୁଁ କଣ କରିବି କହ ? ପୁଅ ଜନ୍ମହେବା ପରେ ପରେ ଡାଏଟିଂ କରିଆନ୍ତି ନା କ'ଣ ? ପ୍ରସବ ପରେ ପରେ ସ୍ତ୍ରୀମାନଙ୍କର କ୍ଷୁଧା ବଢ଼ିଯାଏ । ତହିଁକି ବ୍ରେଷ୍ଟ ଫିଡ଼ିଂ କରିବାକୁ ହେଲେ ତୁମକୁ ତ ଛେନା, ଦୁଧ, ଦହି, ମାଛ ମାଂସ କିଛି ଗୁଡ଼ାଏ ଖାଇବାକୁ ହେବ, ନ ହେଲେ ସ୍ତନରେ ଦୁଧ ଆସିବ କୁଆଡ଼ୁ ? ଆଉ ମଧ୍ୟ ମା ଡାଏଟିଂ ନ କଲେ ତା ଦୁଧରେ ପ୍ରୋଟିନ ଇତ୍ୟାଦି ଖାଦ୍ୟସାର ପର୍ଯ୍ୟାପ୍ତ ପରିମାଣରେ ରହିବ ବା କିପରି ?"

ରାସ୍ତାରେ କାଠ ମୁଣ୍ଡାଇ କୌଣସି ସଙ୍ଗୀତମୟ କବିତାର ଯତିପାତ ପରି ପାଦ ପକାଇ ଚାଲିଯାଉଥିବା ଯୁବତୀ ଝିଅଗୁଡ଼ିକର ଉନ୍ନତ ସୁସ୍ପଷ୍ଟ ସ୍ତନଗୁଡ଼ିକୁ ଚାହିଁ ଯୋଗେଶ କହିଲା—"ତୁମକୁ ମୁଁ ବ୍ରେଷ୍ଟଫିଡ଼ିଂ କରିବା ପାଇଁ ମନାକରିଥିଲି । ଡାକ୍ତରାଣୀ ଲାବଣ୍ୟ ଦେବୀ ମଧ୍ୟ ଆସି ମୋ କଥାର ସତ୍ୟତା ଓ ଯଥାର୍ଥତା ନେଇ ତୁମ ପାଖରେ ଯୁକ୍ତି କରିଥିଲେ; ତଥାପି ତୁମେ ମାନୁନାହଁ । ତୁମେ ଓ ମୁଁ ବେଶ୍ ଅଛେ । ମଝିରେ ପିଲାଟି ଯାହା ଦୁର୍ବଳ ହୋଇ

ବଢ଼ୁଛୁ । ତୁମବାଟେ ପ୍ରୋଟିନ୍‌ଗୁଡ଼ାକ ପୁଅ ପାଖକୁ ନ ଆସି ତୁମର ଦେହରେଇ ରହିଯାଉଥିବା ପରି ମୋର ମନେହେଉଛି ।"

ରତ୍ନା ତୁଲ୍ ପଛ ପଛକୁ ଚାହିଁଲେ । ପଛ ସିଟ୍‌ରେ ପୁଅ ନଯୋଡ଼ ନନ୍ଦରେ ଶୋଇଥିଲା । ସତରେ ପିଲାଟା ବଡ଼ ଦୁର୍ବଳ ହୋଇ ବଢ଼ୁଛି । ବଡ଼ ରକେଟ୍ ! ରତ୍ନା ଦୀର୍ଘ ନିଶ୍ୱାସ ପକାଇ ଆଗକୁ ଚାହିଁଲେ ।

—ମୁଁ କହୁଛି, ବେବି ଫୁଡ୍ ଦିଅ, ବଟଲ୍ ଫିଡ଼ିଂ କର । ଦେଖିବ, ପିଲାଟାର ସ୍ୱାସ୍ଥ୍ୟ କିପରି ହୋଇଯିବ । ମୁଁ ଦେଖିଛି ଜଣେ ବନ୍ଧୁଙ୍କର ପିଲାକୁ । ବେବି ମିଲ୍‌କ ଫୁଡ୍ ଆଶୀର୍ବାଦରେ ସେ ପୁଅ କଣ ହୋଇଛି !

—ପିଲା ଜଞ୍ଜାଳ କିନ୍ତୁ ବଡ଼ ଜଞ୍ଜାଳ ସତେ !

ବହୁ ମୂଲ୍ୟବାନ୍ ଶାଢ଼ୀରେ ସୁମନ୍ତ ପରିପ୍ରା କରି ଦେଇଥିବା, ବାନ୍ତ କରି ଦେଇଥିବା ଓ ରାତି ଅନିଦ୍ରାକୁ ମନେପକାଇ ରତ୍ନା କହିଲେ ।

—ଦେଖ, ଆମର ଏଇଟା ପ୍ରଥମ ପିଲା; ଆଉ ଦଶବର୍ଷ ଭିତରେ ତୁମର ଦ୍ୱିତୀୟ ସନ୍ତାନ ହେଉନାହିଁ । ତୁମର ସ୍ୱାସ୍ଥ୍ୟ, ସୌନ୍ଦର୍ଯ୍ୟ, ମାନସିକ ଶାନ୍ତି ଓ ମୋର କାର୍ଯ୍ୟରେ ବ୍ୟସ୍ତତା—ସବୁ ଦୃଷ୍ଟିରୁ ଆମେ ଆଉ ସନ୍ତାନ ଏଇଲେ ହେବାକୁ ଦେବାନାହିଁ; କିନ୍ତୁ ପ୍ଲିଜ୍—ଏଇ ଗୋଟିକୁ ଜଞ୍ଜାଳ ବୋଲି ନୁହଁ, ସମ୍ପାଳ ବୋଲି ଭାବି ଏହାର ଲାଳନ-ପାଳନ କର ।

ଆମ୍ବାସଡ଼ର୍ ଦ୍ରୁତ ଗତିରେ ଚାଲିଥାଏ । ଦୁଇ ପାଖରେ ଭୟାନକ ଜଙ୍ଗଲ । ରତ୍ନା ଜଙ୍ଗଲର ନଗ୍ନ ସୌନ୍ଦର୍ଯ୍ୟଦ୍ୱାରା ଯେପରି ହିପ୍ନୋଟାଇଜଡ଼୍ ହୋଇଯାଇଥାଆନ୍ତି । ଯୋଗେଶ୍ ହଠାତ୍ ରତ୍ନାଙ୍କୁ ତା ପାଖକୁ ଲାଗି ଆସିବାକୁ କହିଲା । ରତ୍ନା ଯୋଗେଶ କଥାରେ ବିରକ୍ତ ହେଲେ ମଧ୍ୟ କଥା ମାନି ତା ପାଖରୁ ଲାଗିଆସି ତା କୋଳରେ ହାତ ରଖିଲେ ।

—ଜଙ୍ଗଲ ଭିତରେ ଗଛ ଆଉ ଲତା ଅଲଗା ହୋଇ ରହନ୍ତିନି, ରତ୍ନା !

ସିଧା ରାସ୍ତା ଓ ଆଗରେ କି ପଛରେ ଟ୍ରାଫିକ୍ ନ ଆସିଥିବା ଦେଖି ଯୋଗେଶ ରତ୍ନାଙ୍କୁ ଟାଣି ନେଇ ଚୁମା ଦେଲା । ଗୋଟିଏ ହାତ ଥାଏ ଷ୍ଟିଅରିଂ ଉପରେ । ରତ୍ନା ଖୁସିରେ ହସିଲେ । ଯୋଗେଶ ତାଙ୍କ ଦେହରୁ ହାତଟି ଖସାଇ ନେଇ ଷ୍ଟିଅରିଂ ଉପରେ ରଖି ଆଗ ମୋଡ଼ ପାଇଁ ପ୍ରସ୍ତୁତ ହୋଇଗଲା । ରତ୍ନା ମୋଡ଼ରେ ତା ଦେହରେ ଲଦି ହୋଇଗିବା ବେଳେ ସେ କହିଲା—ମୁଁ ତୁମକୁ ସବୁବେଳେ ସୁଖୀ ରଖିବାକୁ ଚାହେଁ ରତ୍ନା !

ତା'ର କଥା ସରି ନ ଥିବ, ଜଙ୍ଗଲ ଭିତରୁ ଟାଙ୍ଗିଆଟିଏ ଧରି ଯୁବକଟିଏ ରାସ୍ତା

ଉପରକୁ ଉଠିଲା । କ୍ଷଣକ ପାଇଁ ଯୋଗେଶ ସହିତ ତା'ର ଆଖି ମିଳିଗଲା; ପରେ ପରେ ଉଭୟଙ୍କ ଆଖି ଆଗରେ ଗଛଲତା, ଜଙ୍ଗଲ, ପାହାଡ଼ । ଦର୍ପଣରେ ଦେଖିବାକୁ ଚେଷ୍ଟାକଲା ଯୋଗେଶ । ପଛରେ ସେ ଯୁବତୀ ରହିଗଲାଣି; କିନ୍ତୁ ଯୁବତୀ ସମେତ ପଛ ଆଡ଼ର ସମସ୍ତ ସଂସାର ତା ପାଇଁ ଦୋହଲୁଥିଲା ଯେପରି । ସେ ଅନ୍ୟମନସ୍କ ହୋଇଗଲା । ଏ ସ୍ତ୍ରୀଲୋକଗୁଡ଼ାକ ସମସ୍ତେ ସମାନ ହରିଣୀ ନା କଣ ? ଏକାପରି ଦେହ, ଏକାପରି ମୁହଁ, ଏକାପରି ସ୍ୱାସ୍ଥ୍ୟ ! ରତ୍ନା କିନ୍ତୁ ଯୋଗେଶର ଅନ୍ୟମନସ୍କତା ଆଡ଼କୁ ଧ୍ୟାନ ଦେଇ ନ ଥିଲେ । ହଠାତ୍ ଖରାଟା ଯୋଗେଶ ଆଖିକୁ କାଟିବାକୁ ଲାଗିଲା । ସେ ଲକରର ଖୋଲା ତଳ ଆକରୁ ନିଜ ଗଗଲସ୍‌ଟିକୁ କାଢ଼ି ପିନ୍ଧିଲା, ରତ୍ନାଙ୍କଟା ବାହାର କରି ରତ୍ନାଙ୍କୁ ଦେଇ କହିଲା—ସୂର୍ଯ୍ୟ ଉପରକୁ ଉଠିଲେଣି । ଏଥର ଖରା ବଢ଼ିବ, ତୁମେ ତୁମର ଚଷମା ପିନ୍ଧପକାଅ ।

—କିନ୍ତୁ ମୋତେ ଖାଲି ଆଖିରେ ଜଙ୍ଗଲର ରହସ୍ୟମୟ ସୌନ୍ଦର୍ଯ୍ୟ ଦେଖିବାକୁ ଭଲ ଲାଗୁଛି ।

—କିନ୍ତୁ ତୁମର ଲମ୍ବା ସୁନ୍ଦର ଆଖି ଯୋଡ଼ାକ ଜଙ୍ଗଲଠୁ ମଧ୍ୟ ବେଶି ରହସ୍ୟମୟ ଓ ସୁନ୍ଦର ରତ୍ନା ! ସେହିମାନଙ୍କ କଥା ମୋତେ ବିଚାର କରିବାକୁ ହେବ । ସେମାନେ ଖରାଧାସରେ କଷ୍ଟ ପାଇବେ, ତାହା ମୁଁ ସହିବି କିପରି ? ନିଅ, ଗଗଲସ୍ ପିନ୍ଧ ପକାଅ ।

ରତ୍ନା ତାଙ୍କ ଗଗଲସ୍ ପିନ୍ଧି ପୁଣି ଜଙ୍ଗଲ ଦେଖିବାକୁ ଲାଗିଲେ । କିଛିକ୍ଷଣ ତଳେ ଟାଙ୍ଗିଆ ଧରି ଉଠିଆସୁଥିବା ସେହି ଯୁବତୀଟି କଥା ଯୋଗେଶର ମନେପଡ଼ିଗଲା; କିନ୍ତୁ ତା କଥା ଭୁଲିଥିଲା ସେ କେତେବେଳେ ? କେବଳ କିଛିକ୍ଷଣ ପାଇଁ ଯୁବତୀଟିକୁ ମନକୁ ନ ଆଣିବାକୁ ସେ ଯାହା ଚେଷ୍ଟା କରିଥିଲା ।

କାଲି ରାତିର ପଲଉ, କୁକୁଡ଼ା ଭୋଜି ପରେ ସେ ଡାକବଂଗଳାକୁ ଫେରିଆସି ରତ୍ନା ଓ ସୁମନ୍ତ୍ରର ଶୋଇବା ବନ୍ଦୋବସ୍ତ କରିଦେଇ ଜଙ୍ଗଲ ଇନ୍‌ସପେକ୍‌ସନ୍ ପାଇଁ ପୁଣି ବାହାରି ଯାଇଥିଲା । ଜଙ୍ଗଲ ଇନ୍‌ସପେକ୍‌ସନ୍ ତ ଯେପରି ହେଲେ କରିବାକୁ ହେବ । ସେଇଥି-ପାଇଁ ତ ସେ ଏତେଦୂର, ଏତେ ପେଟ୍ରୋଲ ପୋଡ଼ି ଆସିଥିଲା । ସାଥିରେ ଥିଲା ପୁରୁଣା ଚପରାସୀ ଦଣ୍ଡାସୀ । ଆଉ ସେହି ଚପରାସୀଟି ଠିକ ସେହି ଟାଙ୍ଗିଆ ଧରି ଉଠିଆସୁଥିବା ସ୍ତ୍ରୀଲୋକଟି ପରି ଯୁବତୀଟିଏକୁ ଆଣି କୁଡ଼ିଆରେ ପୁରାଇ ଦେଇଥିଲା, ଜଙ୍ଗଲ ଭିତରେ କୁଡ଼ିଆଟିରେ ସେ ବିଶ୍ରାମ ନେଉଥିବାବେଳେ । ପ୍ରତିଥର ସେ ସେହି ଜଙ୍ଗଲ ଆଡ଼େ ଇନ୍‌ସପେକ୍‌ସନ ପାଇଁ ଆସିଲେ, ଦଣ୍ଡାସୀ ସେହି କଥା କରେ । ଏଣିକି, ସବୁଥର ବଂଗଳାରେଇ ଏହି କଥା ହୋଇଥାଏ । ଏଥରକ ରତ୍ନା ଓ ସୁମନ୍ତ୍ର ଆସିଯାଇଥିବାରୁ ବଂଗଳାଠୁ କିଛି ଦୂରରେ ଥିବା କୁଡ଼ିଆ ଘରଟିକୁ ଦଣ୍ଡାସୀକୁ ସଫାସୁତୁରା କରିବାକୁ

ପଡ଼ିଥିଲା । ଦିନବେଳେଇ ସୁବିଧା ଦେଖି ଯୋଗେଶକୁ କୁଡ଼ିଆ କଥା କହି-ଦେଇଥିଲା ।

ଜଙ୍ଗଲର ସାନ୍ଦ୍ରତା ଟିକିଏ କମିଆସିବାକୁ ଲାଗିଥାଏ । ଗୁଡ଼ିଆଡ଼ କ୍ରମଶଃ ଜମି କଟା ହୋଇ ଫସଲ ପାଇଁ ପ୍ରସ୍ତୁତ ହୋଇ ରହିଛି; କିନ୍ତୁ ଏସବୁ ଅଞ୍ଚଳରେ ବର୍ଷା ହୁଏ ନାହିଁ, ତେଣୁ ଭଲ ଫସଲର ପ୍ରଶ୍ନ କେଉଁଠି ?

ସେହି ସ୍ତ୍ରୀଲୋକଟିକୁ ମନପୂରି ଭୋଗ କରିବା ପରେ କୁଡ଼ିଆ ଘରଟାରୁ ବାହାରି ଯିବାକୁ ଯୋଗେଶ ବସିଛି । ଯୁବତୀଟି ତା ହାତଟିକୁ ଟାଣିଧରି ପଚାରିଲା—ବାବୁ, ତୁ କୋଉଥରକ ହେଲେ ତ ମୋତେ କିଛି ଦେଉନୁ; ମୋ ପିଲାପିଲି ଚଳିବେ କେମିତି ? ତୋ ପିଲାପିଲି ଚଳିବେ କେମିତି ?

ଯୋଗେଶ କିଛି ବୁଝି ନ ପାରି ସ୍ତମ୍ଭୀଭୂତ ହୋଇ ଠିଆହୋଇଗଲା ସ୍ତ୍ରୀଲୋକଟିର କଥା ଶୁଣି । କୁଡ଼ିଆ ଘରଟାରେ ଡିବିଟାଏ ଜଳୁଥାଏ ଯାହା, ଜଙ୍ଗଲର ଅନ୍ଧକାର ସେହି ଡିବି ଆଲୁଅକୁ ଉପହାସ କରି କେବଳ ନିଜକୁଇ ଦେଖାଇବା ଛଡ଼ା ଆଉ କିଛି ଦେଖାଇ ଦେବାକୁ ଅନୁମତି ଦେଉ ନ ଥାନ୍ତି ଯେପରି । ଯୋଗେଶ ଯୁବତୀଟି ଆଡ଼କୁ ଚାହିଁଲା । ପୁରା ଲଙ୍ଗଳା, କଳା ସ୍ତ୍ରୀ ଲୋକଟି ତା ପାଖରେ ସିଧା ହୋଇ, କିଛି ସଙ୍କୋଚ ନ ରଖି, ସେହିପରି ଠିଆହୋଇଥାଏ । ତା'ର ଚ୍ରେଟିଆ କପଡ଼ାଟା କିଛି ଦୂରରେ ତଳେ ପଡ଼ିଥାଏ ମେଞ୍ଚାଏ ଅଙ୍ଗାର ପରି । ଭଲକରି ଦେଖିବା ପାଇଁ ଟର୍ଚ୍ଚ ଲାଇଟଟାକୁ ତା ମୁହଁକୁ ଦେଖାଇ ଯୋଗେଶ ଟିପିଦେଲା । ଟର୍ଚ୍ଚ ଆଲୁଅରେ ସେ ଆଖି ବନ୍ଦ କରିଦେଲା । ଯୋଗେଶ ତା ମୁହଁକୁ ତନ୍ନତନ୍ନ କରି ଦେଖି ଆଲୁଅ ଲିଭାଇ ଦେଇ ପଚାରିଲା—କେଉଁ ଥରକ, କି କଥା ତୁ କହୁଚୁ ? କାହା ପିଲ ?

—ବାବୁ, ତୋର ପିଲା କଥା କହୁଛୁ । ତୁ ତ ଯେତେଥର ଆସିଚୁ, ସେତେଥର ମୁଁ ତୋ ପାଖକୁ ଆସିଛୁ । ଡିଙ୍କି ଦେବେ, ବଗ ଦେବେ, କହି ଦଣ୍ଡାସୀ ମୋତେ ସବୁଥର ଟାଣିଆଣୁଛି । ଆଉ କାହାର ପିଲା କଥା କହିବ ? ମୋ ସ୍ୱାମୀ ସିନା ଜଣାପାଣି ଯୋଗୁଁ କିଛି ଜାଣିପାରୁନି, ହେଲେ ସେ ପିଲାଗୁଡ଼ାକ ଯେତେବେଳେ ତୋ ପିଲା, ସେମାନେ ଭିକ ମାଗି ଚଳିବା ଠିକ୍ ହେବ କି ?

କୁଡ଼ିଆ ଦୁଆରକୁ ଜୋର୍‌ରେ ଠେଲି ଦେଇ ସେହି ସମୟରେ ଦଣ୍ଡାସୀ ପଶିଗଲା । ପବନରେ ଡିବିଟା ଲିଭିଗଲା ସେତେବେଳେ । ଦଣ୍ଡାସୀ ବାହାରେ ଠିଆ ହୋଇ ଯୋଗେଶକୁ ଅପେକ୍ଷା କରୁଥିଲା, ସେମାନଙ୍କ କଥା ଶୁଣୁଥିଲା । ସେହି ସ୍ତ୍ରୀଲୋକର କଥା ଯେପରି ସେ ଆଉ ସହିପାରିଲା ନାହିଁ । ବାବୁ ରାଗିଲେ ବଣର ହିଁଙ୍କାସ ରାବ ପିଆଶାଳ ଗଣ୍ଡି ଉପରେ ପଡ଼ୁଥିବା କୁରାଢ଼ୀ ଚୋଟ ପରି ଶୁଣାଯିବାକୁ କେତେ ସମୟ ଲାଗିବ ?

ଦଣ୍ଡାସୀ ହାକ ଲାଭ ବୁଝି ପାରୁଥିବା ଲୋକ ।

—ବସ୍ତାକୁ ମାଇପି, କଣ ମିଛ କହୁଛୁ ବେ ?

ସେ କୁଢ଼ଆ ଭିତରେ ପଶି ତା'ର ବାହାକୁ ଝିଙ୍କାଇ ପକାଇ ପଚାରିଲା—କଣ ମିଛ କହୁଛୁ ରୁ ? ଶଳା, କେତେ ଲୋକଙ୍କ ପାଖରେ ଶୋଉଥିବୁ, ଗେରସ୍ତ ତୋତେ କେତେ ଲୋକଙ୍କ ପାଖକୁ ପଠାଉଥିବ, କହୁଛୁ କଣ ନା ବାବୁଙ୍କ ପିଲା ! ଏଠାରେ ମିଛ କହି ବାବୁଙ୍କୁ ହଇରାଣ କରିବାକୁ ବସିଛୁ ? ଚାଲ, ତୋ ଗେରସ୍ତ ପାଖକୁ ।

ସ୍ତ୍ରୀଲୋକଟି ଦଣ୍ଡାସୀ କଥାରେ ପୁରା ଡରିଗଲା ଯେପରି । ସେ ଅନ୍ଧାରରେ କେତେବେଳେ ତା କନ୍ଥାଟା ଦେହରେ ଗୁଡ଼ାଇ ପକାଇଥିଲା ।

କିନ୍ତୁ ମୋର ବାକି ପଇସା···

ଚାଲ ବେ, ମୁଁ ତୋତେ ଦେବି ତୋର ବାକି ପଇସା···ମୁଁ ତ ତୋତେ କହିଥିଲି ସବୁ ଦେବି ବୋଲି । ବାବୁଙ୍କୁ ମାଗିବାକୁ ତୋତେ କିଏ କହିଲା ?

ସେ କଥାର ମଧ୍ୟ ପ୍ରତିବାଦ ନ କରି ଠିଆ ହୋଇ ରହିଥିବା ସ୍ତ୍ରୀଲୋକଟି ହାତରେ ଯୋଗେଶ ପାଞ୍ଚ ଟଙ୍କିଆ ନୋଟଟିଏ ଦେଇ ଧୀରେ କହିଲା—ହୁସିଆରରେ ରଖିବୁ । ପାଞ୍ଚଟଙ୍କା ଦେଲି ।

ଦଣ୍ଡାସୀ ପ୍ରବଞ୍ଚିତଟିକୁ ତାପରେ ଅନ୍ଧାରରେ ଝିଙ୍କି ଝିଙ୍କି ନେଇଗଲା ।

କଣେଇ ଚାହିଁଲା ଯୋଗେଶ ରତ୍ନାଙ୍କ ଆଡ଼େ; କିଛି ଶୁଣି ପାରି ନାହାନ୍ତି ତ ରତ୍ନା । ଭାବୁ ଭାବୁ ସେ ବଡ଼ପାଟିରେ କିଛି କହିପକାଇ ନାହିଁ ତ ? ପବନରେ ରତ୍ନାଙ୍କ ଅଳକାଗୁଡ଼ିକ ଫୁରୁଫୁରୁ ଉଡ଼ୁଥାଏ । ସେ ଢୁଳଉଥାନ୍ତି । ଅଳକାଗୁଡ଼ିକୁ ସଜାଡ଼ି ଦେବାକୁ ଇଚ୍ଛା ହେଲା ଯୋଗେଶର । ସେହି ଗୋରି ଚକଚକ ସୁନ୍ଦରୀ ସ୍ତ୍ରୀଟିକୁ ସତରେ ସେ କେତେ ଭଲ ପାଉନାହିଁ !

ଘଣ୍ଟା ଦେଖିଲା ଯୋଗେଶ । ଦଶଟା ବାଜିବାକୁ ଆଉରି ପଇଁଚାଳିଶ ମିନିଟ ବାକି । ଦଶଟା ବାଜିଲେ ସେ ରତ୍ନା ଓ ସୁମନ୍ତକୁ ଉଠାଇବ । ଗାଡ଼ିକୁ ରାସ୍ତା କଡ଼ରେ ରଖି ସମସ୍ତେ ମିଶି ବ୍ରେକଫାଷ୍ଟ କରିବେ । ରାସ୍ତାକଡ଼, ଜଙ୍ଗଲ ଦାଢ଼, ଭାରି ମଜା ହେବ । ସବୁ ବୋଧେ ରେଡ଼ି ହୋଇ ମଟର ପଛଆଡ଼େ ଥୁଆ ହୋଇଛି । ଯାହା ଚା' ଆଣିବାକୁ ସେମାନେ ଭୁଲିଯାଇଛନ୍ତି; କିନ୍ତୁ କିଛି ଅସୁବିଧା ହେବନାହିଁ । ତିନଖଣ୍ଡ ପଥର ପକାଇ, କେଟ୍‌ଲି ରଖି, ଶୁଖିଲା କାଠ ପତରରେ ନିଆଁ ଲଗାଇଦେଲେ ପାଣି ଗରମ ହେଲା; ବରଂ ବ୍ରେକ୍‌ଫାଷ୍ଟ ସହିତ ସେପରି ଚା' କରି ପିଇଲେ ବେଶି ମଜା ଲାଗିବ । ରତ୍ନା କଥାଟିକୁ ବହୁଦିନ ପାଇଁ ମନେରଖିବେ ।

ଯୋଗେଶର ଧୂଳି-ଧୂସରିତ ଆମ୍ବାସଡ଼ର୍ ଘରେ ପହଞ୍ଚିବା ବେଳକୁ ପ୍ରାୟ ଘଣ୍ଟା

ବାଜଯାଇଥିଲା । ଯୋଗେଶ ଗାଡ଼ିଟାକୁ ଫାଟକ ପାଖରେ ରଖି ଅଳସ ଭାଙ୍ଗିବା ପାଇଁ ହାତ ଟେକୁ ଟେକୁ ଦେଖେ, ଫାଟକଟା ପୂରା ମେଲା । ବଗିଚା ଭିତରେ ଦୁଇଟା ଖୁବ୍ ହୃଷ୍ଟପୁଷ୍ଟ ହରଆନା ଗାଈ ତାର ମନ୍ଦାର ଗଛଗୁଡ଼ାକୁ ଲଣ୍ଡି କରିବାରେ ଲାଗିଛନ୍ତି । ସେ କାର୍ ଦୁଆର ଖୋଲି ପାଗଳଙ୍କ ପରି ବଗିଚା ଭିତରକୁ ଦଉଡ଼ିଗଲା । ଭୟଙ୍କର ଚିତ୍କାର କରି ସେ ତଳୁ ଇଟା ଖଣ୍ଡିମାନ ଉଠାଇ ସେହି ଗାଈ ଦୁଇଟି ଉପରକୁ ମାରିବାରେ ଲାଗିଗଲେ । ଆଶ୍ଚର୍ଯ୍ୟ କଥା, ତାର ପ୍ରଚଣ୍ଡ ରାଗ ସତ୍ତ୍ୱେ ଇଟାଗୁଡ଼ିକ ଗାଈ ଦୁଇଟି ଦେହରେ ନ ବାଜି ଏଣେତେଣେ ପଡ଼ୁଥାଏ ଓ ଗାଈ ଦୁଇଟି ନିର୍ଦ୍ଦିନ୍ତ ହୋଇ ଖାଇବାରେ ଲାଗିଥାନ୍ତି । ଯୋଗେଶ ଆଖି ଆଗରେ, ତାର ବର୍ଷ ବର୍ଷର ସାଧନା ନଷ୍ଟ ହୋଇଯାଉଥାଏ । ତାର ବହୁ ବର୍ଷର ହେପାଜତ, ବହୁ ଅର୍ଥର ବିନିଯୋଗରେ ଗଢ଼ି ଉଠିଥିବା, ବହୁ ବନ୍ଧୁ ପ୍ରତିବାସୀଙ୍କ ପ୍ରଶଂସା ପାଇଥିବା ବଗିଚାଟି ନଷ୍ଟ ହେବାରେ ଲାଗିଥାଏ । ସେ ଗାଈ ଦୁଇଟିର ନିକଟ ହୋଇଯିବା ପରେ କେତୋଟି ଇଟା ସେମାନଙ୍କ ଦେହରେ ବାଜିଲା ଓ ତା ପରେ ସେମାନେ ବଡ଼ ସମ୍ଭ୍ରମ ସହକାରେ ରାସ୍ତା ଉପରକୁ ଚାଲିଗଲେ । ହୃଷ୍ଟପୁଷ୍ଟ ଗାଈ ଦୁଇଟିକୁ ରାସ୍ତା ଉପରକୁ ଉଠିଆସୁଥିବା ଦେଖି ମଟର ଭିତରୁ ସୁମନ୍ତକୁ ଡାକେଇ ବାହାରି ଆସୁଥିବା ରତ୍ନା ପୁଣି ମଟରରେ ପଶିଯାଇ ଦୁଆର କିଳିଦେଲେ । ମଟର ଭିତରେ ବସି ସେ କାନ୍ଦଲ ସ୍ୱରରେ କହିବାରେ ଲାଗିଥାନ୍ତି—କିଏ ସେ ବଦମାସ୍ ଫାଟକଟା ମେଲାଇଦେଇଥିଲା, କହିଲ ? କାହାର ଦେହ ସହିଲାନ ? କୁଆଡ଼େ ସେ ପୂଜାରୀ ଗଲା, କୁଆଡ଼େ ଗଲା ସେ ପିଅନ । ତୁମ୍ଭେ ତ ଶୋଇ ପଡ଼ିଥିବେ, ବଗିଚା ଉଜୁଡ଼ିଗଲେ ସେମାନଙ୍କର କ'ଣ ଅଛି । ଦରମା ଗଣ୍ଡିକ ସେମାନଙ୍କୁ ମିଳୁଥିଲେ ହେଲା । ମଣିଷ ଚାକରବାକରଙ୍କୁ ବିଶ୍ୱାସ କରି ଯାହା ଘର ଛାଡ଼ିଯାଏ !

ଯୋଗେଶ ଉଦ୍‌ଭ୍ରାନ୍ତ ପରି ରତ୍ନାଙ୍କ ଆଡ଼କୁ ଚାହିଁ ଲାଣ୍ଡି ହେଇଯାଇଥିବା କୋନଫରସ୍ ଜାତୀୟ ତାର ଦୁର୍ଲ୍ଲଭ ଗଛଗୁଡ଼ିକୁ ଚାହିଁଲା । ମନ୍ଦାର ଗଛଗୁଡ଼ାକ ବି ଲାଣ୍ଡି ହୋଇ ଯାଇ ଥାଆନ୍ତି । କାଦୁଆ, ଡାଲିଆ ବେଡ୍‌ରେ ଗାଈ ଖୁରାଚିହ୍ନ, ଏଣେ-ତେଣେ ଗୋବର ।

× × × ×

ଯୋଗେଶ ଗାଧୋଇ-ପାଧୋଇ ବେଡ୍ ରୁମ୍‌ରେ ସେ ମାସର ଫେମିନାଟାକୁ କୋଳ ଉପରକୁ ନେଇ ବସିଥାଏ । ଘର ଭିତରଟା ଅନ୍ଧାର, ଟେବୁଲ୍ ଉପରେ ଯାହା ଟେବୁଲ ଲ୍ୟାମ୍ପଟା ଜଳୁଥାଏ । ଚଉକି ଉପରେ ଆଉଜି ଫେମିନାର ପୃଷ୍ଠାକୁ ଓଲଟାଉ ଓଲଟାଉ ଯୋଗେଶ ଟ୍ରାଞ୍ଜିଷ୍ଟରକୁ ଖୋଲି ଦେଇ କଟକ ଷ୍ଟେସନ ଦେଲା । ରତ୍ନା କବୁ ସେତେବେଳେ କଟକ ଷ୍ଟେସନରେ କିଛି ଗୀତ ନାହିଁ, ଖାଲି ଆଞ୍ଚଳିକ ସମ୍ବାଦ ବୋଲି

ଶେଯ ଉପରେ ଶୋଇ ସୁମନ୍ତଙ୍କୁ ସ୍ତନ ଦେଇ ଦେଇ ପ୍ରତିବାଦ କଲେ । ଆଞ୍ଚଳିକ ସମ୍ବାଦ ସେତେବେଳେ କହୁଥିଲା—ଓଡ଼ିଶାର ପଶ୍ଚିମାଞ୍ଚଳ ଜଙ୍ଗଲରେ ଅଭୂତପୂର୍ବ ଅଗ୍ନି ଯୋଗୁଁ ପ୍ରାୟ ଲକ୍ଷେ ଟଙ୍କାର ହେବ ବହୁ ମୂଲ୍ୟବାନ୍ ଶାଳ, ପିଆଶାଳ, ସାଗୁଆନ କାଠ ପୋଡ଼ି ନଷ୍ଟ ହୋଇଯାଇଛି । ଅଗ୍ନି ଲାଗିବାର କାରଣ ଜଣାପଡ଼ୁନାହିଁ; କିନ୍ତୁ ହାଇଓ୍ୱେ ଆଡ଼ୁ ଅଗ୍ନି ଆସିଥିଲା; କାରଣ ସେହି ପଟ ଜଙ୍ଗଲ ବେଶି ପୋଡ଼ି ହୋଇଯାଇଛି । ବର୍ଷା ହୋଇ ଯାଇ ପ୍ରବଳ ବେଗରେ ବ୍ୟାପିଯାଉଥିବା ଅଗ୍ନି ଲିଭି ଯାଇ ନ ଥିଲେ.....।

# ତୂଣୀର

## ଶାନ୍ତନୁକୁମାର ଆଚାର୍ଯ୍ୟ

ନାଃ, ତାକୁ ମାରିବାକୁଇ ହେବ ! ଖୁବ୍ ଅଥୟ କଲାଣି । ଖୁବ୍ ଦୁଃଖ ଦେଲାଣି । ଖୁବ୍ ପରୀକ୍ଷା କଲାଣି ମୋ ଧୈର୍ଯ୍ୟର । ଏଥର ତାକୁ ମାରିପକାଇବାକୁ ହେବ ।

ମୁଁ ଟେବୁଲ୍ ପାଖକୁ ଧାଇଁଗଲି । ଗୋଟାଏ କାଗଜ ଭିଡ଼ିଆଣି ଲେଖିବାକୁ ଆରମ୍ଭ କଲି—

**To H. E. The Governor......**

ସେଇଠି ମୁଁ ଟିକିଏ ଅଟକିଗଲି । ମୋର ଆଙ୍ଗୁଳିଗୁଡ଼ିକ ମୋର କାନ୍ଧ ପଛରେ ଝୁଲୁଥିବା ତୂଣୀରଟି ଭିତରୁ ବ୍ରହ୍ମାସ୍ତ୍ରଟିକୁ ଅଣ୍ଡାଳି ଆସ୍ତେ ଆସ୍ତେ ଟିକିଏ ବିକ୍ଷିପ୍ତ ହୋଇଗଲେ । ମୁଁ ଟିକିଏ ଚିନ୍ତାରେ ପଡ଼ିଲି । ହଠାତ୍ ବ୍ରହ୍ମାସ୍ତ୍ର ! କିଏ ଟିକିଏ ମୁରୁକେଇ ହସିଲା ମୋ ପଛପଟେ । ବିରକ୍ତ ହେଲି । ଏଥିମଧ୍ୟରେ ବ୍ରହ୍ମାସ୍ତ୍ରର ବ୍ରାହ୍ମ ମୁହୂର୍ତ୍ତଟି ବି ଛୁଟିଗଲା । ମୁଁ ମୋର ପୂର୍ବୋକ୍ତ ଧାଡ଼ିଟିକୁ କାଟିଦେଲି; କାରଣ ମୁଁ ତ ପ୍ରତିଶ୍ରୁତିବଦ୍ଧ ହୋଇ ନ ପାରେ । ତାପରେ ମୁଁ ପୁଣି ମନ୍ତ୍ର ଉଚ୍ଚାରଣ କରି ତୂଣୀରରେ ଅସ୍ତ୍ର ଠାବ କଲି—

ତା'ପରେ ଗୋଟିଏ ମୁହୂର୍ତ୍ତର କଥା ମୁଁ ସ୍ପଷ୍ଟ ଦେଖିପାରିଲି—ସେଇ ମୁହୂର୍ତ୍ତ ଶେଷ ନ ହେଉଣୁ କି ପ୍ରଳୟ ଘଟିଯିବ । କିପରି ଘଡ଼ଘଡ଼ ରଡ଼ି କରି ମେଦିନୀ କମ୍ପାଇ ମୋର ମନ୍ତ୍ରିତ ଶର ସୃଷ୍ଟି କରିବ ଏକ ଖଣ୍ଡପ୍ରଳୟ ଏବଂ ଆଖିପିଛୁଳାକ ମଧ୍ୟରେ କିପରି ସେ ଗ୍ରାସ କରିବ ଏଇ ମେଦିନୀରୁ ଏକଖଣ୍ଡ—ହୁଏତ ମୋର ପାଦତଳୁ ମଧ୍ୟ । ଶରବ୍ୟ ଓ ତା ଲଗାଏତ ଆହୁ କେତେ କାହାର ଶରବ୍ୟଙ୍କୁ ଟଳାଇ ନିର୍ମୂଳ କରି ଚାଲିଯିବ ସେ । ହୁଏତ ସେ ପ୍ରଳୟର ଫଳ ଭୋଗ କରିବା ପାଇଁ ମୁଁ ନିଜେ ବି ନ ଥାଇ ପାରେ । ଗୋଟିଏ ଲକ୍ଷ୍ୟ ହାସଲ କରିବାପାଇଁ ଏକଲକ୍ଷ ଲୋକଙ୍କୁ ଧ୍ୱଂସ କରିବା ବିବେଚିତ କାର୍ଯ୍ୟ ନୁହେଁ କିମ୍ବା ବୁଦ୍ଧିମାନ କାର୍ଯ୍ୟ ନୁହେଁ । ଗୋଟିଏ ବିଶଲ୍ୟକରଣୀ ପାଇଁ ସାରା ଗନ୍ଧମାଦନଟାକୁ ଟେକି ଆଣିବା ସମୟୋଚିତ ହୋଇପାରେ; କିନ୍ତୁ ବୈଜ୍ଞାନିକ ଚିନ୍ତାର ପରିପ୍ରେକ୍ଷୀ ଏ ନୁହେଁ ।

ତା'ପରେ ଆସିଲା ସେଇ ଅବଶ୍ୟମ୍ଭାବୀ ମୁହୂର୍ତ୍ତଟି—କଟାକଟି ପୁଣି ଲେଖାଲେଖି ।

**To The Chief Minister** ମାନରେ ଆସିଲେ ବିଭାଗୀୟ ମନ୍ତ୍ରୀ । ସେ ଗଲେ । ଆସିଲେ ଧାଡ଼ି ଧାଡ଼ି, ପାହାଚ ପାହାଚ, ଥାକ ଥାକ ହୋଇ ବିଭାଗୀୟ ଉଚ୍ଚ ହାକିମଗଣ । ଏମିତି ହଜାରେ କଣ୍ଟାକଣ୍ଟି ଆଉ ଯୋଡ଼ାଯୋଡ଼ି ଭିତରେ ମୁଁ କେବଳ ତଳକୁଇ ଗଡ଼ିବାକୁ ଲାଗିଲି ସତେ କି ସେ ଗଡ଼ିବାର ଅନ୍ତ ନ ଥିଲା । ପୁଣି ଦେଖିବାକୁ ଗଲେ ଥିଲା ବି । କାରଣ ଗଡ଼ି ଗଡ଼ି ଯାଇ ମୁଁ ଯେଉଁଠି ଅଟକିଲି, ସେଠି ଯାହାକୁ ମୁଁ ଆବିଷ୍କାର କଲି, ସେ ଆଉ କେହି ନୁହେଁ !—ସେ ହେଉଛି ସ୍ୱୟଂ "ମୁଁ" । ତା ତଳକୁ ଆଉ ଗଡ଼ିବାକୁ ରାହା ନାହିଁ ।

ସେଇଠି ପହଞ୍ଚିସାରି ଯେତେବେଳେ ମୁଁ ମତେ ଆବିଷ୍କାର କରେ, ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି ଯେ କେମିତି ଗୋଟାଏ ରାଗରେ ମୁଁ ଥରୁଛି । ଏ ରାଗକୁ ନିଅଣ୍ଟିରାଗ ବା **inert anger** ଛଡ଼ା ଆଉ କିଛି ଆଖ୍ୟା ମୁଁ ଦେଇପାରିଲି ନାହିଁ । ମୋର ସେଇ ଅବସ୍ଥାକୁ ମୁଁ ଯେତିକି ଯେତିକି ଆବିଷ୍କାର କଲି, ସେତିକି ଆହୁରି ବେଗରେ ମୁଁ ଥରିବାକୁ ଲାଗିଲି ଖାଲି । କାରଣ ଥରିବା ଛଡ଼ା ଆଉ ମୋର କିଛି କରିବାର ନ ଥିଲା । ମୋର ସବୁ କିଛି ନିଷ୍କ୍ରିୟ ପାଲଟି ଯାଇଥିଲା । ମୋର ଧନୁ, ମୋର ତୂଣୀର, ମୋର ବାହୁ, ମୋର ରଥ, ଆଉ ସର୍ବୋପରି ମୋର ରଥଚାଳକ (ବିବେକ) ସବୁ କିଛି ଅଥଚ ଠିକ୍ ଥିଲେ; କିନ୍ତୁ ମୁଁ ନିଷ୍କ୍ରିୟ ନିଃସହାୟ ଆଉ ଅବଶ । ଆଉ ଅବଶତା, ଏ ଜାନ୍ତର ଜାନ୍ତ ନାହିଁ ସତେ ବା ।

ମୁଁ ଯେ କେତେବେଳେ ସେଇଭଳି ନିର୍ବେଦ ହୋଇ ବସି ରହିଛି । ସେତେବେଳକୁ ମୋର ରାଗ ଯଥେଷ୍ଟ କମିଯାଇଥିଲା । ମୋ ଆଖିକୁ ଝିକ୍‌ମିକ୍ କରି ଦେଉଥିବା, ଆଉ ମାରିପକାଇବାର ନିଶା ଟିକିଏ ଛାଡ଼ି ଛାଡ଼ି ଯାଇଥିଲା । ସେଇ ଅପେକ୍ଷାକୃତ ସ୍ୱଚ୍ଛ ଆଉ ସ୍ଥିର ମୁହୂର୍ତ୍ତିରେ ମୁଁ ମୋର ଚାରିଆଡ଼କୁ ଚାହିଁଲି । ଦେଖିଲି ମୋର ଚାରିପାଖଯାକ ଖାଲି ଗଦା ହୋଇଛି କାଗଜ—କଟାକଟି ଆଉ ଚରୁକୁଟି କାଗଜ । ତୂଣୀରରୁ ଶର ଖୋଜୁ ଖୋଜୁ ଶରମୂନର ଆଘାତରେ ମୋର ଆଙ୍ଗୁଳି ରକ୍ତାକ୍ତ ହେବା ଛଡ଼ା ଆଉ କିଛି ଅଘଟଣ ହୋଇନାହିଁ । ମୁଁ ଆଶ୍ଚର୍ଯ୍ୟ ହେଲି । ନିଜକୁ ନିଜେ ହସିଲି । ନିଜକୁ ନିଜେ ଆଶ୍ୱାସନା ଦେଲି, ଆଉ ଦୂରକୁ ଚାହିଁବାକୁ ଚେଷ୍ଟା କଲି । ମୋର ଆଖି ଧୀରେ ଧୀରେ ଦୂରକୁ ଦୂରକୁ—ଦିଗ୍‌ବଳୟ ଆଡ଼କୁ ବ୍ୟାପିବାକୁ ଆରମ୍ଭ କଲା; କିନ୍ତୁ ମୋର ଆଖିର ଏହି ଦିଗ୍‌ବଳୟ ଗତିର ସୁଯୋଗ ନେବାକୁ ସେ ଅର୍ଥାତ୍ ମୋର ଶତ୍ରୁ ପଛଘୁଞ୍ଚା ଆଦୌ ଦେଇନାହିଁ । ମୁଁ ଚମକି ପଡ଼ିଲି, ଆଉ ଦେଖିଲି—ମୋ ଶତ୍ରୁ ଉଭେଇଗଲା ଗୋଟାଏ ଛୋଟ ବୁଦାମୂଳେ, ଗୋଟିଏ ଛୋଟ ଗାତରେ । କେବଳ ଉଭେଇଗଲା ନାହିଁ ସେ—ଉଭେଇଯିବା ପୂର୍ବରୁ ମୁଣ୍ଡ ଟେକି ଟିକିଏ ସେ

ମୋ ଆଡ଼କୁ ଚାହିଁଲା, ଆଉ ତାର ସେ ନିଷ୍ଠୁର ଦୃଷ୍ଟି; କିନ୍ତୁ ତାଙ୍କର ହିଂସାତ୍ମକ ଦାନ୍ତ-ଗୁଡ଼ାକୁ ଖୋଲିକରି ଖୁବ୍ ନିର୍ଦ୍ଦୋଷଭାବେ; କିନ୍ତୁ ଟିକିଏ ଖତେଇହେବା ଭଳି ହସଟିଏ ନ ହସି ସେ ସତେ କି ତାର ଆଶ୍ରୟସ୍ଥଳ ସେଇ ଗ୍ରେଟ ଗାତଟି ଭିତରେ ପଶିଯାଇ ଆତ୍ମରକ୍ଷା କରିବାକୁ ମନ କଲାନି !

ସେ ଦୃଷ୍ଟିଗୋଚର ହେଉଥିବାଯାକେ ମୁଁ ଏକପ୍ରକାର ଧୈର୍ଯ୍ୟରକ୍ଷା କରି ପାରିଥିଲି । କାରଣ ମୁଁ ଜାଣିଥିଲି, ତା'ର ଜୀବନ ନାଟିକା ମୋ ହାତରେ ଛଥାପି ଥିଲା, କିନ୍ତୁ ସେଠୁ ଅନ୍ତର୍ଦ୍ଧାନ ହୋଇଯିବା ପରେ ମୁଁ ଆହୁରି ଅସହାୟ ବୋଧ କଲି । ନିଷ୍କ୍ରିୟ କ୍ରୋଧ ଆହୁରି ଭୟଙ୍କର ଭାବେ ଧାରିଲା ମତେ । ପୁଣି ମୁଣ୍ଡ ଟେକି ଉଠିଲା ମୋର ଭିତରର ପ୍ରବୃତ୍ତି—ମାରିବା ପ୍ରବୃତ୍ତି ଏବଂ ମୁଁ ଜାଣିଥିଲି ସେ ମୁହୂର୍ତ୍ତରେ ମାରିବା ବ୍ୟତୀତ ଆଉ କିଛି କର୍ତ୍ତବ୍ୟ ନ ଥିଲା ମୋର । ମୋର ରଥଚାଳକ ପୁଣି ମତେ ଉପଦେଶ ଦେଲା ।

"ମାର ! ମାରିପକା ! ମାରିବା ବ୍ୟତୀତ ଆଉ କିଛି କର୍ତ୍ତବ୍ୟ ନାହିଁ ତୋର ଏଇ ମୁହୂର୍ତ୍ତରେ !"

ମୁଁ ପୁଣି ଚିତ୍କାର କଲି—ତାକୁ ମାର ! ତାକୁ ନିପାତ କର ! ତାକୁ ନିପାତ କରିବାକୁ ପଡ଼ିବ ! ଧ୍ୱଂସ କରିବାକୁ ପଡ଼ିବ ତାକୁ । ସେ ମୋର ଅଶେଷ କ୍ଷତି କଲାଣି । କେବଳ ମୋର କାହିଁକି ? ମୋ ଜାତିର, ମୋ ଦେଶର ଅଶେଷ କ୍ଷତି କଲାଣି ସେ । ଅସଂଖ୍ୟ ଫାଇଲ୍ କାଟି ନଷ୍ଟ କଲାଣି ସେ ! ଅସଂଖ୍ୟ ଚଉକିର ତଳା ଖାଇ ଫମ୍ପା କରି ଦେଲାଣି ସେ ! ଅସଂଖ୍ୟ ଟେବୁଲ୍‌ର ଗୋଡ଼କାଟି ଲେଙ୍ଗେଡ଼ା କରି ଦେଲାଣି ସେ ! ଅସଂଖ୍ୟ ଆଲମାରି କଣା କରି କନ୍‌ଫିଡେନ୍‌ସିଆଲ୍ କାଗଜପତ୍ର ନଷ୍ଟ କଲାଣି ସେ । ଖାଲି ନଷ୍ଟ ତ କରେ ନା ସେ; ସ୍ଥାନଚ୍ୟୁତ କରି, ଏଠାକାର କାଗଜ ସେଠି ଆଉ ସେଠାକାର କାଗଜପତ୍ରକୁ ଏଠି, ଏଠାକାର କାଗଜ ସେଠି ଆଉ ସେଠାକାର କାଗଜ ଏଠି, ଏ ମୁଣ୍ଡର କଣ୍ଟା ସେ ମୁଣ୍ଡରେ ଆଉ ସେ ମୁଣ୍ଡର କଣ୍ଟା ଏ ମୁଣ୍ଡରେ ଥୋଇ ପ୍ରଳୟ ସାଧିପାରେ ସେ ! ନାଇଁ, ନାଇଁ ତାକୁ ମାରିବାକୁ ହେବ ତାକୁ ମାରି ତା'ର ବଂଶ ନିପାତ କରିବାକୁ ହିଁ ହେବ ।"

ମୋ ଭିତରେ ପୁଣି ନିଆଁ ଜଳି ଉଠିଲା ଦପ୍ କରି । ପୁଣି ବିଡ଼ାଏ କାଗଜ ଉଠାଇ ଆଣି ମୁଁ ଲେଖିବାକୁ ଲାଗିଲି—ପୁଣି ସେଇ ମୂଳରୁ—

To H. E. The Governor—

ମୁଁ ପୁଣି ତୂଣୀର ଅଣ୍ଡାଳି ବସିଲି । ଗୋଟି ଗୋଟି ହୋଇ ସବୁ ଶରର ମନ୍ତ୍ର ମୋ ଜିଭ ଆଗକୁ ଆପଣା ଛାଏଁ ଚାଲି ଆସୁଥିଲେ । ମୋର କାନରେ ସବୁକଥା ପଡ଼ୁଥିଲା ଗୋଟି ଗୋଟି ହୋଇ—ତା ବିରୁଦ୍ଧରେ ହଜାରେ ଅଭିଯୋଗ —

ବଡ଼ ପୁଅର ନୂଆ ପେଣ୍ଟରେ କଣା କରିଛ ସେ !

ମଝିଆଁ ପୁଅର ରବର ପେଣ୍ସିଲ୍‌କୁ କଣା କରି ପକେଇ ଭିତରୁ ହାଉଆ ନିକାଳିଛ ସେ !

ସାନ ଝିଅର 'କୋଧା ଷ୍ଟଲୁର' ପେଟ ଫୁଟେଇ ତା ପେଟରୁ ନଡ଼ାତକ କାଢ଼ି ପକେଇଛି ସେ !

ମୋ ସ୍ତ୍ରୀଙ୍କ ନକଲି ସିଲ୍‌କ କେଶ କେଶକୁ କାଟି ନେଇ ତା ଛୁଆଙ୍କ ପାଇଁ ଶେଯ କରିବା ଉଦ୍ଦେଶ୍ୟରେ ସେତକକୁ ଗାତରେ ପୂରେଇଛି ସେ !

ସେଗୁଡ଼ାକ ଯେତିକ ଯେତିକ ମନେପଡ଼ୁଥିଲା, ମୋର ଧୈର୍ଯ୍ୟର ବନ୍ଧ ସେତକ ସେତିକ ଭାଙ୍ଗି ପଡ଼ୁଥିଲା । ମୁଁ ସନ୍ଧେ ସନ୍ଧେ କରି କେତେ ଯେ ଗାଳି ପକେଇଥିଲି ତାର ଠିକଣା ନ ଥିଲା । ଗୋଟାଏ ନିଶ୍ୱାସରେ ମୁଁ ଲେଖି ଚାଲିଥିଲି, ସେଇ ଦୀର୍ଘ ଦରଖାସ୍ତଟି ! ଶହ ଶହ ଭାବପ୍ରବଣ, ଉତ୍ତେଜନାମୟ ଗରମା ଗରମ ଶବ୍ଦ ସଂଯୋଜିତ ଦରଖାସ୍ତ ! ମୁଁ ଜାଣିଥିଲି ଏଥର ଆଉ ତା'ର ନିସ୍ତାର ନ ଥିଲା । ସେ ବ୍ରହ୍ମାସ୍ତ୍ର ସ୍ୱୟଂ ! ତାକୁ ସେଇ ଅସ୍ତ୍ରରେଇ ନିପାତ କରାଯିବ । ହେଉ ପଛେ ପ୍ରଳୟ !

ଆଉ ଟିକକେ ମୁଁ ତାକୁ ଶେଷ କରିଥାନ୍ତି, ଆଉ ସହିକରି ପେଶି ଦେଇଥାନ୍ତି । ସେ ମହା ଭୟଙ୍କର ଅସ୍ତ୍ରଟିକୁ ! କିନ୍ତୁ ଠିକ ସେତିକବେଳେ ହଠାତ୍ ଗୋଟିଏ ସୂକ୍ଷ୍ମ ଶବ୍ଦ ମୋର କର୍ଣ୍ଣଗୋଚର ହେଲା ! ଶବ୍ଦଟି ଯେତେ ସୂକ୍ଷ୍ମ ହେଲେ ବି ସେ ମୋ କାନ ପରଦାକୁ ଅଥୟ ନକରି ରହି ପାରିଲାନାହିଁ ।

ଚମକି ପଡ଼ି ମୁଁ ଠିଆ ହୋଇ ପଡ଼ିଲି । ହଠାତ୍ ମୁଁ ଦେଖିଲି—ମୋ ବ୍ରହ୍ମାସ୍ତ୍ର ବ୍ରହ୍ମାସ୍ତ୍ରକୁ ଖାତର ନ କରି ସେ ଭଆଁଟାଏ ମାଇଲା ଠିକ୍ ମୋ ଚଉକିତଳକୁ ! ଏତେବେଳଯାକେ ଯାହାକୁ ମୁଁ ଲକ୍ଷ୍ୟ କରି ଶର ମନ୍ତ୍ରଣ କରୁଥିଲି, ସେ ଯେ ମୋର ଚଉକିର ଗଦି ଭିତରେ ପଶି ଟୁକୁଟୁକୁ କରି ମୋର 'ଡନ୍‌ଲପ୍ ପିଲୋ'ର ଆସନକୁ କାଟୁଥିଲା ।

ମତେ ଠିଆ ହେଇ, ତାର ସମ୍ମୁଖୀନ ହେବାର ଦେଖି ସେ ଗୋଟାଏ ମୁହୂର୍ତ୍ତପାଇଁ ଟିକିଏ ହଡ଼ବଡ଼େଇ ଗଲାଭଳି ଦେଖେଇ ହେଲା; କିନ୍ତୁ ସେଇ ଗୋଟାଏ ମୁହୂର୍ତ୍ତରେ ସବୁ କିଛି ବଦଳି ଗଲା । ତାପରେ ମୁଁ ଦେଖିଲି ମୁଁ ଖାଲି ଧକୁଣିର ଧରି ଗୋଡ଼େଇଛି ତାର ପଛେ ପଛେ ଆଉ ସେ ତାର ବ୍ୟୂହ ପରେ ବ୍ୟୂହ ରଚନା କରି ନିଜକୁ ରକ୍ଷା କରୁଛି । କେବଳ ଆତ୍ମରକ୍ଷା ସେ କରୁନାହିଁ, କ୍ରମାଗତ ଆକ୍ରମଣ ମଧ୍ୟ ସେ ଚଳେଇଥାଏ ମୋ ଉପରେ, ତାର 'ଗରିଲା ଘାଟୀ' ମାନଙ୍କ ମଧ୍ୟରୁ ।

ପ୍ରଥମେ ସେ ଗଳେଇ ପକେଇଲା ଗୋଟାଏ ମୂଲ୍ୟବାନ ଡି'ପଟ୍ ମୋ ଟେବୁଲ୍ ଉପରୁ । ତାପରେ ଏକା ଡିଆଁକେ ସେ ପଶିଗଲା ମୋର ବହି-କେଶ୍ ଭିତରେ । ମୁଁ

ରାଗରେ ବହିପତ୍ର ଖେଳେଇ ପକେଇଲି । ଘ ଘୂରିଣ୍ଠା ଅଠା ଯୋଡ଼େଇ ପକେଇ ବୁକ୍ ଖସ୍ ଖାସ୍ ଖସି ପଡ଼ିଲେ ତଳକୁ । ଦେଖୁ ଦେଖୁ ପଙ୍ଖା ପବନରେ ସେମାନଙ୍କର ପତ୍ର ସବୁ ଘରସାରା ଉଡ଼ି ବୁଲିଲେ । ବ୍ୟସ୍ତ ହୋଇ ସେମାନଙ୍କୁ ମୁଁ ଏକତ୍ର କରୁଥିବାର ସୁଯୋଗ ନେଇ ସେ ଡିଆଁ ଟାଏ ମାଇଲା ଓ କାନ୍ଥ କଣରେ ଗୋଟିଏ ଟୁଲ ଉପରେ ଯତ୍ନରେ ରଖାଯାଇଥିବା ମୋର ପ୍ରିୟ ଗୋଟିଏ ମୃଣ୍ମୟ ବୁଦ୍ଧ ମୂର୍ତ୍ତିକୁ ତଳକୁ ଗଳେଇ ପକେଇଲା । ମୋର ଆଖି ଆଗରେ ସେ ଏଡ଼େ ସୁନ୍ଦର ବୁଦ୍ଧଟିକୁ ଦାଗଡ଼ କରି ଥୋଇ ଦେଲା । ସେତେବେଳକୁ ମୋ ପିତ୍ତ ମୋ ତାଳୁର କେଉଁଠି ପହଞ୍ଚିଲା ମୁଁ ଜାଣେନା । ମୁଁ ଅନ୍ଧ ହୋଇ ତା ପିଛା ଧାଇଁଥିଲି ଓ ସେ ଗୋଟିକ ପରେ ଗୋଟିଏ ମୋ ଡ୍ରଇଁରୁମ୍‌ର ସମସ୍ତ ଭଙ୍ଗପ୍ରବଣ ଜିନିଷ ଆଡ଼କୁ କୁଦା ମାରିବାକୁ ଲାଗିଲା । ଅବଶେଷରେ ସେ ଡିଆଁ ଟାଏ ମାରିଲି ଓ ଆଖି ପିଛୁଳାକ ମଧ୍ୟରେ ସେ ଯାଇ ପଶିଗଲା ମୋ ଡ୍ରଇଁରୁମର ଏକାନ୍ତ କୋଣରେ ଆଦରରେ ସାଇତା ହୋଇଥିବା ସେ ବନ୍ଧୁ ସ୍ୱର୍ଣ୍ଣଜଡ଼ିତ ମୋର ଆଦରର ମାର୍ବଲ୍ ନିର୍ମିତ ତାଜମହଲ ମୂର୍ତ୍ତିର ପଛପଟେ ।

ମୋ ଆଖି ଖୋସି ହୋଇ ପଡ଼ିଲା । ମୋର ବିବେକର ଶତ ତାଡ଼ନା ସତ୍ତ୍ୱେ ମୁଁ ମୋର ଧନୁଶର ଉଠାଇ ପାରିଲି ନାହିଁ ତା ଉପରକୁ । ମୁଁ ନିଷ୍କ୍ରିୟ ହୋଇ ଠିଆ ହୋଇଗଲି ।

ତା ପରେ ମୁଁ ଯେତେବେଳେ ଆଖି ଖୋଲେ, ମୁଁ ଦେଖେ ତାକୁ, ଠିକ୍ ଏ ଆଗରୁ ଯିଏ ମତେ ଡରି, ମୋ ଶର ସଂଯୋଜନାରେ ଭୀତ ହୋଇ ଓ ମୋର ଦୁର୍ବଳସ୍ୱ ଦୃଷ୍ଟିର ଫାଇଦା ଉଠେଇ, ବୁଦ୍ଧମୂଳେ ଛପି ଯାଇଥିଲା, ଯେ ବର୍ତ୍ତମାନ ବିଦ୍ରୂପ ଚକ୍ଷୁରେ ଅନେଇ ରହିଛି ମୋତେ, ମୋର ବହୁମୂଲ୍ୟ ତାଜମହଲ ପଛପଟୁ ।

ମୋର ଧନୁ ଆଉ ଶର ଆଗରୁ ନଇଁ ପଡ଼ିଥିଲେ । ସେଇ ମୁହୂର୍ତ୍ତରେ ମୋ ମୁଣ୍ଡଟି ବି ନଇଁ ପଡ଼ିଲା । ମୁଁ ତାକୁ ପୂଜା କଲି । ମୁଁ ତାର ଗୁଣ କୀର୍ତ୍ତନ କଲି । ଶ୍ଳୋକ ଉଚ୍ଚାର କଲି ଆଉ ଶାସ୍ତ୍ର ଓ ସଂସ୍କାର ଉପରେ ସମସ୍ତ ଅବିଶ୍ୱାସ ସତ୍ତ୍ୱେ ମୁଁ ତାକୁ ପୂଜା କଲି । ଏତେ କଷ୍ଟ କରି ତା ସଙ୍ଗେ ଏଇ ଖଣ୍ଡଯୁଦ୍ଧ କଲି; କିନ୍ତୁ ଲାଭ କଣ ହେଲା ? ମୁଁ ଯୁଦ୍ଧ ଶେଷ କରି ପାରିଲିନାହିଁ । ସେ ତାର ଅବସ୍ଥାନ ବଜାୟ ରଖିଲା । ମୁଁ ଉପାସନା କଲି—

“ଧନ୍ୟ ତୁମେ ଗଣେଶବାହାନ ! ତୁମର ପ୍ରଭୁ ବୁଦ୍ଧି ଆଉ ଜ୍ଞାନବଳରେ ପୃଥିବୀ ଜୟ କରନ୍ତି, ଆଉ ତୁମେ ମଧ୍ୟ ପୃଥିବୀ ଜୟ କରିଛ । ଧନ୍ୟ ଧୂର୍ତ୍ତ । ଜ୍ଞାନର ବାହାନରେ ତୁମେ ଏକା ।”

ଠିକ୍ ସେତିକିବେଳେ, ମୁଁ ଯେତେବେଳେ ମୁଣ୍ଡ ନଇଁକେଇ ସେଠି ଠିଆ ହୋଇଥିଲି,

ସେତେବେଳେ ହଠାତ୍ ବାହାରେ ଗୋଟାଏ କଣ ଭୀଷଣ ଗୋଳମାଳ ଶୁଣି ମୁଁ ଝରକା ପାଖକୁ ଧାଇଁ ଗଲି । ଦେଖିଲି ଗୁଡ଼ାଏ ଟୋକା ଧାଡ଼ିବାନ୍ଧି ରାସ୍ତା କଡ଼ରେ ଗୁଲୁଛନ୍ତି ଆଉ ରଡ଼ି ଗୁଡ଼ୁଛନ୍ତି । ବଡ଼ ବିପର୍ଯ୍ୟସ୍ତ ସେ ଚତ୍କାର; ତଥାପି ତା ଭିତରୁ କିଛି ଗୋଟିଏ ଜିନିଷ ମୋ କାନକୁ ଆକର୍ଷଣ କଲା । କାନ ଡେରି ଶୁଣିଲି—ସେମାନେ ଚତ୍କାର କରୁଛନ୍ତି ।

"ଇନକିଲାପ—ଜିନ୍ଦାବାଦ୍"

ତା'ପରେ କିଏ ଗୋଟାଏ ସେଇ ଇନ୍‌କିଲପ୍‌ର ଉପକ୍ରମଣିକା ଭିତରୁ ରଡ଼ି ଦେଲି—ପ୍ରଥମେ କଥାଟା ଖୁବ୍ ଅବାନ୍ତର ଆଉ ଖାପ୍‌ଛଡ଼ା ଶୁଭିଲି—ମତେ ହସ ଲାଗିଲା । ପିଲାଙ୍କର ଡାକ ମତେ ବି ଥୋଡ଼ାଏ ଉତ୍ସାହ ଦେଲି । ସେମାନେ କୁହାଟ ମାରୁଥିଲେ—

ଲାଲୁଆଙ୍କୁ—ଯୋତାମାର !

ମିରୁଆକୁ—ଇଲେକ୍‌ଟ୍ରିକ୍ ଚଉକରେ ବସାଅ ।

ଚୁଗୁଲିଆଙ୍କୁ—ପିନ୍‌ରେ ଖେଞ୍ଚ ।

ଖଚୁଆ, ଢାଳବୁହାଙ୍କୁ—ଢେଲା ମାର ।

ଧପ୍‌ପାବାଜଙ୍କୁ—ସଙ୍ଗୀନ୍ ମୁନରେ ଭୁଡ୍ ଭୁଡ୍ କର ।

ଅଲସୁଆଙ୍କୁ—ବଳୁଆଡ଼ରେ ସଲସଲ କର ।

ଦେଶଦ୍ରୋହୀଙ୍କୁ—ଯାହା କରିବାର କର ।

ବାଣ୍ଡରେ ସେତେବେଳେ କଅଣ ଘଟୁଥିଲା ମୁଁ କିଛି ଅନ୍ଦାଜ କରିପାରୁ ନଥିଲି । ପ୍ରସେସନ୍ ଗୁଲିଥିଲା; କିନ୍ତୁ ଘଟଣାଟା କଅଣ ମୁ କିଛି ବୁଝିପାରୁ ନ ଥିଲି । ହଠାତ୍ ମୋର ସବୁ ଦର୍ଶନ ପଣିଆ ଭାଙ୍ଗିଗଲା । ସେଇ ପ୍ରସେସନ୍ ଭିତରେ କଲେଜ ପଢ଼ୁଆ ମୋ ପୁଅଟାକୁ ଦେଖି ପକେଇ ମୋ ଛାତିରେ ଛନକା ପଶିଗଲା, ହଠାତ୍ ଗୋଟାଏ ଆଦିମ ରକ୍ଷଣଶୀଳ ପ୍ରବୃତ୍ତି ମୁଣ୍ଡ ଟେକି ଉଠିଲା ମୋ ଭିତରେ ।

"ଧୀର ! ଧୀର !" ମୁଁ ଡାକ ଛାଡ଼ିଲି ! ତା ନାଁ ଧୀର ।

ମୋ ଛାତି ଦାଉଁ ଦାଉଁ ପଡ଼ିଲା । ଏ କଣ ? ଏ ଟୋକା କଣ ମାତିଲାଣି ? ଏ କି ପ୍ରସେସନ୍ ? ମୋର ଭୟ ହେଲା । ଟୋକାଟାର ଭବିଷ୍ୟତ ଛଲ ଛଲ ହେଲା ମୋ ଆଖିରେ । କାଲେ ଗାରଟାଏ କିଏ ପକେଇଦେବ ସେଇ ଚକ୍ ଚକ୍ ହେଇ ଦାଉ ଦାଉ ଜଳୁଥିବା ଭବିଷ୍ୟତର ରେକର୍ଡ଼ ଉପରେ ! ମୁଁ ପୁଣି ପାଟି କରି ଉଠିଲି—

"ହେ ଧୀର ! ଧୀର !"

କିନ୍ତୁ ମୋର ସବୁ ଡାକ ବୃଥା ହେଲା । ଧୀର ମୋ ଡାକ ଶୁଣିଲା ନାହିଁ । ପ୍ରସେସନ୍ ଗ୍ଲିଗଲା । ମୁଁ ବୁଝିଲି ଯୁଗ କେମିତି ଆସେଇଲା ଆଉ ଯାଏ । ମୁଁ ଆଉ ମୋ ପୁଅ ।

କେତେ ଭଲ ! ଆମେ ଭାବଉଥିଲୁ; କିନ୍ତୁ ମାରି ପାରୁ ନ ଥିଲୁ ହଜାରେ ମାରିବାର ଇଚ୍ଛା ସତ୍ତ୍ୱେ ! ଆହା ବି କହିପାରୁ ନ ଥିଲୁ ଆମେ । କିନ୍ତୁ ଆଜ ଧୀର, ମୋ ପୁଅ, ଏ କଣ ହେଲା ? କାହାକୁ ମାରିବାପାଇଁ ଏ ଧାଇଁଛ ଏମିତି ପାଗଲଙ୍କ ଭଳି ବଡ଼ ରାସ୍ତାରେ ? ସେ କଣ ମାରି ପାରିବ ? ତା ହାତ ଉଠିବ ?

ମୁଁ ଗୁମ୍ ମାରି ବସିପଡ଼ିଲି । ସନ୍ଧ୍ୟାବେଳକୁ ଟୋକାଟା ଫେରି ଆସିଲା । ତା ଆଖିରେ କାନ୍ଦଣା ତଥାପି ଅତୃପ୍ତ । ମୁଁ ନ ପଚାରିବା ପୂର୍ବରୁ, ହସି ହସି ବୀରଦର୍ପରେ ସେ କହିଲା—

"ଆଜି ଆମେ ସିଧା ଗଲୁ ମନ୍ତ୍ରୀଙ୍କ କୋଠିକୁ !"

"ମନ୍ତ୍ରୀଙ୍କ କୋଠିକୁ ?"

"ହଁ, ସିଧା ମନ୍ତ୍ରୀଙ୍କ କୋଠିକୁ ! ଆଉ ମନ୍ତ୍ରୀ ଯଦି ନ ଶୁଣନ୍ତି, ତା ହେଲେ ତା ଉପରକୁ ବି ଯିବାକୁ ତିଆରି ଅଛୁ ଆମେ—ଆମର ଯୁବକ ସଂଘ ।"

"କିନ୍ତୁ, କାହିଁକି ? ମୁଁ ଆଶ୍ଚର୍ଯ୍ୟ ହେଇ ତା ମୁହଁକୁ ଅନେଇଲି ଆଉ କହିଲି, ଏତେ ଶୀଘ୍ର ବ୍ରହ୍ମାସ୍ତ୍ର କାହିଁକି ଆଉ କାହାପାଇଁରେ ବାପା ?" ମୁଁ ଥାଆମାମା ହେଇଗଲି ।

"କାହାପାଇଁ ?" ଟୋକାଟା କଟମଟ କରି ମତେ ଅନେଇଲା—ସତେ କି ସେ ମୋର ଭିତରେ ଦେଖୁଥିଲା ପ୍ରକୃତ ଦୋଷୀକୁ । ତାପରେ ସେ ଚୁମ୍ବକରେ କହି ଦେଲା "କାହିଁକି ? କାହିଁ ସେଇ କିରାଣୀ ପେଇଁ କି—ଯିଏ ଆମ ପିଲାଙ୍କଠୁ ଆଡ଼ମିସନ୍ ବେଳେ ଦଶଟଙ୍କା କଲାପୋତେଇ ନଏ—ଆମ ଦରଖାସ୍ତକୁ ସବୁ ଏକଡ଼ ସେକଡ଼ କରେ—ଆମ ଡ୍ରାମା ଆଉ ଖେଳଫଣ୍ଡ ଟଙ୍କାକୁ ପାକିଟରେ ପକେଇ ଦେଇ ଆମରି ଆଖି ଆଗରେ ଜିଭ ବୁଲେଇ ବୁଲେଇ ଆମକୁ ଖତେଇ ହୁଏ..."

"ଏତକ ଛିକଏ କଥାପାଇଁ ତୁମେ ମନ୍ତ୍ରୀଙ୍କ ପାଖକୁ ଗୁଡ଼ିଗଲ ? କିନ୍ତୁ, ତୁମେ କ'ଣ ତୁମ ଶରବ୍ୟକୁ ସାଧନ କରିପାରିଲ ? ଏତେ ବଡ଼ ବାଣ ବୃଥା ନଷ୍ଟ ହେଲା ନି ତ ?" ମୁଁ ସକାଳର ଭାଙ୍ଗି ଯାଇଥିବା ବୁଦ୍ଧ ମୂର୍ତ୍ତିର ମୁଣ୍ଡଟାକୁ ଗଣ୍ଡି ସହିତ ଏକାଠି ଯୋଡ଼ିବାର ବୃଥା ପ୍ରୟାସ କରୁଥିଲି ।

ଟୋକାଟାର ନଜର ସେ ବୁଦ୍ଧମୂର୍ତ୍ତି ଆଡ଼କୁ ନ ଥିଲା । ସେ କଣ ଗୁଡ଼ାଏ ପ୍ରଳାପ କଲା । ମୁଁ ଭାବିଲି ବୋଧହୁଏ ମୋର ସେଇ ମୁଣ୍ଡହୀନ ବୁଦ୍ଧ-ମୂର୍ତ୍ତିଟା ତାକୁ କାବୁ କରିନେଲା ବୋଲି; କିନ୍ତୁ ମୋର ଧାରଣା ବୃଥା । ସେ ଥିଲା ଆଉ ଏକ ଯୁଗର କଥା । ଆମ ଯୁଗ ସେତେବେଳକୁ ଯାଇଥିଲା ଢେର ବହୁତ ତଳକୁ ।

ହଠାତ୍ ମୋ ହାତରେ ସେଇ ମୂର୍ତ୍ତିଟାକୁ ଦେଖି ପକେଇ ସେ ଏତେଦୂର ହସି ଉଠିଲା ହେଲା ଯେ ତା'ର ପ୍ରଳାପ ସବୁ ଏକାଥରକେ ବନ୍ଦ ହୋଇଗଲା । ତା'ର ପ୍ରିୟ ବୁଦ୍ଧ

ମୂର୍ତ୍ତିଟିକୁ ଏପରି ଅବସ୍ଥାରେ ଦେଖି ପକେଇ ସେ ଗୋଟାଏ ମୁହୂର୍ତ୍ତପାଇଁ ମୂକ ହୋଇଗଲା । ମୁଁ ଭାବୁଥିଲି—ଏ ଯୁଗର ଶକ୍ତି ବୋଧହୁଏ ଏତକ, ଯେତକ ଆମର ଥିଲା ।

କିନ୍ତୁ ହଠାତ୍ ତା'ର ଆଖି ଦପ ଦପ୍ ଜଳି ଉଠିଲା ।

"ଏଯାକୁ ଏମିତ କଲା କିଏ ବାପା ?" ରୁକ୍ଷ ଭାବେ ସେ ପଚାରିଲା ମତେ ।

"ମୂଷା"—ମୁଁ ଉତ୍ତର ଦେଲି—ଭୟକରେ ।

"ମୂଷା ?" ସେ କଟମଟ କରି ମତେ ଚାହିଁଲା ।

"ହଁ, ଗୋଟାଏ ଚୁଟିଆ ମୂଷା !" ମୁଁ ତା ମୁହଁକୁ ନ ଚାହିଁ ଉତ୍ତର ଦେଲି ଓ ମନେ ମନେ ମୋର ସକାଳର ନିଷ୍କ୍ରିୟ ଉତ୍ତେଜନା ସହିତ ତା'ର ସେହି ତମତମ ମୁହଁକୁ ମିଶେଇ ଦେଖୁ ଦେଖୁ ହେଉଥିଲି ।

ମୁଁ ଭାବୁଥିଲି ସେ ବୋଧହୁଏ ଚୁପ୍ ରହିଯିବ, କିନ୍ତୁ ନା । ମୋର ଆଖି ଖୋସି ହୋଇ ପଡ଼ିଲା – ଯେତେବେଳେ ସେ ଟୋକା ବିଜୁଳି ଭଳି ଚମକି ଗଲା ଡ୍ରଇଂ ରୁମ୍ ଆଡ଼କୁ ।

"ଆଚ୍ଛା ! ମୁଁ ଦେଖୁଛି—ସେ ପାଜିକୁ—"

ଯାର ଫଳାଫଳ କ'ଣ ହେବ ଆମେ ଠିକ୍ ଜାଣିଥିଲୁ । ଖାଲି ଜିନିଷ ଭାଙ୍ଗିବା ଯାହା ସାର ହେବ ଜାଣି ମୁଁ ଆଉ ତା' ମା' ଦହିଁକା ଦହେଁ ହାଁ ହାଁ କରି ତାକୁ ସେଥିରୁ ନିବର୍ତ୍ତାଇବାକୁ ଦଉଡ଼ିଲୁ ତା ପଛେ ପଛେ; କିନ୍ତୁ ଆମର ସବୁ ହାଁ ହାଁ ବୃଥା ।

ପ୍ରଥମେ ସେ ଧାଇଁ ଯାଇ କପ୍‌ବୋର୍ଡ଼ ଭିତରର ସବୁ ବହିଗୁଡ଼ାକୁ ଟେଲେଇ ପକେଇଲା । ଦ'ସ୍ତରଟା ବକେଇ ବହି ତଳେ ପଡ଼ି ତାଙ୍କ ମଲାଟର କଣ ସବୁ ବଙ୍କା ହୋଇଗଲା ।

ଫକ୍ କରି ସେଇ ବହି ସନ୍ଧିରୁ ଡ଼ିଆଁଟାଏ ମାଇଲା ସେ ମୂଷା । ଡ଼ିଆଁଟାଏ ମାରି ସେ ଯାଇ ପଶିଲା ଗୋଟାଏ ଟେବୁଲ୍ ଲ୍ୟାମ୍ପ ପଛେ କଡ଼େ । ହଁ । ହଁ । କରୁ କରୁ ସେ ବାପୁା ଟୋକାଟା ମୂଷାକୁ ହୁରୁଡ଼େଇ ଦେଲା ସେଠୁ । ମୂଷାଟା ସେଠୁ ବାହାରିଯାଇ ପଶିଲା ମୋ ପେନ୍‌ଷ୍ଟାଣ୍ଡ ପଛ ପଟେ, କିନ୍ତୁ ଗଲାବେଳେ ଟେବୁଲ୍ ଲ୍ୟାମ୍ପଟାକୁ ଓଲଟେଇ ନ ଦେଇ ସେ ଗଲାନାହିଁ । ଗୁହୁଁ ଗୁହୁଁ ଲ୍ୟାମ୍ପଟା ତଳେ ପଡ଼ି ଚେପା ହେଇଗଲା । ଆଉ ତା'ର ଇଲେକ୍‌ଟ୍ରିକ୍ ବଲ୍ ଠୋକରି ଫାଟି ଚୂନା ହୋଇଗଲା; କିନ୍ତୁ ଟୋକାଟା ନଛୋଡ଼ ବନ୍ଧା । ସେ ମୂଷାକୁ ପୁଣି ଚଢ଼ୋଉ କଲା । ମୂଷା ସେଠୁ ବାହାରି ପଶିଗଲା ଷ୍ଟାଣ୍ଡରେ ରହିଥିବା ଗୋଟାଏ ଗାଛ ଫଟୋର ପଛଆଡ଼େ । ସେଠି ମଧ୍ୟ ତାକୁ ଆଶ୍ରୟ ମିଳିଲା ନାହିଁ । ଫଟୋଟା ଓଲଟି ପଡ଼ି, ତଳେ ପଡ଼ି, ତା'ର କାଚ ଛନ୍‌ଛନ ହେଇଗଲା । ସେଠୁ ଡେଇଁ ସେ ପଶିଗଲା ଠିକ୍ ସେଇ ଜେଗାରେ, ଯୋଉ ଜେଗାରେ ରହି ସେ ମତେ ସକାଳେ ଉଙ୍କି ମାରୁଥିଲା । ମାଟିଲର ତାଜମହଲର ମୂର୍ତ୍ତିଟା ଟଳମଳ ହେଇଗଲା ।

ମୁଁ ସ୍ୱରରେ ଅସ୍ଥିର ହୋଇ ରଡ଼ି ଛାଡ଼ିଲି—

"ହେ ! ହେ ! ତୁ ଏ କଣ କରୁଚୁ ଧୀର । କଣ ଗୋଟାଏ ମୂଷାପେଇଁ ତୁ ମୋର ସର୍ବନାଶ କରିଦେବୁ ?"

କିନ୍ତୁ ମୋର କଥା କିଛୁ ତା' କାନରେ ପଶିଲା ନାହିଁ । ସତେ କି ସେ ପାଗଳ ହୋଇ ଯାଇଥିଲା । ଗୋଟିଏ ମୂଷାପେଇଁ ଜୀବନପଣ ସେ କରିଥିଲା ।

ମାର୍ବଲର ତାଜମହଲ ତଳେ ପଡ଼ି ଚୁନ ଛନ ହୋଇଗଲା । ମୂଷାଟା ଆଉ କେଉଁଠି ଥାନ ନ ପାଇ ମୋ ଆଡ଼କୁ ଛୁଟି ଆସିଲା, କିନ୍ତୁ ମୋ ପାଖକୁ ଆସୁ ଆସୁ ସେ ଚଟ୍ କରି ବୁଲିଗଲା ଓ ଆଖି ମିଛଡ଼ାକ ମଧ୍ୟରେ ସେ ଯାଇ ଧୀରର ମାଆର ଗୋଡ଼ତଳେ ଲୋଟିଥିବା ଶାଢ଼ୀ ଭିତରେ ଆଶ୍ରୟ ନେଲା ।

ଧୀରର ଦ୍ୱିତୀୟ ମାଡ଼ରେ ମୂଷାଟା ଛଟ୍‌କରି ଓଲଟି ପଡ଼ିଲା, କିନ୍ତୁ ତା'ର ପ୍ରଥମ ମାଡ଼ ବସିଥିଲା ତା' ମାଆର ଗୋଡ଼ରେ । କାହାର ଗୋଡ଼ତଳେ କିବା କାହାର ପଣତ ତଳେ ସତେ କି ଏ ଯୁଗର ମୂଷାର ଆଶ୍ରା ନ ଥିଲା !

ଧୀର ଧଇଁ ସଇଁ ହୋଇ ବସି ପଡ଼ିଲା । ଟିକିଏ ଦୂରରେ ତା'ର ଶବ (ଓ ମୋର ଶବ ମଧ୍ୟ) ରକ୍ତାକ୍ତ ହୋଇ ତଳେ ଲୋଟୁଥିଲା । ଘରର ଚତୁର୍ଦ୍ଦିଗ ଭଙ୍ଗା କାଚ, ମାର୍ବଲ ଆଉ ବଦ୍ଧୁର ଗୁଣ୍ଡାରେ ଭରପୂର ହୋଇଥିଲା । ଧୀର କିନ୍ତୁ ଏକ ଆଖିରେ ଚାହିଁ ଥିଲା ସେଇ ମଲା ମୂଷାଟାକୁ ।

# ତଟିନୀର ତୃଷ୍ଣା

## ବୀଣାପାଣି ମହାନ୍ତି

ମନେ ହେଉଛି ଯେପରି ସେ ଅସାମାନ୍ୟ ସୁନ୍ଦରୀ ଥିଲେ । ମନେହେଉଛି ଯେପରି ତାଙ୍କର ଗଣ୍ଡଦେଶରେ ଗୋଲାପର ହ୍ୱକ ଥିଲା ଆଉ ଚପଳ ଆଖି କୋଣରେ କିଛି କିଛି ଆକାଶର ନୀଳରଙ୍ଗ ଥିଲା ।

ନାଁ । ତାଙ୍କର ରୁଚି । ଅନେକ ଦିନ ତଳର ସେ ଯେପରି ଏକ ସଦ୍ୟସ୍ନାନ ସୁରଭି ।

ରୁଚି ! ଯାହାର ବୃହତ୍ତର କିମ୍ବା କ୍ଷୁଦ୍ରତର ନାମ ସହିତ ଚିନ୍ମୟଙ୍କର କୌଣସି ସମ୍ପର୍କ ନାହିଁ ।

ସୂର୍ଯ୍ୟ ପ୍ରାୟ ଅସ୍ତ ହେବା ଉପରେ । ହୁଏତ ରୁଚି ଛିଡା ହୋଇଥିବେ ଅଧଘଣ୍ଟାଏ ଧରି ତାଙ୍କ ଅପେକ୍ଷାରେ । ଟ୍ରେନ ଅଧଘଣ୍ଟାରୁ ଉପର ବିଳମ୍ବ ହୋଇଗଲାଣି ।

ଷ୍ଟେସନ ଏଇ ଆସିଗଲାଣି । ରୁଚି ଛିଡ଼ା ହୋଇଛନ୍ତି । ପନ୍ଦର ବର୍ଷ ତଳର ସେଇ ଚେହେରାରେ ଅନେକ ପରିବର୍ତ୍ତନ ଆସିଥିଲେ ହେଁ ସେ ପରିଷ୍କାର ଚିହ୍ନି ହେଉଛନ୍ତି । ଉତ୍‌କ୍ଷିପ୍ତ ଚୂର୍ଣ୍ଣ କୁନ୍ତଳ ତଳେ ଯେପରି ତାଙ୍କର ଚପଳ ଆଖି ଚିନ୍ମୟଙ୍କ ସନ୍ଧାନରେ ଆହୁରି ବେଶି ଚପଳ ହୋଇ ଉଠିଛି ।

ଆଃ । ଆଜି ଯଦି ପନ୍ଦର ବର୍ଷ ତଳର ଅତୀତ ହୋଇଆନ୍ତା । ନାଁ, ନାଁ । ସେ ଭାବିବେ ନାହିଁ । ସେ ନିଜକୁ ଦୁର୍ବଳ କରିବେ ନାହିଁ ।

ପାଖକୁ ଆସିଲେ ରୁଚି । ଈଷତ୍ ହସି କହିଲେ, "ଅନେକ କଷ୍ଟ ସହି ଅନେକ ଦିନ ପରେ ଆସିଲ ଚିନ୍ମୟ, ମାତ୍ର ଟ୍ରେନ ଆଜି ଭୀଷଣ ଡେରି କରିଦେଲା । ଜୀବନସାରା କେବେ ତମେ ଠିକ୍ ସମୟରେ ଆସି ପାରିଲନି··· ।"

ଚିନ୍ମୟ ଉତ୍ତର ଦେଲେନି । ରୁଚିଙ୍କ କଥାର ଇଙ୍ଗିତ ସେ ବୁଝିଥିଲେ । ପନ୍ଦର ବର୍ଷ ତଳର ସ୍ମୃତି ତାଙ୍କ ମନର ସମସ୍ତ କମଳବନକୁ ଛାରଖାର କରି ଦେଇଥିଲା । ସେ କ୍ଷଣିକପାଇଁ କଥା କହିବାର ଶକ୍ତି ହରାଇ ବସିଥିଲେ ।

କାର୍ ଭିତରେ ବସି ଷ୍ଟାର୍ଟ ଦେଲେ ରୁଚି । କିଛି ଗୋଟାଏ କହିବାକୁ ହେବ ଭାବି ଚିନ୍ମୟ କହିଲେ—

"ବରଂ ତୁମେ ବସ, ରୁଚି । ମୁଁ ଡ୍ରାଇଭ କରେ ।"

"ତମକୁ କଣ ଲାଜ ଲାଗୁଛି ଚନ୍ଦ୍ରସ୍ତୁ ? ଏଠି ସମସ୍ତେ ଜାଣନ୍ତି ମୁଁ ଡ୍ରାଇଭ କରେ, ମଦପିଏ, କ୍ଲବ ଯାଏ, ଆଉ ଅନେକ ବନ୍ଧୁଙ୍କୁ ଏପରି ସଙ୍ଗୋଳ ନେବା ଯେପରି ମୋର ଏକ ଚରିତଗତ ଧର୍ମ । ତାପରେ ତୁମେ କ୍ଲାନ୍ତ ଏବଂ ମୋର ଅତିଥି; ତମେ ବସ ।"

ଚନ୍ଦ୍ରସ୍ତୁ ଯେପରି ଅନ୍ୟମନସ୍କ ହୋଇପଡ଼ିଲେ । ରୁଚି ଆଉ ତାଙ୍କୁ ପରିହାସ କରୁ-ନାହାନ୍ତି ତ ?

ରୁଚି କାର୍ ଛାଡ଼ି ଦେଇ ଦେଇ କହିଲେ—"ତୁମେ ସବୁଦିନେ ବଡ଼ ଦୁର୍ବଳ ଚନ୍ଦ୍ରସ୍ତୁ । ମୋର ଏଇ ଅବାଧ ଭ୍ରମଣ ନୀତିଟାକୁ ତୁମେ କେବେ ପସନ୍ଦ କରି ନ ଥିଲ, ଆଜି ବି କରୁନାହିଁ । ଆଜି ତୁମେ ମୋର ଅତିଥି । ମୁଁ ତମକୁ କଥା ଦେଉଛି, ତୁମେ ଥିଲା ପର୍ଯ୍ୟନ୍ତ ମୁଁ ମଦ ସ୍ପର୍ଶ କରିବି ନାହିଁ ।" ଓଠ ଉପରେ ଓଠ ଚାପି ସେ ଯେପରି କଣ୍ଠର ଯନ୍ତ୍ରଣାଟାକୁ ଘୋଡ଼ାଇ ରଖିଲେ ।

"ତୁମର ମୋ ପ୍ରତି ଗୋଟାଏ ଭ୍ରାନ୍ତ ଧାରଣା ରହିଛି ରୁଚି ! ତୁମେ ବୋଧହୁଏ ପ୍ରଦୋଷର କଥାଟାକୁ ବିଶ୍ୱାସ କରିଛ ।"

ରୁଚି କହିଲେ "ମୋ ନିଜର ଗଣନା ଉପରେ ମୁଁ ବେଶି ନିର୍ଭର କରେ ଚନ୍ଦ୍ରସ୍ତୁ । ମୋର ଏଇ ଅହଂ ଭାବଟାକୁ ତୁମେ ସହ୍ୟ କରି ପାରିଲନି, ତୁମେ କାହିଁକି ମୁଁ ନିଜେ ବି ସମସ୍ତେ ସମସ୍ତେ ଦୁର୍ବଳ ମୁହୂର୍ତ୍ତରେ ତାକୁ ନେଇ । ଛାଡ଼ ତେବେ ପ୍ରଦୋଷର କଥାକୁ ଡାମ୍ ଦେଇ ନାହିଁ କେବେ ଆଉ ଆଜି ?"

ରୁଚି ହସୁଥିଲେ । ଖୁବ୍ ସ୍ତିମିତ ଆଲୋକରେ ତାଙ୍କର ପ୍ରଦୋଷ ପାଇଁ ଉଦ୍ଦିଷ୍ଟ ବ୍ୟଙ୍ଗ ହସର କ୍ଷୀଣ ରେଖା ଯେପରି ଚନ୍ଦ୍ରସ୍ତୁଙ୍କୁ କ୍ଷତ ବିକ୍ଷତ କରିଦେଉଥିଲା ।

ଏଇ ସେ ରୁଚି । ବହୁ ସୁଯୋଗସମ୍ପନ୍ନ ଧନୀ ପିତାର କନ୍ୟା । ବିଳାସ-ବ୍ୟସନ ପ୍ରାଚୁର୍ଯ୍ୟ ଭିତରେ ଜୀବନଟାକୁ ଅହରହ ଭାଙ୍ଗି ଦେବା ଯେପରି ତାଙ୍କର ଗୋଟାଏ ନିଶାଥିଲା; ଅଥଚ କି ଅମାର୍ଜିତ ବ୍ୟବହାର ସେ କରୁଥିଲେ । ତାଙ୍କର ବ୍ୟକ୍ତିତ୍ୱ ଆଉ ବିରାଟ ନାରୀତ୍ୱ ଭିତରେ ଚନ୍ଦ୍ରସ୍ତୁ ଯେପରି ନିଜର ସତ୍ତା ହରାଇ ବସୁଥିଲେ ।

ସହର ରାସ୍ତା ଛାଡ଼ି ଗାଡ଼ି ଯେପରି ଅନ୍ୟ ଏକ ରାସ୍ତାରେ ଚାଲିଛି । ଚନ୍ଦ୍ରସ୍ତୁ ପାଟିକରି ଉଠିଲେ "ଆରେ ଏ କଣ କରୁଛ ରୁଚି । ଆମେ ଯେ ରାସ୍ତାଛାଡ଼ି ଅବାଟକୁ ଆସିଗଲେଣି ।"

"ଭୟ କରିବାର କିଛି ନାହିଁ । ସମଗ୍ର ରାତି ଆମକୁ ଏମିତି ଅବାଟରେ ଚାଲିବାକୁ ହେବ ।"

"ମୁଁ ଆଉ ଏଠାରେ ରହୁନାହିଁ । କିଛିଦିନ ଧରି ଯେପରି କିଛି ଭଲ ଲାଗୁନାହିଁ । ତେଣୁ ସହର ଛାଡ଼ି ଦ'ଶହ ମାଇଲ ଦୂରରେ ମୁଁ ଅଛି । ଅବଶ୍ୟ ସେ ସ୍ଥାନକୁ ସହର

କୁହାଯାଇ ପାରିବ । ହେଲେ ସେ ମୋର ଅପରିଚିତ ସହର । ସେଠି କିନ୍ତୁ ମୋର ଭୟ ହୁଏ ଚନ୍ଦ୍ରମୟ, ମୁଁ ବେଶି ଦିନ ରହି ପାରିବ ନାହିଁ । କେଜାଣି କେଉଁ ମୁହୂର୍ତ୍ତରେ ସେ ଅସ୍ଥାୟୀ ନୀଡ଼ ଛାଡ଼ିଦେଇ ମୁଁ ପୁଣି ଚାଲିଯିବି ।”

“ଜୀବନଟାକୁ ଏମିତି ଫାଙ୍କି ଉଡ଼େଇ ଦେଲ ରୁଚି ?”

“ଫାଙ୍କିଲି ଆଉ କୁଆଡ଼ୁ ? ଜୀବନଟା ଯେ ମୋ ଉପରେ ବୋଝ ହୋଇ ବସି-ଗଲଣି; ବରଂ ଜୀବନଟା ମତେ ଫାଙ୍କିବାକୁ ବସିଲଣି ।”

ଚନ୍ଦ୍ରମୟ ଉତ୍ତର ଦେଲେନି । ପନ୍ଦର ବର୍ଷ ଧରି ରୁଚିଙ୍କ ସହିତ ନବବର୍ଷର ଶୁଭେଚ୍ଛା କାର୍ଡ଼, ଆଉ ଜନ୍ମଦିନର ବଧେଇ ବ୍ୟତୀତ ତାଙ୍କର କିଛି ସମ୍ପର୍କ ନାହିଁ । ବହୁ ପରିଚିତ ଏଇ ନାରୀଟି ସହିତ ତାଙ୍କର ଦୀର୍ଘ ଦିନର ବିଚ୍ଛେଦ ଭିତରେ ଅନେକ ଘଟଣା ଯେ ଘଟି ନ ଥିବ, ଏ କଥା ସେ କାହିଁକି ଭାବୁଛନ୍ତି ?

ଷାଠିଏ ମାଇଲ ବେଗରେ ଗାଡ଼ି ଗତି କରି ଚାଲିଛି । ଦୁଇତଟରେ ଶ୍ୟାମଳ କ୍ଷେତରାଶି । ଆକାଶରେ ଖଣ୍ଡ ଖଣ୍ଡ ଧଳାମେଘ, ଆଉ ମଝିରେ ମଝିରେ ହାଲ୍କା ଶୀତଳ ପବନର ସ୍ପର୍ଶ । ଚନ୍ଦ୍ରମୟଙ୍କୁ ଲାଗୁଥିଲା ସତେ ଅବା ସ୍ୱର୍ଗର ପକ୍ଷୀ ତାଙ୍କୁ ଉଡ଼େଇ ନେଇଯାଉଛି କୁଆଡ଼େ ।

ହଠାତ୍ ଷ୍ଟାର୍ଟ ବନ୍ଦ କରି ରୁଚି କହିଲେ, “ତମକୁ ନିଶ୍ଚୟ ଭୋକ ଲାଗିବଣି ଚନ୍ଦ୍ରମୟ ! ଟିଫିନ୍ କ୍ୟାରିଅର୍ ଖୋଲି ତମେ କିଛି ଖାଇନିଅ ।” ସେ ଦ୍ୱାର ଖୋଲି ପଦାକୁ ଉଠିଗଲେ ।

“ତମେ ନିଜେ କିଛି ଖାଇବନି ରୁଚି ?”

“ନାଁ, ମତେ ମୋଟେ ଭୋକ ନାହିଁ । ତା ପରି ଆଜିକାଲି କେଜାଣି କାହିଁକି ଖାଇବାକୁ ଇଚ୍ଛା ବି ହୁଏନାହିଁ, ସମୟେ ସମୟେ ଭୟ ହୁଏ, ମୁଁ ଆଉ ଅନାହାରରେ ମରିଯିବି ନାହିଁ ତ ?” ରୁଚି ଯେପରି କହୁ କହୁ ଆବେଗରେ ଚନ୍ଦ୍ରମୟଙ୍କ ହାତ ପାପୁଲିକୁ ମୁଠାଇ ଧରିଲେ ।

ଅନ୍ଧକାର । ଚତୁର୍ଦ୍ଦିଗରେ ଘନ ଅନ୍ଧକାର; ତଥାପି ରୁଚିଙ୍କୁ ସେ ସ୍ପଷ୍ଟ ଦେଖି ପାରୁଥିଲେ । କେତେ ନିକଟରେ, କେତେ ଆପଣାର ଲୋକପରି ସେ ତାଙ୍କ ପାଖରେ ଛିଡ଼ା ହୋଇଛନ୍ତି; ଅଥଚ ପନ୍ଦର ବର୍ଷ ତଳେ ଗୋଟାଏ କଥା କହିବାକୁ ଯାଇ ବାରମ୍ବାର ଲେଉଟି ଆସିଥିଲେ; କିନ୍ତୁ ତାଙ୍କ ପ୍ରତି ଯେଉଁ ଭୀଷଣ ଦୁର୍ବଳତା ତାଙ୍କର ଥିଲା, ସେ କଥା ସେ ପାଶୋରିବେ କିପରି ? ରୁଚିଙ୍କର ବିବାହ ପରେ ଚନ୍ଦ୍ରମୟ ଚାହିଁ ଥିଲେ ମୃତ୍ୟୁ ; କିନ୍ତୁ ତା ହେଲାନାହିଁ ।

ଆଜି ଯେପରି ପୌଷର ପଲିତ ପତ୍ରରେ ବସନ୍ତର ମଳୟ ଅକାଳରେ ଅଗ୍ନି ସଂଯୋଗ

କରିଛୁ, ବଞ୍ଚିବା ପାଇଁ ଆଉ ଥରେ ମନରେ ଆସୁଛୁ ରୋମାଞ୍ଚ ।

"ଆରେ, ଆରେ ଚିନ୍ମୟ । ଆଇ ଏଡ଼ମିଟ୍, ଇଉ ଆର୍ ଏ ବ୍ରେଭ୍ ବୟ । ଓଃ, ଫିଲ୍ ......ଦେଖ ଚିନ୍ମୟ । ଅନ୍ଧକାର ଯାଇ ଆଲୋକ ଆସିଲେ...ତୁମେ ପୁନଶ୍ଚ ।"

ହସି ଉଠିଲେ ରୁଚି । ଆଉ ଚମକି ଘୁଞ୍ଚିଗଲେ ଚିନ୍ମୟ । ସେ ହସ ଭିତରେ ଯେପରି ଅଜସ୍ର କାରୁଣ୍ୟର ଜଳତରଙ୍ଗ ସୃଷ୍ଟି ହେଲା ।

ଗାଡ଼ିରେ ବସି ବସି ରୁଚି କହିଲେ—"ମୋ କଥାରେ ତୁମେ ଆଘାତ ପାଇଲ ପୁଣି । ଚୁପ୍ ହେଲ ଯେ ।"

ଚିନ୍ମୟ ହସି ସିଗାରେଟ୍ ଧରିଲେ । ଆଉ କଥାର ମୋଡ଼ ଘୁରାଇ ପ୍ରଶ୍ନ କଲେ "ତୁମେ ପ୍ରଦୋଷଙ୍କୁ ଏମିତି ଏକା ଛାଡ଼ି ଦେବାଟା ମୁଁ ପସନ୍ଦ କରୁନାହିଁ ରୁଚି ! ସେ ଦାର୍ଜିଲିଂରେ ଆଉ ତୁମେ ଏକ ନିରାଟ ମଫସଲରେ...ମୁଁ ଏହାର ମାନେ ବୁଝୁନି ।"

"ତୁମେ ବୁଝି ପାରିବନି ଚିନ୍ମୟ । ଧନଲୋକଙ୍କର ଯେପରି ଗର୍ବ ଆଉ ଉଦ୍ଧତ ଭଙ୍ଗୀ ଥିବ, ସେମିତି ଗରିବ ଲୋକଙ୍କର ଏକ ନିଃସହାୟ ଭାବ ଥିବ । ଏ ଦୁଇଟି ଜିନିଷ ମଣିଷକୁ ସହଜ କରେନାହିଁ । ଏକାଠି ରହି ବଞ୍ଚିବାକୁ ହେଲେ କିଛିଟା ସ୍ୱାଭାବିକତା ଦରକାର । ସେ ହେଉନାହିଁ । ମୋର ଔଦ୍ଧତ୍ୟର ମାତ୍ରା ତାଙ୍କ ଉପରେ ଯେତିକି ଯେତିକି ମାଡ଼ି ମାଡ଼ି ପଡ଼ିଲା—ତାଙ୍କର ନିଃସହାୟ ଭାବ ସେତିକି ଅନୁପାତରେ ମୋତେ ଅଣନାଃଗ୍ରାହୀ କରିଦେଲା । ପ୍ରଦୋଷର ଅନେକ ଗୌଣ ମନୋବୃତ୍ତିର ବିକାର ଅଛି । ତୁମେ ଜାଣ ଚିନ୍ମୟ, ମୁଁ କୌଣସି ପୁରୁଷ ଲୋକର ଅସହାୟତାକୁ ସହ୍ୟ କରି ପାରେ ନା । ମୁଁ ବଡ଼ ଅହଂକାରୀ, ଆଉ ମୁଁ ଭାବୁଥିଲି ପ୍ରଦୋଷ ହେବ ମୋଠାରୁ ବଳି ଅହଂକାରୀ ।

କିନ୍ତୁ ଦିନକୁ ଦିନ ସେ ବଡ଼ ଭୀରୁ ହୋଇଗଲେ । ସେଥିପାଇଁ ସେ ଦୂରେଇ ଯାଉଛନ୍ତି । ବ୍ୟବସାୟ ଆଳରେ ସେ ମାସ ମାସ ଧରି ଏଣେ ତେଣେ ବୁଲୁଛନ୍ତି । ମୁଁ ସେଥିପାଇଁ ଚିନ୍ତିତ ନୁହେଁ । ମୁଁ ଚିନ୍ତିତ—ଜୀବନଟା ମୋ ଉପରେ ଯେପରି ବୋଝ ହୋଇଗଲା ।

"ତମର ଝିଅ କେଉଁଠି ତେବେ ?"

"ସେଇଏ ଆହୁରି ଆଶ୍ଚର୍ଯ୍ୟ କଥା । ପ୍ରଦୋଷ ତାକୁ ପାଖରୁ ଛାଡ଼ିବେ ନାହିଁ । ଝିଅ କୁଆଡ଼େ ମୋ ପାଖରେ ରହିଲେ ଖରାପ ହୋଇଯିବ । ତାକୁ ଭିନ୍ନ ବାଟରେ ଟ୍ରେନିଂ ଦେଉଛନ୍ତି ପ୍ରଦୋଷ । ହିନ୍ଦୁଧର୍ମର ବିଭିନ୍ନ ଗୀତ, ଶୃଙ୍ଖଳା ଯୋଗ ସେ ଅଭ୍ୟାସ କରୁଛି । ମୁଁ ବି କରିଥିଲି ଚିନ୍ମୟ । ପୂଜା, ବ୍ରତ କରିବାକୁ ଆଉ ପୁରାଣ ପଢ଼ିବାକୁ ଜେଜେମାଙ୍କ ପାଖରେ ମତେ ଭାରି ଭଲ ଲାଗୁଥିଲା । ଜାଣ ଚିନ୍ମୟ, କେଡ଼େ ସରଳ ମୁଁ ଥିଲି ? ମିଛ କହିଲେ ଯମପୁରରେ ସିମିଳି ଗଛରେ କଣ୍ଟା ପିଠା ହୋଇ ମରିବା କଥା ପଢ଼ି ମୁଁ ନିଶ୍ଚିନ୍ତରେ

ଖୋଜିପାରୁ ନଥିଲି । ଇସ୍ ! ସକାଳୁ ସଞ୍ଜ ପ୍ରାର୍ଥନା କରି କରି ମୁଁ ଯେମିତି କ୍ଳାନ୍ତ ହୋଇପଡ଼ୁଥିଲି । ଏ ସବୁ ମନେପଡ଼ିଲେ ସେଇ ସେ ଦିନର ଝିଅ ରୁଚି ପ୍ରତି ମୋର ଦୟା ହୁଏ । ଆଜି ମୋର ଝିଅ ଶୁକ୍ଲା···ବିଂଶ ଶତାବ୍ଦୀର ଅଜସ୍ର ଜୀବାଣୁ ଆଉ ଦ୍ୱନ୍ଦ୍ୱରୁ ଯାହାର ଉତ୍ପତ୍ତି ।

ଚିନ୍ମୟ ଅନ୍ୟମନସ୍କ ହୋଇପଡ଼ିଥିଲେ । କେଉଁ ଦୂର ଅତୀତର ରୁଚିଙ୍କ କଥା ତାଙ୍କର ମନେପଡ଼ୁଥିଲା । ବାସ୍ତବିକ ରୁଚି ଥିଲେ ଅଦ୍ଭୁତ ନମ୍ର ଆଉ ଆତ୍ମବିଶ୍ୱାସିନୀ ତରୁଣୀ । ତାଙ୍କ ଆଖି ଆଉ ମୁହଁରେ କଣ ଥିଲା କେଜାଣି; କେତେ ବାର କିଛି କହିବାକୁ ଯାଇ ଅଟକିଛନ୍ତି ସେ । ପ୍ରଦୋଷଙ୍କୁ ଯେ ରୁଚି ଏପରି ବିବାହ କରିବାର ସିଦ୍ଧାନ୍ତଟା ହଠାତ୍ ନେବେ—ସେ କଥା କେହି ଜାଣି ନ ଥିଲେ; କିନ୍ତୁ ବିବାହ ପରେ ଅନେକବାର ସେ ପ୍ରଦୋଷ ସହିତ ଦେଖାକରିଛନ୍ତି । ରୁଚି······ସହିତ ସାକ୍ଷାତଟାକୁ ସେ ସବୁଦା ଏଡ଼େଇ ଆସିଛନ୍ତି । କେତେବାର ପ୍ରଦୋଷ ନିମନ୍ତ୍ରଣ କରିଛୁ, ଆଉ କେତେବାର ଅଭିମାନ କରି ରୁଚି ପତ୍ର ଲେଖିଛନ୍ତି; କିନ୍ତୁ ଚିନ୍ମୟ ସେ ସବୁ ଲବୋରେଟରୀ ଭିତରେ ପୋଡ଼ି ଦେଇଛନ୍ତି । ଦିନ ଦିନ ଧରି ନିଜକୁ ବନ୍ଦ କକ୍ଷ ଭିତରେ ଆବଦ୍ଧ ରଖି ସେ ରୁଚିଙ୍କୁ ସୁଖୀ କରିବାର କାମନା କରିଛନ୍ତି । ମାତ୍ର ତାଙ୍କର ଏତେ ଆତ୍ମତ୍ୟାଗ, ନିଷ୍ଠା, ସବୁ କଣ ବ୍ୟର୍ଥ ହୋଇଗଲା ? ପ୍ରଦୋଷ ସହିତ ଦେଖାହେଲେ ସେ କହିବେ ଶାନ୍ତ ସୁଖ ଯଦି ସେ ରୁଚିଙ୍କୁ ନ ଦେଇ ପାରୁଛି ନାହିଁ, ସ୍ତ୍ରୀର ସ୍ୱଚ୍ଛନ୍ଦତା ଟିକିଏ ତାର ସ୍ୱାମୀ ହିସାବରେ ଦେଖିବା ତ ଦରକାର ।

କିଛି ସମୟ ଅଖଣ୍ଡ ନୀରବତା । ଆକାଶରେ ଭଙ୍ଗା ଭଙ୍ଗା ବାଦଲ । ମନ ଭିତରେ ଅଜସ୍ର ସ୍ମୃତିର କଲ୍ଲୋଳ ।

ନୀରବତା ଭାଙ୍ଗି ରୁଚି ପ୍ରଶ୍ନ କଲେ ।

—"ତୁମେ ପ୍ରଶାନ୍ତ ଚୌଧୁରୀ କି ଚିହ୍ନିଛ ? ବିଲିୟାର୍ଡ଼ ଖେଳି ଯେ ଗୁଡ଼ାଏ ସୁଖ୍ୟାତି ଅର୍ଜନ କରିଛି, ଚିହ୍ନ ତାକୁ ?"

ଚିନ୍ମୟ ଚମକି ପଡ଼ିଲେ । ପ୍ରଦୋଷ ଯେପରି ରୁଚି ସହିତ ପ୍ରଶାନ୍ତର ବନ୍ଧୁତ୍ୱଟାକୁ ସହ୍ୟ କରୁ ନ ଥିଲା । ସେଦିନ କଥାବାର୍ତ୍ତାରୁ ଯେପରି ଚିନ୍ମୟ ଏକ କ୍ଷୀଣ ଇଙ୍ଗିତ ପାଇଥିଲେ । ରୁଚି ତା' ହେଲେ କ'ଣ ?

ରୁଚି ହସୁ ହସୁ କହିଲେ—"ମୋର ଏଇ ଅପବାଦର ନାଗରା ନିଶ୍ଚୟ ତୁମ କାନରେ ବାଜିଥିବ । ତେବେ ଏ ସତକଥା ଯେ ପ୍ରଶାନ୍ତ ଚୌଧୁରୀ ସହିତ ମୋର ବନ୍ଧୁତ୍ୱ ଥିଲା ପ୍ରଚୁର । ଲୋକ ମୁଖରେ ନାନା କଥା ରଟ୍ଟ ହେଲା । ମୁଁ ହେଲି କଳଙ୍କିନୀ, ମୁଁ ହେଲି ଅସତୀ । ମୁଁ କାନ ଦେଇନାହିଁ ସେଥିରେ । ଯାହାର ବନ୍ଧୁ ନାହିଁ, ପୃଥିବୀରେ

ତାର ସ୍ଥିତି ନାହିଁ । ବନ୍ଧୁତ୍ୱ କରିବାକୁ ହେଲେ ମୁଁ ଲିଙ୍ଗ ବିଚାର କରେ ନାହିଁ ଚିନ୍ମୟ ! ମୁଁ ତାକୁ ସ୍ନେହ କରୁଥିଲି । ଅତଏବ ତାକୁ ମୁଁ ବୁଝାଇ କହିଲି ନ ଆସିବାକୁ; କିନ୍ତୁ ସେ ସ୍କାଉଣ୍ଡ୍ରେଲ କ'ଣ କଲା ଜାଣ ? ମୋ ବେକ ଚାରିପଟେ ହାତଗୁଡ଼ାଇ ସେ କହିଲା, —ପ୍ରଶାନ୍ତ ଖେଳଓ୍ୱାଡ଼' ହେଲେ ବି ଏତେ ନୀଚ ନୁହେଁ, ରୁଚି ଦେବ ! ମୁଁ ତୁମକୁ ବିବାହ କରିବାକୁ ରାଜି ଅଛି···ଚାଲ ପଳାଇବା ।

ମୁଁ ତାକୁ ଅନାଇ ଚମକିପଡ଼ିଲି । ମୋଠାରୁ ସେ ଛ' ବର୍ଷ ଜ୍ୟେଷ୍ଠ । ମୋ ବାଳଗୁଡ଼ାକ କାନ ପାଖରୁ ପ୍ରାୟ ପାଚିଗଲାଣି । ମୋ ମୁଣ୍ଡରେ ଏମିତି ପିତ୍ତ ଉଠି ଯାଇଥିଲା ଯେ ମୁଁ ତାକୁ ପାଦରୁ ଚପଲ କାଢ଼ି ସେକି ଦେଇଗଲି; ଚିନ୍ମୟ ! ଭବିଷ୍ୟତରେ ଯେପରି ସେ କେଉଁଠି ଏହାର ପୁନରାବୃତ୍ତି ନ କରେ । ସେଦିନୁଁ ମୁଁ ତାକୁ ଆଉ ଦେଖିନାହିଁ । କୌଣସି ପୁରୁଷର ଅଯଥା ଅତ୍ୟାଚାର ମତେ ସୁଖ ଲାଗେ ନାହିଁ । ଜହାତ ସ୍କାଉଣ୍ଡ୍ରେଲଟାଏ ।"

ଚିନ୍ମୟ ଏକନିଷ୍ଠ ହୋଇ ଶୁଣୁଥିଲେ ରୁଚିଙ୍କ ଜୀବନରେ ପ୍ରଶାନ୍ତ ଚୌଧୁରୀର ସଂକ୍ଷିପ୍ତ ଇତିହାସ । କଣ କହିବେ କହିବେ ହୋଇ ସେ ଅଟକି ଗଲେ, କାରଣ ରୁଚି ତାର ଅଟକାଇ କହିଲେ—"ପଦାକୁ ଆସ ଚିନ୍ମୟ । ଟିକିଏ ଖୋଲା ପବନ ଦେହରେ ବାଜୁ··· ।"

ଚିନ୍ମୟ ଉଠି ଆସିଲେ । ଚତୁର୍ଦ୍ଦିଗରେ ତମସାର ଘନ କାଳିମା । ସାମ୍ନାରେ କ୍ଷୀଣ-ରେଖାର ନଈଟିଏ ବହିଯାଉଛି କେବଳ । ବଡ଼ ନିସ୍ତବ୍ଧ, ବଡ଼ ନିଃସଙ୍ଗ ଲାଗୁଛି ମନଟା ।

ଜାଣ ଚିନ୍ମୟ ! ବେଳେବେଳେ ଏମିତି ମଝି ରାତିରେ ଖୋଲା ପଡ଼ିଆରେ ଛିଡ଼ା ହୋଇ ଆକାଶର ତାରକା ଗଣିବାକୁ ଖୁବ ଇଚ୍ଛାହୁଏ । ଜନ୍ମକାଳରୁ ଯେପରି ବଞ୍ଚିବାର ସମ୍ଭ୍ରମ ଚାହିଦା ଖୋଜି ଖୋଜି ମୁଁ କ୍ଳାନ୍ତ ହୋଇପଡ଼ିଲିଣି; ଅଥଚ ପୃଥିବୀର ସମସ୍ତ ପ୍ରାଚୁର୍ଯ୍ୟ ଯେପରି ମୋ ପାଦତଳେ ଲୋଟୁଛି । ଆଉ ଯେପରି ଭଲ ଲାଗୁନି ଚିନ୍ମୟ ।

ପନ୍ଦର ବର୍ଷ ତଳର ରୁଚି ଆଉ ଆଜିର ରୁଚି ଭିତରେ ଏତେ ବେଶି ପ୍ରଭେଦ ଆସିଛି—ଯାହାକି ମୋ ମୋ କଳ୍ପନାର ବହିର୍ଭୂତ । ମୁଁ ତମକୁ କଣ କହି ବୁଝାଇବି—ମୁଁ ନିଜେ ଜାଣେ ନାହିଁ ।

ମୋତେ ବୁଝାଇବାର ପ୍ରଚେଷ୍ଟା କରିବ ନାହିଁ । ତମର ମନେଥିବ ଚିନ୍ମୟ, ମୋର ଲାଇବ୍ରେରୀରେ ପୃଥିବୀର ସବୁ ବଶିଷ୍ଟ ସାହିତ୍ୟିକଙ୍କର ବହି ଥିଲା । ରାଶି ରାଶି ବହି । ରାଶି ରାଶି ଉପଦେଶ, ଅଭିଜ୍ଞତାର କାହାଣୀ । ସେ ବହିସବୁ ମୋର ଅତି ଆପଣାର ପରିଜନ ଥିଲେ । ଗ୍ରନ୍ଥକୀଟ ପରି ମୁଁ ସେମାନଙ୍କ ଭିତରେ ବସି ରହୁଥିଲି ବର୍ଷ ବର୍ଷ; କିନ୍ତୁ ସେଥିରେ ଦିନେ ହଠାତ୍ ନିଆଁ ଲାଗିଗଲା । ଅତି ବ୍ୟାକୁଳରେ ମୁଁ ଯେତେବେଳେ

ପ୍ରଦୋଷକୁ ପ୍ରତିକାର ବ୍ୟବସ୍ଥା କରିଛି, ସେ କଣ କହିଲେ ଜାଣ—"ଯାହାର ଧ୍ୱଂସ ଅନି-ବାର୍ଯ୍ୟ, ତୁମେ ତାକୁ ପ୍ରତିରୋଧ କରିପାରିବ ନାହିଁ।" ମୁଁ ଫେରି ଆସିଲି। ମୋର ନିଜର ପ୍ରଚୁର ଟଙ୍କା ଅଛି... କିନ୍ତୁ ଲାଇବ୍ରେରୀର ସହିତ ମୋର ଯେପରି ଭାଙ୍ଗିଗଲା, ଆଉ ଥରେ ନୂଆକରି ଗଢ଼ିବାର ସ୍ପୃହା ମୋର ରହିଲାନି। ହାରିଯାଇଥିବା ସେଇ ପୁସ୍ତକର ବନ୍ଧୁତ୍ୱକୁ ଯାଉଁଟି ଆଣିବାକୁ ମୋର ଇଚ୍ଛା ହେଲାନାହିଁ।

ହଠାତ୍ ଥରେ ଆର୍ଟିଷ୍ଟ ସୁନୀଲ ଦେଖା ହେଲା। ଆର୍ଟ ଛାଡ଼ି ଏବେ ସେ ଦାର୍ଶନିକ ହୋଇଯାଇଛି; କିନ୍ତୁ ମୋତେ ଦେଖି ତାର ଛବି ଆଙ୍କିବାର ସଉକ୍ ହେଲା ଟିକିଏ; କିନ୍ତୁ କଣ କଲା ଜାଣ? ସେ ଯେଉଁ ଛବି ଆଙ୍କିଲା, ସେଥିରେ ମୁଁ ଏକ ଭଗ୍ନ ପୁଷ୍କରିଣୀର ମଧ୍ୟସ୍ଥଳରେ ଛିଡ଼ା ହୋଇ ଏକ ପଦ୍ମଫୁଲକୁ ଚାହିଁ ହସୁଛି। ମୋ ଉପରୁ ହାଡଗୁଡ଼ାକ ଖଣ୍ଡ ଖଣ୍ଡ ହୀରାପରି ପଦ୍ମପତ୍ର ଉପରେ ପଡ଼ି ତଳକୁ ଖସିପଡ଼ୁଛି, ଆଉ ତା ତଳେ ସୁନୀଲ ଲେଖିଛି —

**"Life you may evade, but Death you shall not, you shall not deny the stranger."**

ସେ ଛବି ମୋ ପାଖରେ ନବବର୍ଷର ଶୁଭେଚ୍ଛା ନେଇ ଆସି ଯେଉଁଦିନ ପହଞ୍ଚିଲା, ସେଦିନ ମୋର ମନେହେଲା ମୋର ରକ୍ତ ଆଉ ଜୀବନୀକୁ ଯେପରି କିଏ ଶୋଷି ନେଇ ଯାଇଛି। ମୁଁ ହଠାତ୍, କ୍ଲାନ୍ତ ହୋଇପଡ଼ିଲି। ମୋର ମନେହେଲା, ପୃଥିବୀର କୌଣସି ଲୋକ ପାଖରେ ମୁଁ ଯେପରି ଗ୍ରାହ୍ୟ ନୁହେଁ।

ଚିନ୍ମୟ! ମୁଁ ବଡ଼ ଅବଶ ମନେକରୁଛି। ପ୍ରତି ମୁହୂର୍ତ୍ତରେ ମୁଁ ଯେପରି ଇଞ୍ଚ ଇଞ୍ଚ କରି ମରିଯାଉଛି। ମୋର ମନେହେଉଛି, ପୃଥିବୀର ଅଜସ୍ର ପ୍ରାଚୁର୍ଯ୍ୟ ଭିତରେ ମୋର ଯେପରି ବଞ୍ଚିବା ପାଇଁ ସାମାନ୍ୟତମ ଆବଶ୍ୟକତାର ଅଭାବ ରହିଛି। ତମେ କୁହ ଚିନ୍ମୟ! ମୁଁ କଣ ଆକାଶ କୁସୁମ ପଛରେ ଧାଇଁଛି? ମୁଁ କଣ ଅରଣ୍ୟରୋଦନ କରୁଛି?"

ଚିନ୍ମୟ ଉତ୍ତର ଦେଲେନି। ସେ ବୈଜ୍ଞାନିକ। ଖାଦ୍ୟ ଶସ୍ୟ ଉପରେ ପ୍ରତ୍ୟକ୍ଷ ନିର୍ଭର ନ କରି ମଣିଷ କିପରି ସାମାନ୍ୟ ଟାବ୍‌ଲେଟ୍ ଗୋଟିଏ ଖାଇ ଜୀବନ ଯାପନ କରି-ପାରିବ, ସେଇ ଗବେଷଣାରେ ସେ ଦିନ ରାତି ଲାଗିଛନ୍ତି। ସେଇ ଟାବ୍‌ଲେଟ୍ ବ୍ୟତୀତ ମଣିଷ ଜୀବନର ଅନ୍ୟ କିଛି ସୁବିଧା ସେ ଜାଣନ୍ତି ନାହିଁ। ରୁଚିଙ୍କ ପ୍ରଶ୍ନବାଣରେ ସେ ଯେପରି ତଟସ୍ଥ ହୋଇଯାଇଥିଲେ।

ରୁଚି ପୁଣି ତାଙ୍କୁ ହଲାଇ ଦେଇ କହିଲେ—"ମୁଁ ଜାଣେ ଚିନ୍ମୟ। ଜଣେ ନାରୀ ତୁଣ୍ଡରେ ଏସବୁ କଥା ଅନ୍ୟାଯ୍ୟ ଆଉ ଅଶୋଭନୀୟ।

—ତୁମେ ବୁଝିପାରିବନି, ତୁମ ବନ୍ଧୁ, ତୁମର ସମାଜ ଆଉ ତୁମର ପୌରୁଷ ଏ କଥାର

ଦାମ୍ ଦେବନାହିଁ । ମୁଁ ଯଦି ଅକାଳରେ ମରିଯାଏ...ତେବେ ତମେ ତାକୁ କହିବ ମୋର ଗୋଟାଏ ସନ୍ତକ୍ । ତୁମେ ତ ବୁଝିବ ନାହିଁ ତୁମର, ତୁମ ସମାଜ ଆଉ ପୃଥିବୀର ଅଜସ୍ର ପ୍ରାଚୁର୍ଯ୍ୟ ଭିତରେ ସାମାନ୍ୟ ଗୋଟାଏ ନାରୀ—ବଞ୍ଚିବାର ନିମ୍ନତମ ସୁବିଧା ଅଭାବରେ...ଅସମୟରେ ।"

ଚନ୍ଦ୍ରମୁଖ ପାଟିକରି ଉଠିଲେ—"ତୁମେ ଚୁପ୍ କର ରୁଚି । ତୁମେ ପାଗଳୀ ହୋଇ-ଯାଇଛ ନା କଣ ?"

—"ମୁଁ ପାଗଳୀ ନୁହେଁ । ଗୁଡ଼ାଏ ସତକଥା ତୁମେ ନିସ୍ତବ୍ଧ ରାତିରେ ଶୁଣି ଥିବାରୁ ମତେ ମଣିଷ ନ ଭାବି ପାଗଳୀ ଭାବିବ । ମୁଁ ଜାଣେ ଚନ୍ଦ୍ରମୁଖ, ଚିରଦିନ ସତ୍ୟଟାକୁ ଏଡେଇ ଦବା ତମର ଗୋଟାଏ ଅଭ୍ୟାସ । ସତ୍ୟକୁ ତୁମେ ଭୟ କର । ମୁଁ କହିବି ତୁମେ ଭୀରୁ, ଦୁର୍ବଳ ।"

—ଆଃ ରୁଚି ! "ତମେ ଏବେ ବି ମତେ ବୁଝିଲ ନାହିଁ ।"

—"ତମକୁ ବୁଝିନାହିଁ ? ବୁଝିଛି ବୋଲି ତ ଏତେ ନିର୍ଭୟରେ କହୁଛି । ମୁଁ କଣ ଜାଣେନା; ତମେ ରୁଚି ପାଇଁ ଆଜୀବନ ନିଃସଙ୍ଗ ଜୀବନ-ଯାପନ କରୁଛ; କିନ୍ତୁ ସେ ପନ୍ଦର ବର୍ଷ ତଳର ରୁଚି, ଆଜିର ରୁଚି ନୁହେଁ । ତୁମର ଜୀବନ ତ୍ୟାଗର ନମୁନା ପୃଥିବୀରେ ବିରଳ । ତୁମେ ମହାନ୍ ପ୍ରେମିକ ହଇ; କିନ୍ତୁ ପୁରୁଷ ହେଲ ନାହିଁ... ।" ଏଥର ବାସ୍ତବିକ ରୁଚି କାନ୍ଦିଲେ ଶବ୍ଦକରି—ଆଉ ଦୁଇ ହାତ ପାପୁଲିରେ ମୁହଁ ଢାଙ୍କି ।

ଚନ୍ଦ୍ରମୁଖ ତାଙ୍କ ହାତକୁ ଧରି ପକେଇଲେ; କିନ୍ତୁ ରୁଚି ଦୂରକୁ ଘୁଞ୍ଚି ଯାଇ ପାଟି କରି ଉଠିଲେ; "ତୁମେ ମୋ ପାଖରୁ ଘୁଞ୍ଚିଯାଅ, ଚନ୍ଦ୍ରମୁଖ ! ମୁଁ କାନ୍ଦିବା ପାଇଁ ଆଉ ଅବଲମ୍ବନ ଲୋଡ଼େ ନାହିଁ । ମୁଁ ଏକାକୀ କାନ୍ଦିବି । ଏ ଦୁଃଖ, କଷ୍ଟ ମୋ ନିଜର, ଏକାନ୍ତ ଭାବେ ନିଜର । ମୁଁ ଏଥିରେ କାହାକୁ ଭାଗୀଦାର କରିବାକୁ ଚାହେଁ ନାହିଁ ।"

"ତୁମେ ଦୂରେଇ ଛିଡ଼ା ହୁଅ ! ମୋ ଅଶ୍ରୁରେ ଅଜସ୍ର କଳଙ୍କ ରହିଛି । ସେ କଳା-ଦାଗରେ ତୁମର ପ୍ରେମକୁ ମୋ ପ୍ରତି ନଷ୍ଟ ହେବାକୁ ଦିଅନା ।"

ବାହାରେ ଅନ୍ଧକାରର ଯେପରି ଶେଷ ନାହିଁ, ରୁଚିଙ୍କର କ୍ରନ୍ଦନର ସାଙ୍ଗେ ସାଙ୍ଗେ ଶରି ସହିତ ନଦୀର କୁଳୁକୁଳୁ ସ୍ୱର ମିଶି ଏକ ଉଦ୍ଭଟ ଶବ୍ଦର ସୃଷ୍ଟି ହେଉଥିଲା । ଯେଉଁ ଶବ୍ଦର ମାନେ ବୁଝିବା ଚନ୍ଦ୍ରମୁଖଙ୍କ ପକ୍ଷରେ ଅସମ୍ଭବ ଥିଲା ।

ଚନ୍ଦ୍ରମୁଖ ନିର୍ବାକ୍ ହୋଇଯାଇଥିଲେ । ଜୀବନ ସାରା 'ନାରୀ' କଣ ଯେପରି ସେ ବୁଝିଲେ ନାହିଁ । ପ୍ରଦୋଷ କହୁଥିଲା, "ଚନ୍ଦ୍ରମୁଖ ନାରୀ ଜାତିକୁ ଭୟ କରେ । ନାରୀର ବିଭିନ୍ନ ରୂପରେ ସେ ବାସ୍ତବିକ ସମୟେ ସମୟେ ଚକିତ ହାରୁଥିଲେ ।"

ଚନ୍ଦ୍ରମୁଖଙ୍କର ତନ୍ଦ୍ରା ଭାଙ୍ଗିଲା । ରୁଚି କାନ୍ଦ ବନ୍ଦ କରି ଗାଡ଼ିରେ ଷ୍ଟାର୍ଟ ଦେଲେଣି ।

ସେ ପାଖକୁ ଯାଇ କହିଲେ—"ତମେ ଟିକିଏ ବିଶ୍ରାମ କର ରୁଚି । ମୁଁ ଡ୍ରାଇଭ କରେ ।"

—"ନା, ନା ତମେ ବସ । ତମେ ମୋର ଅତିଥି ଚିନ୍ମୟ ! ତମକୁ ସୁସ୍ଥରେ ରଖିବା ମୋର କର୍ତ୍ତବ୍ୟ; କିନ୍ତୁ ତମକୁ ଆଜି ବହୁତ କଷ୍ଟ ଦେଲିଣି, ଏତିକି ବେଦନା ତମେ ସହ୍ୟ କରିନେବ । ବସ ଡେରି ହେଉଛି ଯେ ।"

ଚିନ୍ମୟ ଅଗତ୍ୟା ବସିଲେ । ଶୁଖିଲା ଲୁହର ଦାଗ ତାଙ୍କ ଆଖି ପାଖରେ । ବଡ଼ ଶ୍ରାନ୍ତ ଲାଗୁଛନ୍ତି ରୁଚି । ଅଥଚ କେତେ ଲୋଭନୀୟ ଥିଲା ତାଙ୍କର ଚେହେରା । ବାରମ୍ବାର ଚାହିଁ ରହିଲେ ବି ତାଙ୍କର ତୃପ୍ତି ଆସୁ ନ ଥିଲା ।

ଲାବୋରେଟୋରିରେ ଗବେଷଣା କରୁ କରୁ ବହୁବାର ତାଙ୍କ ଆଖି ସାମ୍ନାରେ ନାଚି ଉଠେ ରୁଚିଙ୍କର ସେଇ ମନୋମୁଗ୍ଧକର ଛବି । ଗବେଷଣା ବନ୍ଦ ରହେ । ଫର୍ମୁଲା ଶେଷ ହୁଏନା, କି ବହିର ପୃଷ୍ଠା ଓଲଟେ ନାହିଁ । ପନ୍ଦର ବର୍ଷ ଧରି କେବଳ ମାମୁଲି ସମ୍ପର୍କ ଛଡ଼ା ସେ ଅଧିକ ସମ୍ପର୍କ ରଖି ନାହାନ୍ତି । କାରଣ ସେଥିରେ ରୁଚି ହୋଇଥାନ୍ତେ ଅସୁଖୀ । ନିଜ ଅପେକ୍ଷା ଅଧିକ ଭଲ ପାଉଥିଲେ ସେ ରୁଚିଙ୍କୁ । ତେଣୁ ନିଜକୁ ଅଗ୍ନିରେ ଦାହ କରି ତାଙ୍କୁ ଆଲୋକ ଦେବାକୁ ଅନବରତ ଚେଷ୍ଟା କରି ଆସୁଛନ୍ତି ସେ । ହେଲେ !

ଚିନ୍ମୟଙ୍କ ଆଖିପତା ବୁଜି ହୋଇ ଆସୁଛି । ଘଣ୍ଟାରେ ବୋଧେ ଚାରି ବାଜିବ । ଏତେ ସମୟ ଧରି ଡ୍ରାଇଭ କଲେ ମଧ୍ୟ କ୍ଲାନ୍ତ ଆସୁନାହିଁ । ବଡ଼ ତନ୍ଦ୍ରାମଗ୍ନ ଯେପରି ସେ ।

ହାଁ ଆଉ । ସେ ତାଙ୍କୁ ଅଧିକ କିଛି ପ୍ରଶ୍ନ କରିବେ ନାହିଁ; କିନ୍ତୁ ରୁଚି ଯେ ତାଙ୍କୁ ଡାକିଥିଲେ କଣ କହିବେ ବୋଲି, ଏପର୍ଯ୍ୟନ୍ତ କିଛି କହି ନାହାନ୍ତି । ପଚାରିବେ କି ? ହାଁ—ଆଉ ।

ବଡ଼ ଅସୁସ୍ଥ ଲାଗୁଛି ମନଟା । ଚତୁର୍ଦ୍ଦିଗ ଫାଙ୍କା, ନିର୍ଜନ, ଏକାକୀ । ମନ ଖାଁ । ଖାଁ । କରି ଉଠୁଛି । ରୁଚିଙ୍କର ବିବାହ ଦିନ ଯେଉଁ ନିଃସଙ୍ଗ ବେଦନା ସେ ଅନୁଭବ କରିଥିଲେ ସେ ବେଦନା ମନେ ହେଲା ଯେପରି ତାଙ୍କର ମନନ କେନ୍ଦ୍ରକୁ ସ୍ତମ୍ଭିତ ଓ ଧୀମତ୍ତାକୁ ଚୂର୍ଣ୍ଣ ବିଚୂର୍ଣ୍ଣ କରିଦେବ ।

ରୁଚି କିନ୍ତୁ ନୀରବ । ଅବିଶ୍ରାନ୍ତ ଝଡ଼ ପରି ସବୁଜ ବନାନୀ କ୍ଲାନ୍ତ ଅବା ।

ଚିନ୍ମୟ ଆଖି ବୁଜିଲେ ।

କେତେବେଳ ବିତି ଯାଇଛି ଚିନ୍ମୟ ଜାଣନ୍ତି ନାହିଁ । ଗାଡ଼ି ଅଟକିବାରୁ ସେ ଉଠି ପଡ଼ିଲେ ।

କିନ୍ତୁ ଏ କଣ ? ଏ ଯେ ଷ୍ଟେସନ । ଯେଉଁଠି ସେ ସନ୍ଧ୍ୟାବେଳେ ଓହ୍ଲାଇ ଥିଲେ । ରାସ୍ତା ଭୁଲି ତେବେ ଅବାଟରେ ଚାଲି ଆସିଲେ ରୁଚି ।

ରୁଚି କିନ୍ତୁ ମୃଦୁ ହସି କହିଲେ—

"ରାସ୍ତା ଭୁଲ କରିଛୁ ବୋଲି ତମେ ଭାବୁଛ ନା ? ତା ନୁହେଁ । ନଦୀ କୂଳରୁ ମୁଁ ପୁଣି ଷ୍ଟେସନ ଆଡ଼କୁ କାର୍ ବୁଲାଇ ଦେଇଥିଲି । ତମେ ଫେରିଯାଅ ମୁଁ ତୁମକୁ ମୋ ସଙ୍ଗରେ ଘରକୁ ନେଇ ଅମର୍ଯ୍ୟାଦା କରିବାକୁ ଚାହେଁ ନା ।"

—"ଏ କଣ ତମେ କହୁଛ, ରୁଚି ! ଏତେ ଦିନ ପରେ ମୁଁ ଆସିଲି······କିନ୍ତୁ ତମେ···।"

—"ସେଇଥି ପାଇଁ ତ କହୁଛି ଚିନ୍ମୟ । ଏତେ ଦିନ ପରେ କଳଙ୍କର ଦାଗରେ ମୁଁ ତମକୁ ରଞ୍ଜିତ କରିବାକୁ ଚାହେଁ ନା । ଯେଉଁ ରୁଚିର ସମାଜରେ ସ୍ଥାନ ନାହିଁ, ଘରେ ସ୍ଥାନ ନାହିଁ, କି କେଉଁ ପ୍ରିୟ ପରିଜନଠାରେ ସ୍ଥାନ ନାହିଁ—ସେ ତୁମକୁ ସ୍ଥାନ ଦେବେ କୁଆଡ଼ୁ ? ବଞ୍ଚିବାର ନ୍ୟୂନତମ ସୁବିଧାର ଅଭାବରେ ଯିଏ ଦୀର୍ଘ ଦିନ ଧରି କ୍ଷୁଧିତ ସେ ତୁମର ସମ୍ମାନ ରକ୍ଷା କରି ପାରିବନି । ତୁମେ ଫେରିଯାଅ ଚିନ୍ମୟ ! ଫେରିଯାଅ !"

—"ରୁଚି ! ଶୁଣ, ମୋ କଥା ଟିକେ !"

—"ଆହା ! ଆଜି ଆଉ ଅଙ୍ଗୀକାର କରି ଲାଭନାହିଁ । ମୁଁ ତୁମକୁ ଶ୍ରଦ୍ଧା କରେ । ତେଣୁ ତୁମକୁ ବିଦାୟ ଦେଉଛି । ରୁଚିର ଏଇ ରୁଚିହୀନତା ପାଇଁ ତୁମେ ତାକୁ କ୍ଷମା କର, ଚିନ୍ମୟ; କିନ୍ତୁ ଫେରିଯାଅ, ମତେ କଷ୍ଟରୁ ଆଉ ଯନ୍ତ୍ରଣାରୁ ରକ୍ଷା ଦିଅ । ତୁମକୁ ନଷ୍ଟ କରିବାର ବେଦନାରୁ ମତେ ମୁକ୍ତ ଦିଅ ।"

ସେ କଣ୍ଠରେ କି ନିର୍ଦ୍ଦେଶ ଥିଲା କେଜାଣି, ଚିନ୍ମୟ ଗାଡ଼ିରୁ ଓହ୍ଲାଇ ଧୀରେ ଧୀରେ ପ୍ଲାଟ୍‌ଫର୍ମ ଭିତରେ ପଶିଲେ । ପଛେ, ପଛେ ଚାଲିଥିଲେ ରୁଚି । ପ୍ରଭାତ ପ୍ରାପ୍ତ ହେବା ଉପରେ ।

କମ୍ପାର୍ଟମେଣ୍ଟର ରେଲିଂ ଧରି ଚିନ୍ମୟ ଚାହିଁଥିଲେ ରୁଚିଙ୍କୁ । ବଡ଼ ଉଦାସ ଦିଶୁଥିଲେ ସିଏ । ଟ୍ରେନ୍ ସିଗ୍‌ନାଲ ଦେଲାଣି ।

ଚିନ୍ମୟ ନଇଁ ପଡ଼ି କହିଲେ—"ତମକୁ ବୁଝି ପାରିଲି ନାହିଁ, ରୁଚି । ତମେ ମତେ କ୍ଷମା କରିବ; କିନ୍ତୁ କଣ କହିବ ବୋଲି ମତେ ଏତେ ଆଗ୍ରହରେ ଡାକିଥିଲ କହିଲ ନାହିଁ ଯେ ।"

ରୁଚି ଯେପରି ଚମକି ଚାହିଁଲେ । ଆଉ ଆବେଗରେ ପ୍ରଶ୍ନ କଲେ—"ତମେ ପାରିବ ଚିନ୍ମୟ ? ପାରିବ ଗୋଟିଏ କାମ କରି ? ମୋ ପାଇଁ କହୁନାହିଁ, କହୁଛି ଅନ୍ୟମାନଙ୍କ ପାଇଁ ।"

—"କହ ରୁଚି ! ଟ୍ରେନ୍ ଛାଡ଼ିଦେବ ଯେ ।"

ଶୁଷ୍କ ହସ ହସିଲେ ରୁଚି—"ତମେ ବୈଜ୍ଞାନିକ । ମଣିଷର ଶରୀରକୁ ବିନା ଖାଦ୍ୟରେ

ବନ୍ଧେଇ ରଖିବା ପାଇଁ କଣ ଉଦ୍ଭାବନରେ ଲାଗିଛ ତମେ, ମୁଁ ଜାଣେନା କିନ୍ତୁ ମଣିଷର ମନକୁ ବଞ୍ଚାଇ ରଖିବା ପାଇଁ କଣ କରୁଛ ? ପାରିବ ? ପାରିବ ଗୋଟାଏ ଜିନିଷର ଉଦ୍ଭାବନ କରି ? ମନକୁ ବନ୍ଧେଇ ରଖିବାର ନିମ୍ନତମ ସୂତ୍ରଟାକୁ ଆବିଷ୍କାର କରି ପାରିବ ? ଆଧୁନିକ ମଣିଷର ମାନସିକ ରିକ୍ତତାକୁ ତମେ ଦୂର କରି ପାରିବ, ଟମ୍ସୁ ? ଆଜିର ନିର୍ଜନ ବୁଦ୍ଧି—ନିର୍ଭର ମନୁଷ୍ୟ ପାଇଁ କିଛି ନୂତନ ଆବିଷ୍କାର ଦରକାର । ନଚେତ୍ ସେ ମରିଯିବ ନିଶ୍ଚୟ । ଆଉ ପୃଥିବୀ ହେବ କେତୋଟି ପଶୁଙ୍କର ବାସସ୍ଥଳୀ ।"

ଟ୍ରେନ୍‌ର ଝକଝାକ ହୁଇସିଲ୍ ଶବ୍ଦରେ ଚନ୍ଦ୍ରସୁଙ୍କ ହୃତ୍‌ପିଣ୍ଡ ଭିତରଟା ଯେପରି ଠକ୍ ଠକ୍ କମ୍ପି ଉଠୁଥିଲା । ଆଉ ଗୁଡ଼ାଏ ଭଙ୍ଗା କାଚର ଶବ୍ଦ ତାଙ୍କ କାନକୁ ବଧିର କରି ଦେଇଥିଲା ।

ମନେ ହେଉଥିଲା ତାଙ୍କ ଗବେଷଣାଗାରରେ ଥିବା ସମସ୍ତ ଯନ୍ତ୍ରପାତି ଆଉ ରାସାୟନିକ ପ୍ରଣାଳୀ ଅକସ୍ମାତ୍ ପଡ଼ିଯାଇ ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯାଇଛି ।

ଟ୍ରେନ୍‌ର ଗତି ସହିତ ତାଳ ମିଳାଇ ରୁଚ ଯେମିତି ଦୌଡ଼ୁଛନ୍ତି ଅଣନଗ୍ୟାସୀ ହୋଇ ।

ପୃଥିବୀର ବହୁଦେଶ ଭ୍ରମଣ କରିବାର ସୁଯୋଗ ଲାଭ କରିଛନ୍ତି । ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର କୃତିତ୍ୱ ଉଲ୍ଲେଖଯୋଗ୍ୟ । ତାଙ୍କର ପ୍ରକାଶିତ ପୁସ୍ତକ ମଧ୍ୟରେ :—

କବିତା—ଅଭିଯାନ, ରକ୍ତଶିଖା, ପଲ୍ଲୀଶ୍ରୀ, ବାଜିରାଉତ, ଭାନୁମତିର ଦେଶ, ପାଣ୍ଡୁଲିପି, କବିତା-1962, ବୃସନ୍ତ, ସ୍ୱଗତ ।

ଗଳ୍ପ ଓ ଉପନ୍ୟାସ—ଚକ୍ରଗ୍ରୀବ, ମାଟିର ତାଜ, ମଶାଣିର ଫୁଲ, ଗ୍ରୁଇ ।

କବିତା-1962 ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ।

ଭାରତ ସରକାର ପଦ୍ମଶ୍ରୀ ଉପାଧିରେ ତାଙ୍କୁ ସମ୍ମାନିତ କରିଅଛନ୍ତି ।

ଠିକଣା—ଚଣ୍ଡୀଛକ, କଟକ-8, ଓଡ଼ିଶା ।

## ଶ୍ରୀ ଅନନ୍ତପ୍ରସାଦ ପଣ୍ଡା, ବି. ଏ.

1906 ଖ୍ରୀଷ୍ଟାବ୍ଦ ଜୁଲାଇ 18 ତାରିଖରେ ବାଲେଶ୍ୱର ସୋର ଥାନାସ୍ଥ କଲ୍ୟାଣୀ ଗ୍ରାମରେ ଜନ୍ମ । ସ୍କୁଲ ଜୀବନରୁ ସାହିତ୍ୟ ଚର୍ଚ୍ଚା ଆରମ୍ଭ କରିଥିଲେ । ଓଡ଼ିଶା ଶାସନ ବିଭାଗରେ କର୍ମକରି ବର୍ତ୍ତମାନ ଅବସରପ୍ରାପ୍ତ । ସିଲଭ ଜାତିସଂଘର ବୃତ୍ତି ପାଇ ଆମେରିକା ଓ ଇଉରୋପ ଭ୍ରମଣ କରିଥିଲେ । ସେ ଏକାଧାରରେ ଜଣେ ଗାଳ୍ପିକ, ଔପନ୍ୟାସିକ ଏବଂ ପ୍ରାବନ୍ଧିକ । ତାଙ୍କର ପ୍ରକାଶିତ ଲେଖା ହେଲ :—

ଗଳ୍ପ—ଗୁଣଗୁଚ୍ଛ, ସଭ୍ୟତାର ତଳେ, ପ୍ରକୃତ, ମନର ଭୂତ, ବାରମଜା, ନୈଶ ସୁନ୍ଦରୀ ।

ଉପନ୍ୟାସ—ଭାଗ୍ୟଚକ୍ର, ମୁକ୍ତଆକାଶର ବିହଙ୍ଗ, ଫୁଲ, ନୂଆ ଦୁନିଆ ।

ଶତାଧିକ ପ୍ରବନ୍ଧ ଉତ୍କଳର ପତ୍ରପତ୍ରିକାରେ ପ୍ରକାଶିତ ।

ଠିକଣା—ଦେଉଳସାହି, କଟକ-8, ଓଡ଼ିଶା ।

## ଶ୍ରୀ ରାଜକିଶୋର ରାୟ, ଏମ୍. ଏ., ବି. ଇଡ୍.

ପୁରୁଷୋତ୍ତମପୁର ଛତାକର ଗ୍ରାମରେ 1914 ଖ୍ରୀଷ୍ଟାବ୍ଦରେ ଜନ୍ମ । ଛାତ୍ରଜୀବନରୁ ଅଭିନୟ, ସଙ୍ଗୀତ ଏବଂ ସାହିତ୍ୟ ସେବା ପ୍ରତି ଗଭୀର ଅନୁରାଗ । ପାଟଣା ଓ କଲିକତା ବିଶ୍ୱବିଦ୍ୟାଳୟରୁ ଯଥାକ୍ରମେ ଇଂରାଜୀ ଓ ଓଡ଼ିଆରେ ଏମ୍. ଏ. ଉପାଧି ଗ୍ରହଣ । ଓଡ଼ିଆ ଶିକ୍ଷାବିଭାଗରେ ଅଧ୍ୟାପକ ଓ ପରିଦର୍ଶକ କର୍ମଚାରୀ ଭାବରେ କାର୍ଯ୍ୟକରି ବର୍ତ୍ତମାନ ଅବସର ଗ୍ରହଣ କରିଛନ୍ତି । ଗାଳ୍ପିକ ଭାବରେ ସୁପରିଚିତ ।

ପ୍ରକାଶିତ ଗଳ୍ପସଙ୍କଳନ—ନୀଳଲହରୀ, ରକ୍ତ ଶତଦଳ, ଜୟଶ୍ରୀ, ବନଜ୍ୟୋତ୍ସ୍ନା, ଅଶୋକଚକ୍ର, ଜୟଶଙ୍ଖ, ଦୀପାଳୀ, ଶୋଣିତ, ପଙ୍କଚନ୍ଦନ, ମନର ମୃଣାଳ, ଜୀବନ ସଙ୍ଗୀତ, ମଧ୍ୟାହ୍ନର ମରୁପଥେ, ଆଦମ୍ ବୃକ୍ଷ ।
ଏକାଙ୍କିକା ସଙ୍କଳନ—ପଞ୍ଚପଲ୍ଲବ ।
ଠିକଣା—ଗ୍ରାଣ୍ଡରୋଡ଼, ପୁରୀ, ଓଡ଼ିଶା ।

## ଶ୍ରୀ ପ୍ରାଣବନ୍ଧୁ କର, ଏମ୍.ଏ.

ଜନ୍ମ 1914 ଖ୍ରୀଷ୍ଟାବ୍ଦ ଡିସେମ୍ବର ପହିଲା ତାରିଖ । ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗରେ ଅଧ୍ୟାପକ ଭାବରେ କର୍ମକରି ଅବସର ଗ୍ରହଣ କରିଛନ୍ତି । ଏକାଧାରରେ ନାଟ୍ୟକାର ଏବଂ ଗାଳ୍ପିକ । ତାଙ୍କ ଲିଖିତ 'ଶ୍ୱେତପଦ୍ମା' ଏକାଙ୍କିକା ସର୍ବଭାରତୀୟ ସ୍ତରରେ ଅଭିନୀତ ହୋଇ ପ୍ରଶଂସିତ ।

ପ୍ରକାଶିତ ପୁସ୍ତକ—ଏକାଙ୍କିକା 1ମ ଓ 2ୟ । ପ୍ରାଣବନ୍ଧୁଙ୍କ କ୍ଷୁଦ୍ର ଗଳ୍ପ, ମାଟିର-ମଣିଷ (ନାଟକ), ଶ୍ୱେତପଦ୍ମା (ନାଟକ), ଅଶାନ୍ତ (ନାଟକ) ।

## ଶ୍ରୀ ନିତ୍ୟାନନ୍ଦ ମହାପାତ୍ର

1912 ମସିହାରେ ବାଲେଶ୍ୱର ଜିଲାର ଭଦ୍ରକରେ ଜନ୍ମ; କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ତାଙ୍କର ପିତା । ସେ ଏକାଧାରରେ ସାମ୍ବାଦିକ, ସମାଜସେବୀ, ରାଜନୀତିଜ୍ଞ, କବି, ଗାଳ୍ପିକ ଓ ଔପନ୍ୟାସିକ । ଦୀର୍ଘକାଳ ଧରି 'ଡଗର' ସାହିତ୍ୟ ପତ୍ରିକା ସମ୍ପାଦନା କରି ଆସୁଅଛନ୍ତି । କିଛିକାଳ ଓଡ଼ିଶାର ଯୋଗାଣ ଏବଂ ସାଂସ୍କୃତିକ ବିଭାଗର ମନ୍ତ୍ରୀ ଥିଲେ । ତାଙ୍କର ପ୍ରକାଶିତ ପୁସ୍ତକ—

ଉପନ୍ୟାସ—ହିଡ଼ମାଟି, ଭଙ୍ଗାହାଡ଼, ପୀରତପଥ ଖସଡ଼ା, ଭୁଲ, ଜୀବନର ଲକ୍ଷ୍ୟ, ଜୀଅନ୍ତା ମଣିଷ ।
କବିତା—ମରମ, ପାଞ୍ଚଜନ୍ୟ, କାଳରଡ଼ି ।
ଗଳ୍ପ—ଧଳାଗାର କଳାଗାର, କ୍ଷଣିକା, ଏଗାରଟା ।
ପ୍ରବନ୍ଧ ଓ ରମ୍ୟରଚନା—ପଞ୍ଚ ଓ ପ୍ରଥମା ।
ଜୀବନୀ—ଭାରତ ଭାଗ୍ୟବିଧାତା ।
ଠିକଣା—ସମ୍ପାଦକ 'ଡଗର', ଖୋଲସାହି, କଟକ-1, ଓଡ଼ିଶା ।

# ଲେଖକ ଲେଖିକାଙ୍କ ପରିଚୟ

## ସ୍ୱର୍ଗତ ଫକୀର ମୋହନ ସେନାପତି

ଜନ୍ମ 1843 ଜାନୁଆରି 17 ତାରିଖ । 1918 ଖ୍ରୀଷ୍ଟାବ୍ଦ ଜୁନ 14 ତାରିଖରେ ମୃତ୍ୟୁ ବରଣ କଲେ—76 ବର୍ଷରେ । ଜନ୍ମସ୍ଥାନ--ବାଲେଶ୍ୱର ସହର ନିକଟବର୍ତ୍ତୀ ମଲ୍ଲିକାଶପୁର ।

ପ୍ରକାଶିତ ଗ୍ରନ୍ଥ :—ପୁରାଣ ଓ ପଦ୍ୟ—ରାମାୟଣ, ମହାଭାରତ, ଶ୍ରୀମଦ୍ଭଗବଦ୍ଗୀତା, ଉତ୍କଳ ଭ୍ରମଣ, ଅବସର ବାସରେ, ଖିଲ ହରିବଂଶ, ବୌଦ୍ଧାବତାର କାବ୍ୟ, ପୁଷ୍ପମାଳ, ପ୍ରାର୍ଥନା, ଧୂଳି, ଛାନ୍ଦୋଗ୍ୟ ଉପନିଷଦ ।

ଉପନ୍ୟାସ—ଛମାଣ ଆଠଗୁଣ୍ଠ, ମାମୁଁ, ପ୍ରାୟଶ୍ଚିତ୍ତ, ଲଛମା ।

ଗଳ୍ପ ସଂଗ୍ରହ—ଗଳ୍ପସ୍ୱଳ୍ପ । ଆତ୍ମଚରିତ । ଓଡ଼ିଆ ଉପନ୍ୟାସ ଓ ଗଳ୍ପ ସାହିତ୍ୟର ପିତା ଭାବରେ ପରିଚିତ ।

## ସ୍ୱର୍ଗତ ଗୋଦାବରୀଶ ମହାପାତ୍ର

ଜନ୍ମ—ପୁରୀ ଜିଲ୍ଲା ବାଣପୁର ଥାନା କୁମାରଙ୍ଗ ଶାସନରେ 1899 ଖ୍ରୀଷ୍ଟାବ୍ଦରେ । 'କଣ୍ଟା ଓ ଫୁଲ' କବିତା ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ । ଏକାଧାରରେ କବି, ଔପନ୍ୟାସିକ, ଗାଳ୍ପିକ ଏବଂ ସାମ୍ବାଦିକ । 1938 ଖ୍ରୀଷ୍ଟାବ୍ଦରୁ ଏକ ବ୍ୟଙ୍ଗଧର୍ମୀ ପତ୍ରିକା 'ନିଆଁଖୁଣ୍ଟା' ସେ ମୃତ୍ୟୁପର୍ଯ୍ୟନ୍ତ ସମ୍ପାଦନା କରିଥିଲେ । ତାଙ୍କର ମୃତ୍ୟୁ ହୁଏ 1965 ଖ୍ରୀଷ୍ଟାବ୍ଦ ନଭେମ୍ବର ମାସ 25 ତାରିଖରେ । ପ୍ରକାଶିତ ପୁସ୍ତକ ପ୍ରାୟ 70 ଖଣ୍ଡ ।

କେତେକ ସ୍ମରଣୀୟ ପୁସ୍ତକ ହେଲା—ଏବେ ମଧ୍ୟ ବଞ୍ଚିଛି, ମୁଁ ଦିନେ ମନ୍ତ୍ରୀ ଥିଲି, ହାଣ୍ଡିଶାଳରେ ବିପ୍ଳବ, ହେ ମୋର କଲମ, ଆତ୍ମବଳୀ, ଧୂପଗୁଚ୍ଛ, ଚକ୍ରପାତ, ବିଦ୍ରୋହୀ, ପ୍ରେମପଞ୍ଚ, ଘରବର ଭଗବାନ, ଶବଯାତ୍ରା, ରାଜପୁତ କାହାଣୀ, ମହାପାତ୍ରଙ୍କ ଗଳ୍ପ ଶତକ, ଓଡ଼ିଶାର ମଶାଣି ଭିତର, ରାଜଦ୍ରୋହୀ, ପଲ୍ଲୀଛବି, ମଦ ଦୋକାନର ଇତିହାସ, ଗଳ୍ପ ନୁହେଁ, କଣ୍ଟା ଓ ଫୁଲ ।

## ପଦ୍ମଭୂଷଣ କାଳନ୍ଦି ଚରଣ ପାଣିଗ୍ରାହୀ, ବି. ଏ.

ଜନ୍ମ—ପୁରୀ ଜିଲ୍ଲାର ବିଶ୍ୱନାଥପୁର ଶାସନରେ 1901 ସାଲର ଚିତାଲାଗି ଅମାବାସ୍ୟା ଦିନ । ସବୁଜ କବି ଭାବରେ ସୁପରିଚିତ । ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ବିଭାଗରେ ଦକ୍ଷତାର ସହ ଲେଖନୀ ଚାଳନା କରିଛନ୍ତି । ତାଙ୍କର ଉପନ୍ୟାସ 'ମାଟିର ମଣିଷ' ଭାରତର ବହୁ ଭାଷାରେ ଅନୁଦିତ ହୋଇଅଛି । ଭାରତୀୟ ସାହିତ୍ୟ ଏକାଡେମୀ, ଭାରତୀୟ ପି: ଇ: ଏନ୍, ଉତ୍କଳ ସାହିତ୍ୟ ସମାଜ ଭଳି ଅନୁଷ୍ଠାନ ସହିତ ସେ ନିବିଡ଼ ଭାବରେ ସମ୍ପୃକ୍ତ । ତାଙ୍କର ପ୍ରକାଶିତ ଲେଖା—

କବିତା—ମନେ ନାହିଁ, କ୍ଷଣିକ ସତ୍ୟ, ମହାପାପ, ଝୁଙ୍କିଟିଏ ଲେଖା, ମୋ କବିତା ।

ଉପନ୍ୟାସ—ମାଟିର ମଣିଷ, ଲୁହାର ମଣିଷ, ମୁକ୍ତାଗଡ଼ର କ୍ଷୁଧା, ଅମରଚିତା, ଆଜିର ମଣିଷ ।

ଗଳ୍ପ ସଂଗ୍ରହ—ସାଗରିକା, ରୁଣିଫଳ, ଶେଷରଶ୍ମି, ମୋ କଥାଟି ସରନାହିଁ ।

ପ୍ରବନ୍ଧ—ସାହିତ୍ୟ ସମାହାର, ସାହିତ୍ୟିକା, ନେତୃତ୍ୱ ଓ ନେତୃତ୍ୱ, ପ୍ରବନ୍ଧ ପ୍ରବାହ ।

ନାଟକ—ପ୍ରିୟଦର୍ଶୀ, ପଦ୍ମିନୀ, ସୌମ୍ୟା ।

ଜୀବନୀ—ଭକ୍ତକବି ମଧୁସୂଦନ ।

ଠିକଣା—ସ୍ୱପ୍ନପୁରୀ—ପୀଠାପୁର, କଟକ-1, ଓଡ଼ିଶା ।

## ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, ବି. ଏ.

1916 ଖ୍ରୀଷ୍ଟାବ୍ଦରେ ପୁରୀ ଜିଲ୍ଲା ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ଗୁରୁଜଙ୍ଗ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଛାତ୍ର ଜୀବନରୁ ଅସହଯୋଗ ଆନ୍ଦୋଳନ, କୃଷକ ଆନ୍ଦୋଳନ ଏବଂ ସାମ୍ୟବାଦୀ ଆନ୍ଦୋଳନରେ ଯୋଗଦାନ । 1939ରେ 'ରକ୍ତଶିଖା' କବିତା ପୁସ୍ତକ ଇଂରେଜ ସରକାର ବାଜ୍ୟାପ୍ତ କରିଦେଇଅନ୍ତି । ତାଙ୍କର 'ବାଜିରାଉତ' ଓ ଅନ୍ୟ କେତେକ ବିଖ୍ୟାତ କବିତା "The Boatman Boy and forty poems" ନାମରେ ଅନୁବାଦ କରିଛନ୍ତି ଭାରତର ସୁପରିଚିତ କବି ହୀରେନ୍ଦ୍ର ଚଟ୍ଟୋପାଧ୍ୟାୟ । ସେ ବହୁ ସାଂସ୍କୃତିକ ଏବଂ ସମାଜମଙ୍ଗଳ ଅନୁଷ୍ଠାନ ସହିତ ଜଡ଼ିତ ।

## ଶ୍ରୀ ରାଜକିଶୋର ପଟ୍ଟନାୟକ, ବି. ଏ., ଏଲ୍. ଏଲ୍. ବି.

1916 ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସରେ ଜନ୍ମଗ୍ରହଣ କରିଥିଲେ । ଆଇନ ବ୍ୟବସାୟ ମଧ୍ୟରେ ଜଡ଼ିତ ହେଲେହେଁ ନିରବଚ୍ଛିନ୍ନ ସାହିତ୍ୟ ସାଧକ । ଜଣେ ଶକ୍ତିଶାଳୀ ଗାଳ୍ପିକ ଏବଂ ଔପନ୍ୟାସିକ ।

ତାଙ୍କର ପ୍ରକାଶିତ ପୁସ୍ତକ—

ଉପନ୍ୟାସ—ଅସରନ୍ତି, ବିରହିଣୀ, ସଞ୍ଜବତୀ, ସପନକୁହୁଡ଼ି, ସିନ୍ଦୂରଗାର, ଅଷ୍ଟମୀଗ୍ରହ, ସୂତର ମଶାଣି, ପ୍ରେମିକର ଡାଏରି, ଚଲାବାଟ, ଭଗ୍ନମେଘ, କଜଳଗାର ।

କ୍ଷୁଦ୍ରଗଳ୍ପ—ପଥୁଳି, ଭୁଠପଥର, ହୃଦୟର ବନ୍ଧନ, କାଳିନାର ଫୁଲ, ଶାଳଗ୍ରାମ, ଭଡ଼ାଘର, ନଶାଣ ଝୁଣ୍ଟ, ପଥର ଡମା, ହାଟ ଦରିଦା ।

ଠିକଣା—ପୁରୀଘାଟ ରୋଡ୍, କଟକ-1, ଓଡ଼ିଶା ।

## ଶ୍ରୀ ଗୋପୀନାଥ ମହାନ୍ତି, ଏମ୍. ଏ.

କଟକ ଜିଲ୍ଲାର ନାଗବାଲି ଗ୍ରାମରେ 1914 ସାଲ ଏପ୍ରିଲ 20 ତାରିଖରେ ଜନ୍ମଗ୍ରହଣ କରିଥିଲେ । ଇଂରାଜୀ ସାହିତ୍ୟରେ ଅତ୍ୟନ୍ତ କୃତିତ୍ୱର ସହିତ ଏମ. ଏ. ପାଶ କରି ଓଡ଼ିଶା ସରକାରଙ୍କ ଶାସନ ବିଭାଗରେ କର୍ମ କରିଥିଲେ । ବର୍ତ୍ତମାନ ଅବସର ଜୀବନଯାପନ କରୁଛନ୍ତି । ଜଣେ ଶକ୍ତିଶାଳୀ ଗାଳ୍ପିକ ଓ ଔପନ୍ୟାସିକ । 'ଅମୃତ ସନ୍ତାନ' ଉପନ୍ୟାସ ଲେଖି ସେ ଭାରତ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ । ଭାରତର ଏକାଧିକ ଭାଷାରେ ଏବଂ ପରଜା କନ୍ଧ ପ୍ରଭୃତି ଆଦିବାସୀ ଭାଷାରେ ତାଙ୍କର ପାଣ୍ଡିତ୍ୟ ପରିଲକ୍ଷିତ ହୁଏ । ତାଙ୍କର ପ୍ରକାଶିତ ପୁସ୍ତକ ହେଲା—

ଉପନ୍ୟାସ—ମାଟିମଟାଳ, ଅମୃତ ସନ୍ତାନ, ରାହୁର ଛାୟା, ପରଜା, ହରିଜନ, ଦାଦିବୁଢ଼ା, ଶରତବାବୁଙ୍କ ଗଳି, ପୋଡ଼ା କପାଳ, ମନଗହିରର ଚାଷ, ସପନମାଟି, ଦାନାପାଣି, ଶିବଭାଇ, ଦୁଇପଟ, ନବବଧୂ, ଅପହଞ୍ଚ, ରଣଧନ୍ଦୋଳ, ତନ୍ତ୍ରିକାର ।

କ୍ଷୁଦ୍ରଗଳ୍ପ—ଘାସଫୁଲ, ଉଡ଼ନ୍ତା ଖଇ ।

ନାଟକ—ମହାପୁରୁଷ ।

ଅନ୍ୟାନ୍ୟ—କୁଭିକନ୍ଧ ଭାଷାତତ୍ତ୍ୱ, ଗଦବା ଭାଷା, କନ୍ଧପରଜା ଗ୍ରୋଜ ।

ଠିକଣା—ନୂଆରାଜଧାନୀ, ୟୁନିଟ୍-3, ଭୁବନେଶ୍ୱର, ଓଡ଼ିଶା ।

## ଶ୍ରୀ ସୁରେନ୍ଦ୍ର ମହାନ୍ତି

ଏକାଧାରରେ ସାମ୍ବାଦିକ, ସାହିତ୍ୟିକ, ସମାଲୋଚକ ଓ ରାଜନୀତିଜ୍ଞ । 1920 ଖ୍ରୀଷ୍ଟାବ୍ଦରେ କଟକଜିଲାର ପୁରୁଷୋତ୍ତମପୁର ଗ୍ରାମରେ ଜନ୍ମ । ପ୍ରଖ୍ୟାତ ଗାଳ୍ପିକ ଓ ଔପନ୍ୟାସିକ ।

ତାଙ୍କର ପ୍ରକାଶିତ ପୁସ୍ତକ :—

ଗଳ୍ପ—ମହାନଗରୀର ରାତ୍ରି, କୃଷ୍ଣଚୂଡ଼ା, ରୁଚି ଓ ଚନ୍ଦ୍ର, ଶେଷ କବିତା, ଦୁଇ ସୀମାନ୍ତ, ମହାନିର୍ବାଣ, ମରାଳର ମୃତ୍ୟୁ ।

ଉପନ୍ୟାସ—ନୀଳଶୈଳ, ଅନ୍ଧଦିଗନ୍ତ ।

ନାଟକ—ବାପୁ ।

ଜୀବନୀ ଓ ଆଲୋଚନା—ଶତାବ୍ଦୀର ସୂର୍ଯ୍ୟ, ଓଡ଼ିଆ ସାହିତ୍ୟର ଆଦିପର୍ବ, ଓଡ଼ିଆ ସାହିତ୍ୟର ମଧ୍ୟପର୍ବ, ଫକୀରମୋହନ ସମୀକ୍ଷା ।

'ନୀଳଶୈଳ' ପୁସ୍ତକ ପାଇଁ କେନ୍ଦ୍ର ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ । ଓଡ଼ିଆ ସାହିତ୍ୟ ଏକାଡେମୀଦ୍ୱାରା ମଧ୍ୟ ସେ ପୁରସ୍କୃତ ହୋଇଛନ୍ତି ।

ଠିକଣା—"ଶୀବାନ"; ଷ୍ଟିଓ୍ୱାର୍ଟ ଲେନ୍ କଟକ - 8; ଓଡ଼ିଶା ।

## ଶ୍ରୀ ବାମାଚରଣ ମିତ୍ର

1915 ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶା ସରକାରଙ୍କ ଶାସନ ବିଭାଗରେ ଉଚ୍ଚ ପଦସ୍ଥ କର୍ମଚାରୀ ଭାବରେ କାର୍ଯ୍ୟକରି ବର୍ତ୍ତମାନ ଅବସର ଗ୍ରହଣ କରି ଅଛନ୍ତି ଏବଂ ଆଇନ ବ୍ୟବସାୟରେ ଯୋଗଦାନ କରିଛନ୍ତି । ଏକାଧାରରେ ଔପନ୍ୟାସିକ ଓ ଗାଳ୍ପିକ ।

ତାଙ୍କର ପ୍ରକାଶିତ ପୁସ୍ତକ—ବଡ଼ ମହାପୁରୁଷ, ସ୍ୱପ୍ନସିନ୍ଧୁ, ପାଷାଣର ପ୍ରାଣ, ନର ଛଞାଣ, ଅସୀମ ।

ଠିକଣା—ଆଡ୍‌ଭୋକେଟ, ଭୁବନେଶ୍ୱର ବାର, ଭୁବନେଶ୍ୱର, ଓଡ଼ିଶା ।

## ଶ୍ରୀ କିଶୋରୀଚରଣ ଦାସ, ଏମ୍. ଏ.

1924 ସାଲରେ କଟକରେ ଜନ୍ମ । ଭାରତ ସରକାରଙ୍କ ଶାସନ ବିଭାଗରେ ଉଚ୍ଚପଦସ୍ଥ କର୍ମଚାରୀ । ପ୍ରଖ୍ୟାତ ଗଳ୍ପ ଲେଖକ ।

ତାଙ୍କର ପ୍ରକାଶିତ ପୁସ୍ତକ—ଭଙ୍ଗା ଖେଳଣା, ଲକ୍ଷ୍ୟ ବନ୍ଧନ, ଘରବାହୁଡ଼ା ।

ଠିକଣା—ଏ. ଜି. ପଶ୍ଚିମବଙ୍ଗ, ୮୫, ଜଗ୍ଗୀ ବିଲ୍ଡିଂ, କଲିକତା—1

## ଶ୍ରୀ ଅଖିଳ ମୋହନ ପଟ୍ଟନାୟକ, ବି. ଏ., ଏଲ. ଏଲ. ବି.

ଜନ୍ମ 1927 ଡିସେମ୍ବର ମାସରେ ପୁରୀ ଜିଲାର ଖୋର୍ଦ୍ଧା ସହରରେ । ତାଙ୍କର ପିତା ଶ୍ରୀ ବାଙ୍କନିଧି ପଟ୍ଟନାୟକ ଜଣେ ସୁନାମଧନ୍ୟ ଗଳ୍ପ ଲେଖକ । ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଅଖିଳ ବାବୁ ଲେଖିବସନ୍ତି ପ୍ରଗତିଧର୍ମୀ ଗଳ୍ପ । ସେ ବର୍ତ୍ତମାନ ଭୁବନେଶ୍ୱରରେ ଆଇନ ବ୍ୟବସାୟ କରୁଅଛନ୍ତି ।

ତାଙ୍କର ପ୍ରକାଶିତ ପୁସ୍ତକ—"ଝଡ଼ର ଇଗଲ ଓ ଧରଣୀର କୃଷ୍ଣସାର" ।

ଠିକଣା—ଆଡ଼ଭୋକେଟ, ଭୁବନେଶ୍ୱର ବାର, ଭୁବନେଶ୍ୱର, ଓଡ଼ିଶା ।

## ଶ୍ରୀ ମହାପାତ୍ର ନୀଳମଣି ସାହୁ, ଏମ୍. ଏ.

1926 ଡିସେମ୍ବର 20 ତାରିଖରେ କଟକ ଜିଲାର ନିଆଳି ଗ୍ରାମରେ ଜନ୍ମ । ଏକାଧାରରେ କବି, ଗାଳ୍ପିକ ଓ ଔପନ୍ୟାସିକ । ଓଡ଼ିଶାର ଶିକ୍ଷା ବିଭାଗରେ ଅଧ୍ୟାପକ ଭାବରେ ଅବସ୍ଥାପିତ । ଓଡ଼ିଶାର ବିଖ୍ୟାତ ସାହିତ୍ୟ ମାସିକ ଝଙ୍କାରର ସଂପାଦନା ସହିତ ସେ ଅନେକ କାଳ ସଂପୃକ୍ତ ଥିଲେ ।

ତାଙ୍କର ପ୍ରକାଶିତ ସଂକଳନ—ପ୍ରେମ ଓ ନିଭୃତି, ମିଛବାଘ, ଶୃଣ୍ୱନ୍ତୁ ସର୍ବେ ଅମୃତସ୍ୟ ପୁତ୍ରାଃ, ଗବେଷଣା ଓ ଗବେଷଣା, ଯୀଶୁ ବି କବିତା କହି, ସୁମିତ୍ରାର ହସ, ବିଷ୍ଣୁମାୟା, କପୋତ ପକ୍ଷୀ ଗୁରୁ ମୋର, ଅନ୍ଧାରର ସୂର୍ଯ୍ୟ ।

ଉପନ୍ୟାସ—ଧରା ଓ ଧାରା, ତାମସୀ ରାଧା ।

ଠିକଣା—ରିଡ଼ର, ଓଡ଼ିଆ ବିଭାଗ, ରେଭେନ୍ସା କଲେଜ, କଟକ-3

## ଶ୍ରୀମତୀ ବସନ୍ତକୁମାରୀ ପଟ୍ଟନାୟକ, ଏମ୍. ଏ.

1923 મସିହା ଡିସେମ୍ବର ମାସ 15 ତାରିଖରେ ଜନ୍ମ । ଜଣେ ଶକ୍ତିଶାଳିନୀ ଔପନ୍ୟାସିକା ଏବଂ ଗାଳ୍ପିକା ଭାବରେ ସୁପରିଚିତା । ତାଙ୍କର ଉପନ୍ୟାସ "ଅମଡ଼ା ବାଟ" ନାଟ୍ୟ ରୂପ ନେଇ ବହୁ ମଞ୍ଚରେ ଅଭିନୀତ ଏବଂ ଚଳଚ୍ଚିତ୍ର ରୂପରେ ବହୁ ପ୍ରେକ୍ଷାଳୟରେ ପ୍ରଦର୍ଶିତ ।

ତାଙ୍କ ଲିଖିତ ପୁସ୍ତକମାନଙ୍କ ମଧ୍ୟରେ ଅମଡ଼ା ବାଟ, ଚୋରିର ତପସ୍ୟା, ସନ୍ଧ୍ୟାତାରା ସାଜ, ଜୀବନ ଚିତ୍ର, ପାଲଟା ଢେଉ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଠିକଣା—ପୁଲିସ୍‌ଘାଟ ରୋଡ଼—କଟକ-2

## ଶ୍ରୀ ମନୋଜ ଦାସ, ଏମ୍. ଏ.

ଏକାଧାରରେ ଜଣେ କବି, ଗାଳ୍ପିକ ଓ ସମାଲୋଚକ । 'ଦିଗନ୍ତ' ମାସିକ ସାହିତ୍ୟ ପତ୍ରିକାର ସଂପାଦନା କରି ସେ ଯଥେଷ୍ଟ ପ୍ରତିଷ୍ଠା ଅର୍ଜନ କରିଥିଲେ । ପ୍ରଗତିଶୀଳ ଛାତ୍ର ଆନ୍ଦୋଳନରେ ନେତୃତ୍ୱ ଗ୍ରହଣ କରିଥିଲେ । କଟକ ଖ୍ରୀଷ୍ଟ କଲେଜରେ ଇଂରେଜୀ ସାହିତ୍ୟ ବିଭାଗରେ କିଛିକାଳ ଅଧ୍ୟାପନା କଲାପରେ ଅରବିନ୍ଦ ଦର୍ଶନରେ ଅନୁପ୍ରାଣିତ ହୋଇ ସେ ବର୍ତ୍ତମାନ ପଣ୍ଡିଚେରୀ ଆଶ୍ରମରେ ଅବସ୍ଥାନ କରୁଅଛନ୍ତି । ତାଙ୍କର ଅନେକ ଗଳ୍ପ ଇଂରେଜୀ ଭାଷାରେ ଅନୂଦିତ ହୋଇ ପ୍ରଶଂସା ଭାଜନ ହୋଇଅଛି ।

ତାଙ୍କର ପ୍ରକାଶିତ ପୁସ୍ତକଗୁଡ଼ିକ ହେଲା—ଆରଣ୍ୟକ, ସରଳ ରାମାୟଣ, ଇଣ୍ଡୋନେସିଆ ଅନୁଭୂତି, ନନ୍ଦାବତୀର ମାଟି, ସମୁଦ୍ରର କ୍ଷୁଧା, ଶତାବ୍ଦୀର ଆର୍ତ୍ତନାଦ, ମନୋଜ ଦାସଙ୍କ କଥା ଓ କାହାଣୀ ।

ଠିକଣା—ଅରବିନ୍ଦ ଆଶ୍ରମ, ପଣ୍ଡିଚେରୀ ।

## ଶ୍ରୀ ବିଭୂତିଭୂଷଣ ତ୍ରିପାଠୀ, ଏମ୍. ଏ.

ଓଡ଼ିଶାର ଶାସନ ବିଭାଗରେ ଉଚ୍ଚପଦସ୍ଥ କର୍ମଚାରୀ ଭାବରେ ଅବସ୍ଥାପିତ । ପ୍ରଗତିଧର୍ମୀ ଗଳ୍ପ ଲେଖକ ଭାବରେ ସୁପରିଚିତ । ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ଧାରାବାହିକ ଭାବରେ ଲେଖନୀ ଚାଳନା କରି ଆସୁଅଛନ୍ତି ।

ପ୍ରକାଶିତ ପୁସ୍ତକ—"ସେତୁ" ।

ଠିକଣା—ଅଧ୍ୟକ୍ଷ, ଜନଗଣନା ବିଭାଗ, ଓଡ଼ିଶା ସରକାର, କଟକ—2

## ଡକ୍ଟର କୃଷ୍ଣପ୍ରସାଦ ମିଶ୍ର, ଏମ୍. ଏ.

ଏକାଧାରରେ ଗାଳ୍ପିକ, ଔପନ୍ୟାସିକ ଓ ସମାଲୋଚକ । ଶ୍ରୀଯୁକ୍ତ ମିଶ୍ରଙ୍କର ଜନ୍ମ 1933 ଖ୍ରୀଷ୍ଟାବ୍ଦରେ । କମନ୍‌ୱେଲ୍‌ଥ ସ୍କଲାର ଭାବେ 1963ରେ ମନୋନୀତ ଏବଂ କାନାଡ଼ାର ଟରେଣ୍ଟୋ ବିଶ୍ୱବିଦ୍ୟାଳୟରୁ ପି. ଏଚ୍. ଡ଼ି. ଲାଭ । 1968 ଖ୍ରୀଷ୍ଟାବ୍ଦ ଉତ୍କଳ ବିଶ୍ୱବିଦ୍ୟାଳୟର ଦର୍ଶନ ବିଭାଗର ଅଧ୍ୟାପକ ଅଛନ୍ତି ।

ବର୍ତ୍ତମାନ 'ମାନସ' ସାହିତ୍ୟ ମାସିକ ପତ୍ରିକା ସଂପାଦନାରତ ।

ତାଙ୍କର ପ୍ରକାଶିତ ପୁସ୍ତକ—

ଆଲୋଚନା—ଦର୍ଶନ ଓ ସମାଲୋଚନା

ଉପନ୍ୟାସ—ସିଂହକଟୀ, ନେପଥ୍ୟେ, ମୃଗତୃଷ୍ଣା ।

ଗଳ୍ପ—ମୌନାବତୀ ଗ୍ରନ୍ଥି, ବିଂଶଶତାବ୍ଦୀର କାବ୍ୟ, ନାଏଗ୍ରା ଓ ଦେବଯାନୀ ଅରଣ୍ୟ ଓ ଉପବନ ।

ଜୀବନୀ—ନବେଦିତା, ଲକ୍ଷ୍ମୀବାଈ ।

ଠିକଣା—ରିଡର, ଦର୍ଶନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀବିହାର, ଭୁବନେଶ୍ୱର-4

## ଶ୍ରୀ ଶାନ୍ତନୁ କୁମାର ଆଚାର୍ଯ୍ୟ, ଏମ୍. ଏସ୍. ସି.

ଜନ୍ମ 1934 ଖ୍ରୀଷ୍ଟାବ୍ଦ ଜୁଲାଇ ମାସର ପହିଲା ତାରିଖରେ । ଓଡ଼ିଶା ସରକାରଙ୍କ ଶିକ୍ଷାବିଭାଗରେ ଅଧ୍ୟାପନାରତ ଅଛନ୍ତି । ଜଣେ ଔପନ୍ୟାସିକ ଏବଂ ଗାଳ୍ପିକ ଭାବରେ ସୁପରିଚିତ ।

ତାଙ୍କର ପ୍ରକାଶିତ ପୁସ୍ତକ—

ଉପନ୍ୟାସ—ନର କିନ୍ନର, ଶତାବ୍ଦୀର ନଚିକେତା, ଛନୋଟି ଘରର ସକାଳ ।

ଗଳ୍ପସଂଗ୍ରହ—ଦୁର୍ବାର ।

ଅନ୍ୟାନ୍ୟ—ମନ ମର୍ମର, ମୋ କାଠଘୋଡ଼ା କଥା କହେ, ବାଗବଗିଚାର ସୌଦାଗର ।

ଠିକଣା—ଶହୀଦ୍ ନଗର, ୟୁନିଟ୍—7, ନୂଆ ରାଜଧାନୀ, ଭୁବନେଶ୍ୱର ।

## ଶ୍ରୀମତୀ ବୀଣାପାଣି ମହାନ୍ତି, ଏମ୍. ଏ.

ଓଡ଼ିଶା ସରକାରଙ୍କର ଶିକ୍ଷା ବିଭାଗରେ ଅର୍ଥନୀତି ଅଧ୍ୟାପିକା । ବିଭିନ୍ନ ସାହିତ୍ୟ ମାସିକ ପତ୍ରିକାରେ ଧାରାବାହିକ ଲେଖା ପ୍ରକାଶ କରି ଆଆନ୍ତି । କ୍ଷୁଦ୍ରଗଳ୍ପ ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ତାହାଙ୍କୁ ପୁରସ୍କୃତ କରିଅଛନ୍ତି ।

ତାଙ୍କର ପ୍ରକାଶିତ ପୁସ୍ତକ—ପାନ୍ଥଶାଳା, ରକ୍ତକରବୀ, ନବ ତରଙ୍ଗ ।

ଠିକଣା—ଅଧ୍ୟାପିକା, ରମାଦେବୀ ମହିଳା କଲେଜ, ଅର୍ଥନୀତି ବିଭାଗ, ଭୁବନେଶ୍ୱର ।